Vol. XLI No. 12 UTKAL PRASANGA Regd. No. O-05/84-85
Licence No. C. R. N. P. 5—Licensed to post without Pre-Payment



" ମାଟି କାଦୁଅରୁ ଫୁଟାଇବୁ ଆମେ ସୁନା ଶସ୍ୟର ଫୁଲ୍
ଲୋଟାଇବୁ ଦେଶ ଧନ ସମ୍ପଦେ ଆମର କେ ଦେବ



ଚଷାଏଇ ସହି
ଖରା ବରଷା ... ଶୀତ କାକର
ରକତ ନିଗାଡ଼ି ଭୁଇଁ ଚିରି ସିଏ
ସବୁରି ମୁହଁରେ ଦିଏ ଆହାର ।।



# ଉତ୍କଳ ପ୍ରସଙ୍ଗ

ଶ୍ରାବଣ ୧୯୦୭ ଶକାବ୍ଦ  ୪୩ ଭାଗ  ୧ମ ସଂଖ୍ୟା  ଅଗଷ୍ଟ ୧୯୮୫



**ପ୍ରକାଶକ :** ସୂଚନା ଓ ଲୋକ ସମ୍ପର୍କ ବିଭାଗ,
ଓଡ଼ିଶା ସରକାର, ଭୁବନେଶ୍ୱର

**ମୁଦ୍ରଣ :**
ଓଡ଼ିଶା ସରକାରୀ ମୁଦ୍ରଣାଳୟ, କଟକ

ବାର୍ଷିକ ଦେୟ : ୧୦.୦୦

ପ୍ରତି ଖଣ୍ଡ : ୧.୦୦

# ସୂଚୀପତ୍ର

ସ୍ୱାଧୀନତା ଦିବସ ଉପଲକ୍ଷେ

# ଓଡ଼ିଶାର ରାଜ୍ୟପାଳ ଶ୍ରୀ ବିଶ୍ୱମ୍ଭର ନାଥ ପାଣ୍ଡେଙ୍କ ବାର୍ତ୍ତା



"ଆମେ ଆଜି ଆମ ସ୍ୱାଧୀନତାର ୩୯ ତମ ସାମ୍ବତ୍ସରିକ ଉତ୍ସବ ପାଳନ କରୁଛୁଁ । ଆଜିର ପବିତ୍ର ଦିବସ ଉପଲକ୍ଷେ ମୁଁ ଓଡ଼ିଶାର ଜନସାଧାରଣଙ୍କୁ ମୋର ସଦିଚ୍ଛା ଓ ଅଭିନନ୍ଦନ ଜ୍ଞାପନ କରୁଛି ।

"ଆମ ଦେଶର ସୁଦୀର୍ଘ ତଥା ଘଟଣାବହୁଳ ଇତିହାସରେ ୧୯୪୭ ମସିହା ଅଗଷ୍ଟ ୧୫ ତାରିଖ ଏକ ମହାନ୍ ତାତ୍ପର୍ଯ୍ୟପୂର୍ଣ୍ଣ ଦିବସ । ଆଜି ଦିନଟି ଆମ ପକ୍ଷରେ ଆତ୍ମସମୀକ୍ଷାର ଦିନ । ଭାରତର ସ୍ୱାଧୀନତା ସଂଗ୍ରାମରେ ଆତ୍ମୋତ୍ସର୍ଗ ଓ ଅସୀମ ତ୍ୟାଗ ସ୍ୱୀକାର କରିଥିବା ଶହୀଦମାନଙ୍କୁ ଶ୍ରଦ୍ଧାଞ୍ଜଳି ଜ୍ଞାପନ କରିବା ସଙ୍ଗେ ସଙ୍ଗେ ସେମାନଙ୍କର ସେବା ଓ ଅସୀମ ତ୍ୟାଗର ଆଦର୍ଶରେ ଉଦ୍‌ବୁଦ୍ଧ ହେବାକୁ ସଂକଳ୍ପ କରିବା ପାଇଁ ଆଜି ଦିନଟି ଆମକୁ ସୁଯୋଗ ଦେଇଥାଏ । ଭାରତର ସ୍ୱାଧୀନତା ସଂଗ୍ରାମରେ ଆତ୍ମୋତ୍ସର୍ଗ ତଥା ଆୟାସସାଧ୍ୟ ଉଦ୍ୟମ କରିଥିବା ତୁଙ୍ଗ ନେତାଗଣ ବିଶେଷକରି ମହାତ୍ମା ଗାନ୍ଧି, ପଣ୍ଡିତ ଜବାହରଲାଲ ନେହରୁ, ସର୍ଦ୍ଦାର ପଟେଲ, ମୌଲାନା ଆଜାଦ, ସୀମାନ୍ତ ଗାନ୍ଧି, ସରୋଜିନୀ ନାଇଡୁ, ଗୋପବନ୍ଧୁ ଦାସ, ସୁଭାଷ ଚନ୍ଦ୍ର ବୋଷ ଓ ଶ୍ରୀମତୀ ଇନ୍ଦିରା ଗାନ୍ଧି; ଯେଉଁମାନଙ୍କ ଅସୀମ ତ୍ୟାଗ ଓ ପରାକାଷ୍ଠା ବିନା ଭାରତବର୍ଷ ସ୍ୱାଧୀନତାର ଆଲୋକ ଦେଖିବା ସମ୍ଭବପର ହୋଇପାରି ନଥାନ୍ତା, ସେମାନଙ୍କ ନିକଟରେ ଆମ ଦେଶ କୃତଜ୍ଞ ।

"ଓଡ଼ିଶାରେ ସକଳ ସଂପଦ ଭରି ରହିଛି । ପ୍ରକୃତିର ସମସ୍ତ ଉପାଦାନ ଯଥା—ବିପୁଳ ଖଣିଜ ସଂପଦ ଓ ସୁଦୀର୍ଘ ସମୁଦ୍ର ଉପକୂଳ ଏହି ରାଜ୍ୟରେ ରହିଅଛି । ଓଡ଼ିଶାର ଜନସାଧାରଣ ଧୀସଂପନ୍ନ ଓ କର୍ମଠ । ଏହା ସତ୍ତ୍ୱେ ଦୁର୍ଭାଗ୍ୟର ବିଷୟ ଯେ ଏହି ରାଜ୍ୟ ଦାରିଦ୍ର୍ୟ ଓ ଅନଗ୍ରସରତା ମଧ୍ୟରେ ଗତି କରୁଛି । ଆଗାମୀ ବର୍ଷମାନଙ୍କରେ ପ୍ରତ୍ୟେକ କ୍ଷେତ୍ରରେ ଆମର ଉଦ୍ୟମକୁ ଦ୍ୱିଗୁଣିତ କରିବାକୁ ହେବ ଯଦ୍ୱାରା ଆମ ରାଜ୍ୟ ଭାରତବର୍ଷର ଉନ୍ନତ ରାଜ୍ୟମାନଙ୍କ ମଧ୍ୟରେ ନିଜର ନ୍ୟାଯ୍ୟ ସ୍ଥାନ ପାଇପାରିବ ।

"ଆମ ରାଜ୍ୟ ଥରକୁ ଥର ପ୍ରାକୃତିକ ବିପର୍ଯ୍ୟୟର ସମ୍ମୁଖୀନ ହୋଇଛି; ଫଳରେ ପ୍ରଭୂତ ଧନ ଜୀବନ ନଷ୍ଟ ହେବା ସଙ୍ଗେ ସଙ୍ଗେ ଅର୍ଥନୀତି ଘୋର ବିପର୍ଯ୍ୟସ୍ତ ହୋଇପଡ଼ିଛି । ବନ୍ୟା, ବାତ୍ୟା ଓ ମରୁଡ଼ି ଅପରିସୀମ କ୍ଷତି ଘଟାଇବା ସଙ୍ଗେ ସଙ୍ଗେ ଅବର୍ଣ୍ଣନୀୟ ଦୁର୍ଦ୍ଦଶାର କାରଣ ହୋଇଛି ।

"ଆମ ରାଜ୍ୟ ଏହି କେତେବର୍ଷ ଭିତରେ ବିକାଶର ସବୁ କ୍ଷେତ୍ରରେ ଦ୍ରୁତ ଅଗ୍ରଗତି କରିପାରିଛି । ରାଜ୍ୟର ସର୍ବାଙ୍ଗୀନ ବିକାଶ ପାଇଁ ସରକାର ବାସ୍ତବ ପକ୍ଷେ ବହୁବିଧ ଯୋଜନା କାର୍ଯ୍ୟକାରୀ କରିଛନ୍ତି ।

"ଓଡ଼ିଶାର ଅର୍ଥନୈତିକ ସମୃଦ୍ଧି ଦୃଷ୍ଟିରୁ କୃଷିର ଭୂମିକା ଅତୀବ ଗୁରୁତ୍ୱପୂର୍ଣ୍ଣ । ରାଜ୍ୟର ଦୁଇ-ତୃତୀୟାଂଶ ଆୟ କୃଷିରୁ ମିଳିଥାଏ ଏବଂ ରାଜ୍ୟର ତିନି-ଚତୁର୍ଥାଂଶ ଶ୍ରମଜୀବୀ କୃଷିକୁ ମୁଖ୍ୟ ଜୀବିକା ରୂପେ ଗ୍ରହଣ କରିଥାନ୍ତି । ମିଶ୍ରିତ ଚାଷ ପ୍ରଣାଳୀ ପ୍ରବର୍ତ୍ତନ, ଉନ୍ନତ ବିହନ ଓ ବୈଜ୍ଞାନିକ ପ୍ରଣାଳୀରେ ଆଧୁନିକ ଚାଷ ପ୍ରଣାଳୀ ଜରିଆରେ କୃଷି ଉତ୍ପାଦନ ବୃଦ୍ଧି କରିବା ପାଇଁ ଏକ ସୁସଙ୍ଗତ ଯୋଜନା କାର୍ଯ୍ୟକାରୀ କରାଯାଉଛି । ଦେଶ ସ୍ୱାଧୀନତା ହାସଲ କରିବା ସମୟରେ ଆମ ରାଜ୍ୟରେ ମାତ୍ର ୧୫ ଲକ୍ଷ ଟନ ଖାଦ୍ୟ ଶସ୍ୟ ଉତ୍ପାଦନ ହେଉଥିବା ସ୍ଥଳେ ଷଷ୍ଠ ପଞ୍ଚବାର୍ଷିକ ଯୋଜନା ଶେଷ ସୁଦ୍ଧା ତାହା ଚାରିଗୁଣରୁ ଊର୍ଦ୍ଧ୍ୱକୁ ବୃଦ୍ଧି ପାଇପାରିଛି ।

ଏ ଦିଗରେ ଆମକୁ ଆଉ ପଛେଇ ଯିବାକୁ ହେବ ନାହିଁ । ଚଳିତ ଆର୍ଥିକ ବର୍ଷ ମଧ୍ୟରେ ୭୬·୩୨ ଲକ୍ଷ ଟନ ଖାଦ୍ୟଶସ୍ୟ, ୧୦·୮୦ ଲକ୍ଷ ଟନ ଡାଲି ଜାତୀୟ ଶସ୍ୟ ଏବଂ ୯·୧୦ ଲକ୍ଷ ଟନ ତୈଳବୀଜ ଉତ୍ପାଦନ ନିମନ୍ତେ ଲକ୍ଷ୍ୟ ଧାର୍ଯ୍ୟ କରଯାଇଛି । ୧୯୮୩-୮୪ ମସିହାରେ ହେକ୍ଟର ପିଛା ସାର ବ୍ୟବହାର ୧୧·୪ କିଲୋଗ୍ରାମ ଥିବାବେଳେ ୧୯୮୪-୮୫ରେ ତାହା ୧୪ କିଲୋଗ୍ରାମକୁ ବୃଦ୍ଧି ପାଇଛି । ୧୯୮୫ ଜୁନ୍ ମାସ ସୁଦ୍ଧା ସମୁଦାୟ ୩୬·୭୨ ଲକ୍ଷ କୃଷକ ପରିବାରଙ୍କ ମଧ୍ୟରୁ ୨୮·୨୬ ଲକ୍ଷ ପରିବାରଙ୍କୁ ସମବାୟ ପରିସରଭୁକ୍ତ ଏହି ପରିବାରଙ୍କ ମଧ୍ୟରୁ ଶତକଡ଼ା ପ୍ରାୟ ୭୦ ଭାଗ ହେଉଛନ୍ତି କ୍ଷୁଦ୍ର ଓ ନାମମାତ୍ର ଚାଷୀ । ୧୯୮୬-୮୭ରେ ଆଦିବାସୀ ଓ ହରିଜନ ପରିବାରଙ୍କ ମଧ୍ୟରୁ ୨୫ ହଜାର ଲେଖାଏଁ ପରିବାରଙ୍କୁ ସମବାୟ ପରିସରଭୁକ୍ତ କରିବା ଲାଗି ସ୍ୱତନ୍ତ୍ର ବ୍ୟବସ୍ଥା କରାଯାଇଛି ।

“ଶିଳ୍ପ ବିକାଶ ନିମନ୍ତେ ରାଜ୍ୟରେ ଅନୁକୂଳ ବାତାବରଣ ସୃଷ୍ଟି କରାଯାଇଛି । ପ୍ରଶାସନ ବ୍ୟବସ୍ଥା ଓ ଶିଳ୍ପ ଉନ୍ନୟନ ସଂକ୍ରାନ୍ତ ବିଭିନ୍ନ ଉନ୍ନୟନ ସଂସ୍ଥାର କାର୍ଯ୍ୟଧାରାକୁ ସୁସଙ୍ଗତ କରାଯାଇଛି ।”

“ବୃହତ ଏବଂ ମଧ୍ୟମ ଶିଳ୍ପର ବିକାଶ ସଙ୍ଗେ ସଙ୍ଗେ କ୍ଷୁଦ୍ର ଏବଂ କାରିଗରୀ ଭିତ୍ତିକ ଶିଳ୍ପର ଅଭିବୃଦ୍ଧି ନିମନ୍ତେ ଯଥେଷ୍ଟ ଧ୍ୟାନ ଦିଆଯାଇଛି ।”

“ଷଷ୍ଠ ଯୋଜନାକାଳ ମଧ୍ୟରେ ରାଜ୍ୟରେ ରାଷ୍ଟ୍ରାୟତ୍ତ କ୍ଷେତ୍ରରେ ୮୫ଟି ବୃହତ ଓ ମଧ୍ୟମ ଶିଳ୍ପ, ୧୪,୩୧୮ କ୍ଷୁଦ୍ର ଶିଳ୍ପ ଓ ୩୬୫,୯୧୬ କାରିଗରୀଭିତ୍ତିକ ଶିଳ୍ପ ପ୍ରତିଷ୍ଠା ହୋଇଛି । ରାଜ୍ୟରେ ତନ୍ତୁବାୟ ଶ୍ରେଣୀଙ୍କ ସଂଖ୍ୟା ଯଥେଷ୍ଟ ବେଶୀ । ତେଣୁ ରାଜ୍ୟର ଅର୍ଥନୈତିକ ବିକାଶ ବିଶେଷକରି ତଫସିଲଭୁକ୍ତ ଜାତି ଓ ତଫସିଲଭୁକ୍ତ ସଂପ୍ରଦାୟର ବୁଣାକାରମାନଙ୍କ କଲ୍ୟାଣ ଦୃଷ୍ଟିରୁ ହସ୍ତତନ୍ତ ବିକାଶକୁ ଏକ ଗୁରୁତ୍ୱପୂର୍ଣ୍ଣ କାର୍ଯ୍ୟକ୍ରମ ରୂପେ ୨୦ ଦଫା ଅର୍ଥନୈତିକ କାର୍ଯ୍ୟକ୍ରମରେ ସ୍ଥାନ ଦିଆଯାଇଛି ଏବଂ ୧୨ଶହ କଳତନ୍ତ ପ୍ରତିଷ୍ଠା କରାଯାଇଛି ।

“ଜଳ ସଂପଦର ବକାଶ ପାଇଁ ରାଜ୍ୟ ସରକାର ଅଧିକ ଗୁରୁତ୍ୱ ଦେଇଛନ୍ତି । ଷଷ୍ଠ ଯୋଜନା ଶେଷ ସୁଦ୍ଧା ରାଜ୍ୟରେ ବୃହତ୍ ଏବଂ ମଧ୍ୟମ ଜଳସେଚନ ଯୋଜନା ମାଧ୍ୟମରେ ଖରିଫ୍ ଚାଷ ପାଇଁ ୮୪୯,୨୮୦ ହେକ୍ଟର ଜମି ଏବଂ ରବି ଚାଷ ପାଇଁ ୩୮୯,୨୯୦ ହେକ୍ଟର ଜମିରେ ଜଳସେଚନର ସୁବିଧା ସୃଷ୍ଟି କରାଯାଇ ପାରିଛି ।

“ସ୍ୱାସ୍ଥ୍ୟ ଏବଂ ଶିକ୍ଷା କ୍ଷେତ୍ରରେ ଯଥେଷ୍ଟ ଧ୍ୟାନ ଦିଆଯାଇଛି । ବେକାରୀ ସମସ୍ୟାର ଦୂରୀକରଣ ପାଇଁ ରାଜ୍ୟରେ ଅନେକ ସ୍ୱତନ୍ତ୍ର କର୍ମନିଯୁକ୍ତି ଯୋଜନା ହାତକୁ ନିଆଯାଇଛି । ଶିଳ୍ପ ଏବଂ କୃଷିର ଉନ୍ନତି କଲେ ବିଦ୍ୟୁତ୍‌ଶକ୍ତିର ଆବଶ୍ୟକତା ଯଥେଷ୍ଟ ଗୁରୁତ୍ୱପୂର୍ଣ୍ଣ । ଷଷ୍ଠ ଯୋଜନା ଶେଷ ସୁଦ୍ଧା ରାଜ୍ୟର ମୋଟ ୪୬,୯୯୨ ଗ୍ରାମ ମଧ୍ୟରୁ ୨୩,୭୬୨ ଗ୍ରାମକୁ ବିଦ୍ୟୁତ୍‌କରଣ କରାଯାଇଥିଲା । ଏହା ମୋଟ ଗ୍ରାମର ଶତକଡ଼ା ୫୦·୫୬ ଭାଗ । ଏହାଦ୍ୱାରା ଗ୍ରାମାଞ୍ଚଳର ଶତକଡ଼ା ୭୨ ଭାଗରୁ ଅଧିକ ଲୋକେ ଉପକୃତ ହୋଇଛନ୍ତି । ୧୯୮୬-୮୭ରେ ରାଜ୍ୟରେ ୧,୩୮୬ଗୋଟି ଗ୍ରାମକୁ ବିଦ୍ୟୁତ୍‌କରଣ କରାଯିବାର କାର୍ଯ୍ୟକ୍ରମ ରଖାଯାଇଛି । ଏତଦ୍‌ବ୍ୟତୀତ ୭,୬୩୦ ଗୋଟି ପମ୍ପ ସେଟକୁ ଏହି ସମୟ ମଧ୍ୟରେ ବିଦ୍ୟୁତ୍ ସଂଯୋଗ କରିବା ଲାଗି ଲକ୍ଷ୍ୟ ଧାର୍ଯ୍ୟ ହୋଇଛି ।

“ଷଷ୍ଠ ଯୋଜନା କାଳରେ ଗ୍ରାମାଞ୍ଚଳକୁ ଜଳ ଯୋଗାଣ ଦିଗରେ ଆମେ ଉଲ୍ଲେଖନୀୟ ପ୍ରଗତି ହାସଲ କରିଛୁ । ୨୭,୦୭୭ ଗୋଟି ଚିହ୍ନିତ ଜଳାଭାବ ଗ୍ରାମ ମଧ୍ୟରୁ ମୋଟ ୨୨,୩୫୭ ଗ୍ରାମରେ ଜଳ-ଯୋଗାଣ ବ୍ୟବସ୍ଥା କରାଯାଇଛି । ସମୁଦ୍ର ଉପକୂଳବର୍ତ୍ତୀ ୨୦ଟି ବ୍ଲକର ଲୁଣି ଅଞ୍ଚଳରେ ପାନୀୟ ଜଳର ସୁବ୍ୟବସ୍ଥା କରିବା ଲାଗି ଡେନ୍‌ମାର୍କ ସରକାରଙ୍କ ସହାୟତାରେ ଏକ ସ୍ୱତନ୍ତ୍ର ଯୋଜନା କାର୍ଯ୍ୟକ୍ରମ ଆରମ୍ଭ ହୋଇଛି ।

“ଅନଗ୍ରସର ଲୋକଙ୍କ ସାମାଜିକ ଅର୍ଥନୈତିକ ବିକାଶ ସାଧନ ସରକାରଙ୍କ ଅନ୍ୟତମ ମୁଖ୍ୟ ଲକ୍ଷ୍ୟ । ତଫସିଲଭୁକ୍ତ ଜାତି ଓ ତଫସିଲଭୁକ୍ତ ସଂପ୍ରଦାୟର ସାମାଜିକ ତଥା ଅର୍ଥନୈତିକ ଅବସ୍ଥାର ଉନ୍ନତି ବିଧାନ କରାଯିବା ସଙ୍ଗେ ସଙ୍ଗେ ସେମାନଙ୍କୁ ସମସ୍ତ ପ୍ରକାର ଶୋଷଣରୁ ରକ୍ଷା କରିବା ନିମନ୍ତେ ସ୍ୱତନ୍ତ୍ର ଉଦ୍ୟମ କରାଯାଉଛି । ଆଦିବାସୀ ଉପଯୋଜନା, ମାଡ଼ାପ୍ରୋଜେକ୍ଟ, ତଫସିଲଭୁକ୍ତ ଜାତିଙ୍କ ନିମିତ୍ତ ସ୍ୱତନ୍ତ୍ର କେନ୍ଦ୍ରୀୟ ଯୋଜନା, ସଂଶୋଧିତ ଅଞ୍ଚଳ ଉନ୍ନୟନ ଉଦ୍ୟୋଗ ଓ ସ୍ୱତନ୍ତ୍ର ଶିକ୍ଷା କାର୍ଯ୍ୟକ୍ରମ ମାଧ୍ୟମରେ ସେମାନଙ୍କର ସାମାଜିକ ତଥା ଅର୍ଥନୈତିକ ଅବସ୍ଥାର ବିକାଶ ନିମନ୍ତେ ବିଭିନ୍ନ କାର୍ଯ୍ୟକ୍ରମ ଆରମ୍ଭ କରାଯାଇଛି ।

"ଓଡ଼ିଶାର ପର୍ଯ୍ୟଟନ ବିଭବ ବର୍ତ୍ତମାନ ଆନ୍ତର୍ଜାତିକ ସ୍ୱୀକୃତି ଲାଭ କରିଛି । ୧୯୭୯-୮୦ ମସିହା ତୁଳନାରେ ୧୯୮୪-୮୫ ମସିହାରେ ଓଡ଼ିଶାକୁ ଆସିଥିବା ପର୍ଯ୍ୟଟକମାନଙ୍କ ସଂଖ୍ୟା ଶତକଡ଼ା ପ୍ରାୟ ୩୭ ଭାଗକୁ ବୃଦ୍ଧି ପାଇଛି । ୧୯୭୯-୮୦ ମସିହାରେ ୧୬୦,୦୭୫ ଜଣ ପର୍ଯ୍ୟଟକ ଓଡ଼ିଶା ପରିଦର୍ଶନରେ ଆସିଥିବା ସ୍ଥଳେ ୧୯୮୪-୮୫ ମସିହାରେ ୬୪୭,୪୪୦ ଜଣ ପର୍ଯ୍ୟଟକ ଓଡ଼ିଶା ଭ୍ରମଣରେ ଆସିଛନ୍ତି । ହୋଟେଲକୁ ଏକ ଶିଳ୍ପଭାବରେ ଘୋଷଣା କରିବାରେ ଓଡ଼ିଶା ହେଉଛି ଭାରତର ପ୍ରଥମ ରାଜ୍ୟ ଏବଂ ଏହି ପଦକ୍ଷେପ ଫଳରେ ଆନୁଷଙ୍ଗିକ ଭିତ୍ତିଭୂମିର ପ୍ରଭୂତ ବିକାଶ ସାଧନ ହୋଇପାରିଛି । ସରକାର ରାଜ୍ୟରେ କ୍ରୀଡ଼ାକସରତର ସୁସଂଗତ ବିକାଶ ଲାଗି ଏକ କ୍ରୀଡ଼ା ନୀତି ପ୍ରଣୟନ କରିଛନ୍ତି ।

"ନିରାଶ୍ରୟ ତଥା ଶାରୀରିକ ଅକ୍ଷମ ବ୍ୟକ୍ତିମାନଙ୍କୁ ସହାୟତା ପ୍ରଦାନ ସଂପର୍କରେ ସରକାର ସଚେତନ ଅଛନ୍ତି । ବାର୍ଦ୍ଧକ୍ୟଭତ୍ତା ପ୍ରଦାନ ପରିକଳ୍ପନାର ପରିସରକୁ ବୃଦ୍ଧି କରାଯାଇ ୫୦ ବର୍ଷ କିମ୍ବା ତଦୂର୍ଦ୍ଧ୍ୱ ବୟସର ନିରାଶ୍ରୟା ବିଧବାମାନଙ୍କୁ ଏଥିରେ ଅନ୍ତର୍ଭୁକ୍ତ କରାଯାଇଛି । ଷଷ୍ଠ ପଞ୍ଚବାର୍ଷିକ ଯୋଜନାର ପ୍ରଥମ ବର୍ଷରେ ବାର୍ଦ୍ଧକ୍ୟ ଭତ୍ତା ଯୋଜନାରେ ୬୨,୦୦୦ ଉପକୃତ ହୋଇଥିବା ବେଳେ ଉପକୃତ ବ୍ୟକ୍ତିଙ୍କ ସଂଖ୍ୟା ୧·୦୩ ଲକ୍ଷକୁ ବୃଦ୍ଧି ପାଇଛି ।

"ବିଂଶସୂତ୍ରୀ କାର୍ଯ୍ୟକ୍ରମର ସଫଳ ରୂପାୟନ ପାଇଁ ରାଜ୍ୟ ସରକାର ସଂକଳ୍ପବଦ୍ଧ । ଏହି କାର୍ଯ୍ୟକ୍ରମର କାର୍ଯ୍ୟକାରିତା ଦିଗରେ ଥିବା ପ୍ରତିବନ୍ଧକ ଦୂର କରିବା ପାଇଁ ବିଭିନ୍ନ ସ୍ତରରେ ସମନ୍ୱୟ ରକ୍ଷା ଦିଗରେ ଫଳପ୍ରଦ ବ୍ୟବସ୍ଥାମାନ ଗ୍ରହଣ କରାଯାଇଛି । ଷଷ୍ଠ ଯୋଜନା କାଳରେ ୩·୬୬ ଲକ୍ଷ ତଫସିଲଭୁକ୍ତ ଜାତି ଓ ୪·୨୭ ଲକ୍ଷ ତଫସିଲଭୁକ୍ତ ସଂପ୍ରଦାୟ ପରିବାର ସମେତ ମୋଟ ୧୪·୩୦ ଲକ୍ଷ ପରିବାର ବିଭିନ୍ନ ଦାରିଦ୍ର୍ୟ ଦୂରୀକରଣ ଯୋଜନା ଦ୍ୱାରା ଉପକୃତ ହୋଇଛନ୍ତି ।

"ସଂକ୍ଷେପରେ, ବିଗତ ଏକବର୍ଷ ଭିତରେ ଲୋକମାନଙ୍କର ଦୁଃଖଦୁର୍ଦ୍ଦଶା ମୋଚନ କରିବା ପାଇଁ ସରକାର ବିଭିନ୍ନ ପରିକଳ୍ପନା କାର୍ଯ୍ୟକାରୀ କରିଛନ୍ତି । କିନ୍ତୁ ପ୍ରଗତି କେବଳ ସରକାରଙ୍କ ଉପରେ ନିର୍ଭର କରେ ନାହିଁ । ଉଭୟ ସରକାର ଓ ଜନସାଧାରଣ ନିଷ୍ଠାର ସହିତ କାର୍ଯ୍ୟ କଲେ ପ୍ରଗତିର ସୁଫଳ ସଂପୂର୍ଣ୍ଣଭାବରେ ମିଳିପାରିବ । ଆମର ପ୍ରଗତି ଓ ବିକାଶକୁ ବ୍ୟାହତ କରିବା ପାଇଁ ଦେଶରେ ଯେଉଁ ସବୁ ଶକ୍ତି ବିଭେଦ ଓ ଅସ୍ଥିରତା ସୃଷ୍ଟି କରୁଛନ୍ତି, ସେମାନଙ୍କୁ ନିଶ୍ଚିହ୍ନ କରିବା ପାଇଁ ଆସନ୍ତୁ, ଆଜିର ପବିତ୍ର ଦିବସରେ ଆମେ ସଂକଳ୍ପ ନେବା ।

ଜୟହିନ୍ଦ୍"

ସ୍ୱାଧୀନତା ଦିବସ ଉପଲକ୍ଷେ

# ମୁଖ୍ୟମନ୍ତ୍ରୀ ଶ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକଙ୍କ ବାର୍ତ୍ତା



"ଦେଶର ୪୦ତମ ସ୍ୱାଧୀନତା ଦିବସ ଉପଲକ୍ଷେ ଓଡ଼ିଶାବାସୀ ମୋର ପ୍ରିୟ ଭାଇଭଉଣୀମାନଙ୍କୁ ଆନ୍ତରିକ ଅଭିନନ୍ଦନ ଜଣାଉଛି । ଜାତିର ସବୁଠାରୁ ମୂଲ୍ୟବାନ ସଂପଦ ହେଉଛି ସ୍ୱାଧୀନତା । ବହୁ ତ୍ୟାଗ, ତପସ୍ୟା, ଆତ୍ମବଳିଦାନ ପରେ ପରାଧୀନତାର ନାଗଫାଶ କାଟି ଏ ଦେଶ ସ୍ୱାଧୀନ ହୋଇଛି । ଆମର ସୌଭାଗ୍ୟ ଯେ ଆମେ ସ୍ୱାଧୀନତା ସଂଗ୍ରାମ ବେଳେ ଏ ଶତାବ୍ଦୀର ସର୍ବଶ୍ରେଷ୍ଠ ବ୍ୟକ୍ତି ମହାତ୍ମା ଗାନ୍ଧୀଙ୍କର ଅସାଧାରଣ ନେତୃତ୍ୱ ଲାଭ କରିପାରିଥିଲେ । ସେ ଯେ ଆମର ଦେଶର ସ୍ୱାଧୀନତା ପାଇଁ ଆମକୁ ସଫଳ ନେତୃତ୍ୱ ଦେଇଥିଲେ କେବଳ ସେତିକି ନୁହେଁ, ସାଂପ୍ରଦାୟିକ ମୈତ୍ରୀ ପ୍ରତିଷ୍ଠା କରି ସେ ଆମ ଦେଶକୁ ଏକତା ଓ ଅଖଣ୍ଡତା ରକ୍ଷାର ମହାନ୍ ମନ୍ତ୍ର ଦେଇଥିଲେ ଓ ସେଥିପାଇଁ ଆତ୍ମୋତ୍ସର୍ଗ କରିଥିଲେ । ପଣ୍ଡିତ ଜବାହରଲାଲ ନେହେରୁ ଦେଶ ଭିତରେ ଓ ବାହାରେ ହେଉଥିବା ବିଭିନ୍ନ ଷଡ଼ଯନ୍ତ୍ରକୁ ବ୍ୟର୍ଥ କରି ଦେଶରେ ଏକ ସାମାଜିକ, ଅର୍ଥନୈତିକ ଓ ବୈପ୍ଳବିକ ପରିବର୍ତ୍ତନ ଆଣିପାରିଥିଲେ ଏବଂ ବିଶ୍ୱ ଶାନ୍ତିର ବାର୍ତ୍ତା ଦେଇଥିଲେ । ଆମେ କୃତଜ୍ଞତାର ସହିତ ଏହି ଦୁଇ ମହାପୁରୁଷଙ୍କୁ ସ୍ମରଣ କରିବା କଥା । ତା ଛଡ଼ା ସ୍ମରଣ କରିବା କଥା ଇନ୍ଦିରା ଗାନ୍ଧୀଙ୍କୁ, ଯେ କି ଜାତିର ଅଖଣ୍ଡତା ପାଇଁ ଆତ୍ମବଳିଦାନ କରିଥିଲେ । ପ୍ରତି ମୁହୂର୍ତ୍ତରେ ଦେଶର ଐକ୍ୟ ଓ ସଂହତି ପାଇଁ ଯେ ସଚେତନ ରହିବାକୁ ପଡ଼ିବ ଏବଂ ଆବଶ୍ୟକ ବେଳେ ସେଥିପାଇଁ ସର୍ବୋଚ୍ଚ ମୂଲ୍ୟ ଦେବାକୁ ପଡ଼ିବ, ତାହାର ଜ୍ୱଳନ୍ତ ଉଦାହରଣ ଜାତିର ପିତା ମହାତ୍ମା ଗାନ୍ଧୀ ଓ ଶ୍ରୀମତୀ ଇନ୍ଦିରା ଗାନ୍ଧୀ ଯେଉଁମାନେ ଅସୀମ ତ୍ୟାଗ ସ୍ୱୀକାର ପୂର୍ବକ ଶହୀଦ୍ ହୋଇଯାଇଛନ୍ତି ସେ ସମସ୍ତଙ୍କୁ ଭକ୍ତି ଓ ଶ୍ରଦ୍ଧାର ସହିତ ଆଜି ଆମେ ସ୍ମରଣ କରିବା କଥା ।

"ଜାତି, ବର୍ଣ୍ଣ, ସଂପ୍ରଦାୟ ଓ ଆଞ୍ଚଳିକ ଭେଦଭାବ ଭୁଲି ଯେଉଁ ସନ୍ଥ ଓ ମନୀଷୀଗଣ ଭାରତର ଜୟଗାନ କରିଥିଲେ, ଏମାନଙ୍କର ବାର୍ତ୍ତା ଏବଂ ବାଣୀ ଆମକୁ ଉଦ୍‌ବୁଦ୍ଧ କରୁ । ସ୍ୱାମୀ ବିବେକାନନ୍ଦ କୁମାରିକା ଶିଳା ଉପରେ ବସି ଭାରତମାତାର ସୌମ୍ୟ ରୂପ ଦର୍ଶନ କରିଥିଲେ । ଭାରତୀୟ ଧର୍ମ ଓ ସଂସ୍କୃତିର ମହାନ୍ ବାର୍ତ୍ତା ପ୍ରଚାର କରିଥିଲେ । କବି ରବିନ୍ଦ୍ରନାଥ ଠାକୁର ଏ ଦେଶକୁ ଏକ ମହାମାନବର ସାଗର ବୋଲି ବର୍ଣ୍ଣନା କରି ଲେଖିଥିଲେ:—

"ହେ ମୋର ଚିର ପୁଣ୍ୟ ତୀର୍ଥ ଜାଗରେ ଧୀରେ
ଏହି ଭାରତର ମହାମାନବର ସାଗର ତୀରେ ।"

"ନିଜର ଜନ୍ମ ଦିବସ ଏହି ମହାନ୍ ଦିନରେ ଶ୍ରୀ ଅରବିନ୍ଦ ଏକ ଅଖଣ୍ଡ, ମହାନ୍, ଗୌରବମୟ, ସ୍ୱାଧୀନ ଭାରତ ଭୂମିର ସ୍ୱପ୍ନ ଦେଖିଥିଲେ । ଆଜକୁ ୪୦ ବର୍ଷ ତଳେ କବିବର ରାଧାନାଥ ଭାରତକୁ ପଦ୍ମଫୁଲ ଓ ଓଡ଼ିଶାକୁ ତା'ର ପାଖୁଡ଼ା ରୂପରେ ତାଙ୍କର ପ୍ରସିଦ୍ଧ 'ଭାରତ' ଗୀତିକାରେ ବର୍ଣ୍ଣନା କରିଥିଲେ—

'ଭାରତ ପଙ୍କଜ ଦଳମିବ ଉତ୍କଳମ୍ ।'

"କବି ମଧୁସୂଦନ ରାଓ ଆମର ଦେଶକୁ 'ତୁହି ମା ଜନମ ଭୂମି, ପବିତ୍ର ଭାରତ ଭୂମି, ତୋହର ସନ୍ତାନ ଆମେ ଅଟୁ ସରବେ' ବୋଲି ଗାନ କରିଥିଲେ । ସ୍ୱାଧୀନତାର ଏହି ୩୯ ବର୍ଷ ମଧ୍ୟରେ ଭାରତ ସମସ୍ତ କ୍ଷେତ୍ରରେ ବିପୁଳ ଅଗ୍ରଗତି କରିଛି । ଖାଦ୍ୟ, ବସ୍ତ୍ର, ଅନ୍ୟାନ୍ୟ ଶିଳ୍ପ ଓ ସାମରିକ ସ୍ଥିତିଦାରେ, ବିଜ୍ଞାନ ଓ କାରୀଗରୀ କୌଶଳ ରେ ଭାରତ ଆଜି ସ୍ୱାବଲମ୍ବୀ ହୋଇପାରିଛି ଏବଂ ସବୁଠାରୁ ବଡ଼ କଥା, ପୃଥିବୀର ବୃହତ୍ତମ ଗଣତନ୍ତ୍ର ଭାବରେ ନିଜକୁ ପ୍ରତିଷ୍ଠିତ କରାଇ ପାରିଛି । ପ୍ରତି ପାଞ୍ଚ ବର୍ଷରେ ଭାରତର ଜନସାଧାରଣ

ନିଜର ଇଚ୍ଛାନୁଯାୟୀ ସରକାର ନିର୍ବାଚିତ କରିଛନ୍ତି ଏବଂ ଲୋକସଭା ଓ ରାଜ୍ୟ ବିଧାନ ସଭାମାନଙ୍କ ଗତ ସାଧାରଣ ନିର୍ବାଚନ ହେଉଛି ତାର ନିକଟତମ ଦୃଷ୍ଟାନ୍ତ । ଭାରତର ଜନତା ଆଜି ଜଣେ ଯୁବକ ପ୍ରଧାନମନ୍ତ୍ରୀଙ୍କୁ ଶାସନର ବାଗଡ଼ୋର ଅର୍ପଣ କରିଛନ୍ତି । ଦେଶର ଜଟିଳତମ ସମସ୍ୟାମାନଙ୍କର ସମାଧାନ କରିବା ପାଇଁ ଶ୍ରୀ ରାଜୀବ ଗାନ୍ଧୀ ଅସୀମ ସାହସ ଓ ଦୃଢ଼ତାର ପରିଚୟ ଦେଉଛନ୍ତି । ଦେଶକୁ ସମସ୍ତ କ୍ଷେତ୍ରରେ ଆଗୁଆ କରି ଏକବିଂଶ ଶତାବ୍ଦୀକୁ ନେଇଯିବା ହେଉଛି ତାଙ୍କର ଲକ୍ଷ୍ୟ । ମାତ୍ର ଏବେ ମଧ୍ୟ ଦେଶର ଏକତା ଓ ସଂହତି ପକ୍ଷେ ଯେଉଁ ବିପଦ ବାରମ୍ବାର ଦେଖା ଦେଇଛି ତାହା ଶେଷ ହୋଇନାହିଁ । ବୈଦେଶିକ ଷଡ଼ଯନ୍ତ୍ରକାରୀମାନେ ପୁଣି ସକ୍ରିୟ ହୋଇ ଉଠିଛନ୍ତି । ଉଗ୍ରପନ୍ଥୀ ଓ ସଂତ୍ରାସବାଦୀମାନଙ୍କର ହୀନ ଉଦ୍ୟମ ଶେଷ ହୋଇନାହିଁ । ସାଂପ୍ରଦାୟିକ ହିଂସାକାଣ୍ଡ ପରିବର୍ତ୍ତେ ବିଭିନ୍ନ ଜାତି ଓ ସଂପ୍ରଦାୟ ମଧ୍ୟରେ ମୈତ୍ରୀପୂର୍ଣ୍ଣ ସଂପର୍କ ପ୍ରତିଷ୍ଠା କରିବା ଓ ଦେଶର ସମସ୍ତ ଅଞ୍ଚଳରେ ଏକ ଶାନ୍ତିପୂର୍ଣ୍ଣ ଅଗ୍ରଗତି ଅଖଣ୍ଡ ରଖିବା ହେଉଛି ଆଜି ଆମର ଲକ୍ଷ୍ୟ । ବ୍ୟକ୍ତିଗତ ଓ ସମୂହ ସ୍ୱାର୍ଥ ଦୃଷ୍ଟିରୁ ଏହି ଲକ୍ଷ୍ୟ ସାଧନ କରିବା ଆଜି ଏକ ସମୂହ କର୍ତ୍ତବ୍ୟରୂପେ ଦେଖାଦେଇଛି ।

"ଗତ 6 ବର୍ଷ ମଧ୍ୟରେ ଭାରତର ବିଭିନ୍ନ କ୍ଷେତ୍ରରେ ନିଜକୁ ସୁପ୍ରତିଷ୍ଠିତ କରିବା ପାଇଁ ଓଡ଼ିଶା ପକ୍ଷରୁ ବିପୁଳ ଉଦ୍ୟମ ଆରମ୍ଭ ହୋଇଛି । କୃଷି, ଜଳସେଚନ ଓ ବିଦ୍ୟୁତ୍ ଶକ୍ତିର ବିକାଶ, ଶିଳ୍ପର ବିସ୍ତାର, ଜଙ୍ଗଲର ଉନ୍ନୟନ ଓ ସବୁଠାରୁ ଗରିବ ଲୋକଙ୍କ ଥଇଥାନ ପାଇଁ ବ୍ୟାପକ କାର୍ଯ୍ୟକ୍ରମ କରାଯାଇଛି । ଉଚ୍ଚଶିକ୍ଷା ଓ ବୈଷୟିକ ଶିକ୍ଷାର ବିକାଶ ନିମନ୍ତେ ଏକ ସୁଚିନ୍ତିତ କାର୍ଯ୍ୟକ୍ରମ ଗ୍ରହଣ କରାଯାଇଛି । ବନ୍ୟା, ବାତ୍ୟା, ମରୁଡ଼ି ଓ କରକାପାତ ଆଦି ପ୍ରାକୃତିକ ବିପର୍ଯ୍ୟୟକୁ ସଫଳତାର ସହିତ ସାମନା କରାଯାଇଛି । ତଫସିଲଭୁକ୍ତ ଜାତି ଓ ଉପଜାତିର ଲୋକଙ୍କ ଉନ୍ନତି ପାଇଁ ଓ ସେମାନଙ୍କୁ ଚାକିରୀବାକିରୀରେ ସୁବିଧା ସୁଯୋଗ ଦେବାପାଇଁ ବିରାଟ ପଦକ୍ଷେପମାନ ଗ୍ରହଣ କରାଯାଇଛି । ଓଡ଼ିଶାର ଏହି ଅଗ୍ରଗତି ଜାତୀୟ ସ୍ତରରେ ସ୍ୱୀକୃତ । କେନ୍ଦ୍ର ସରକାରଙ୍କ ଆଶୀର୍ବାଦ ସବୁବେଳେ ଓଡ଼ିଶା ପ୍ରତି ରହି ଆସିଛି ଏବଂ ଭବିଷ୍ୟତରେ ରହିବ । ଏହି ଅଗ୍ରଗତି ସମ୍ଭବ ହୋଇଛି ଏହି ଶାସନଗତ ସ୍ଥିରତା, ଓଡ଼ିଶାର ଜନସାଧାରଣଙ୍କ ଅକୁଣ୍ଠ ସହଯୋଗ ଓ ସମର୍ଥନ ପାଇଁ । ତେଣୁ ଆଜି ଏହି ସ୍ୱାଧୀନତା ଦିବସ ଉପଲକ୍ଷେ ଓଡ଼ିଶାର ଜନସାଧାରଣଙ୍କୁ ମୁଁ ମୋର ଗଭୀର କୃତଜ୍ଞତା ଜଣାଉଛି ଏବଂ ଓଡ଼ିଶାକୁ ଭାରତର ଶ୍ରେଷ୍ଠ ରାଜ୍ୟରେ ପରିଣତ କରିବାର ସ୍ୱପ୍ନକୁ ସଫଳ କରିବା ପାଇଁ ଆମର ସଂକଳ୍ପ ପୁଣି ଥରେ ଘୋଷଣା କରୁଛି ।"

ଜୟହିନ୍ଦ୍

# ମୋ ଦୃଷ୍ଟିରେ ....

ଆମ ଦେଶ ସ୍ୱାଧୀନ ହେବା ପୂର୍ବରୁ ଜାତିର ପିତା ଗାନ୍ଧୀଜୀ କହିଥିଲେ ମୁଁ ଭାରତକୁ ସ୍ୱାଧୀନ ଓ ଶକ୍ତିଶାଳୀ ଦେଶରୂପେ ଦେଖିବାକୁ ଚାହେଁ । ଏ ଦେଶ ବିଶ୍ୱର ମଙ୍ଗଳ ନିମନ୍ତେ ସମସ୍ତ ତ୍ୟାଗ କରିପାରିବ ଏବଂ ଏହାର ମୁକ୍ତି ବିଶ୍ୱବାସୀଙ୍କ ପାଇଁ ନୂତନ ଆଲୋକ ବିକୀରଣ କରିପାରିବ । ଶାନ୍ତି ଓ ସଦିଚ୍ଛାର ମହାନ ମନ୍ତ୍ରରେ ବିଶ୍ୱକୁ ଅଭିମନ୍ତ୍ରିତ କରିବା ହେବ ଭାରତର ଚରମ ଲକ୍ଷ୍ୟ । ବିଶ୍ୱ ଶାନ୍ତି ଓ ପ୍ରଗତି ପାଇଁ ଭାରତ ଯେଉଁ ଅବଦାନ ଦେବ, ତାହା ନିଶ୍ଚୟ ଅନବଦ୍ୟ ହେବ ।

୧୯୪୭ ମସିହା ଅଗଷ୍ଟ ୧୫ ତାରିଖ ଦିନ ଭାରତ ସ୍ୱାଧୀନ ହେଲା । ଏହି ଦିବସ ଭାରତର ଜନ୍ମ ଦିବସ । ଏକ ପରାଧୀନ ଯୁଗର ଅବସାନ ଏବଂ ଏକ ନବୀନ ସ୍ୱାଧୀନ ଯୁଗର ଅଭ୍ୟୁତ୍‌ଥାନର ସୀମା ନିର୍ଦ୍ଧାରଣ କରିଛି ଏ ଦିବସ । ଏହି ସ୍ୱାଧୀନତା ଦିବସ ବର୍ଷକୁ ବର୍ଷ ନୂତନ ସ୍ମୃତି, ସଂକଳ୍ପ ଓ ଶପଥର ସ୍ୱାକ୍ଷର ବହନ କରି ଆମ ନିକଟକୁ ବିଗତ ୩୯ ବର୍ଷ ଧରି ଆସିଛି । ଆଜି ଆମେ ତାର ୪୦ତମ ଉତ୍ସବ ପାଳନ କରୁଛେ ।

ବହୁ ତ୍ୟାଗ ପ୍ରସୂତ ଏହି ସ୍ୱାଧୀନତାର ମୂଲ୍ୟକୁ ଭାରତୀୟ ମହାଜାତି ଭୁଲିପାରିବ ନାହିଁ । ଏଥିପାଇଁ ବହୁ ଆନ୍ଦୋଳନ ହୋଇଛି । ଲକ୍ଷ ଲକ୍ଷ ଯୁବକ ଏହି ଆନ୍ଦୋଳନରେ କାରାବରଣ କରିଛନ୍ତି, ନିର୍ମମ, ଅମାନୁଷିକ ଅତ୍ୟାଚାର ସହିଛନ୍ତି ଓ ଆତ୍ମବଳୀ ଦେଇଛନ୍ତି—ସହିଦ ହୋଇଛନ୍ତି । ଆମର ଏହି ପୁଣ୍ୟ ଦିବସରେ ସମସ୍ତେ ସ୍ମରଣୀୟ ।

ମହାତ୍ମା ଗାନ୍ଧୀଙ୍କର ଆଶା ଓ ଆକାଂକ୍ଷାକୁ ଫଳବତୀ କରିବା ଦିଗରେ ତାଙ୍କର ଉତ୍ତର ଦାୟାଦମାନଙ୍କର ନେତୃତ୍ୱରେ ଭାରତୀୟ ମହାଜାତି ନିରବଚ୍ଛିନ୍ନ ପ୍ରଚେଷ୍ଟା କରି ଆସୁଛି । ଏକ ସ୍ୱାଧୀନ ଜାତି ଭାବରେ ଏହି ଦିବସର ଗୁରୁତ୍ୱକୁ ଆମେ କିପରି ଆମର ଜୀବନ ଓ କର୍ମ ଦ୍ୱାରା ବଜାୟ ରଖି ପାରୁଛେ ତାର ଅନୁଶୀଳନ ହେବା ଉଚିତ୍ । ମୁଖ୍ୟମନ୍ତ୍ରୀ ଶ୍ରୀଯୁକ୍ତ ଜାନକୀ ବଲ୍ଲଭ ପଟ୍ଟନାୟକଙ୍କର ଏହି ଦିବସର ଏକ ଅଭିଭାଷଣକୁ ଆମେ ସନ୍ନିବେଶିତ କରିଛୁ । ଆଶାକରୁ, ଏଇ ଅନୁଶୀଳନରେ ଏହି ଭାଷଣଟି ସମ୍ୟକ୍ ସାହାଯ୍ୟ କରିବ ।

ଏ ସଂଖ୍ୟାରେ କେତେଜଣ ସ୍ୱାଧୀନତା ସଂଗ୍ରାମୀ ସ୍ୱାଧୀନତା ସଂଗ୍ରାମର ସ୍ମୃତି ସ୍ମରଣ କରିଛନ୍ତି । ସମୟର ଅଗ୍ରଗତି ସଙ୍ଗେ ସଙ୍ଗେ ଆମ ଦେଶର ସ୍ୱାଧୀନତା ସଂଗ୍ରାମର ସ୍ମୃତି ମଉଳି ଆସୁଛି । ଆମ ଦେଶର ଯୁବ ସମାଜ ସେହି ସବୁ ଦିନର ଦୁଃଖ ନିର୍ଯାତନାର ଏକ ସମ୍ୟକ ଚିତ୍ର ଏହି ଲେଖା ଗୁଡ଼ିକରୁ ପାଇ ପାରିବେ ବୋଲି ଆମେ ଆଶା କରୁଛୁ ।

ନିକଟରେ ଆମ ମୁଖ୍ୟମନ୍ତ୍ରୀ ତାଙ୍କର ମନ୍ତ୍ରିମଣ୍ଡଳକୁ ସଂପ୍ରସାରିତ କରିଛନ୍ତି । ଏହି ଅବସରରେ ମନ୍ତ୍ରିମଣ୍ଡଳର ନବାଗତମାନଙ୍କୁ ତଥା ଅନ୍ୟ ସମସ୍ତଙ୍କୁ ଉତ୍କଳ ପ୍ରସଙ୍ଗ ଅଭିନନ୍ଦନ ଜଣାଉଛି ଓ ତାର ସହୃଦୟ ପାଠକ ପାଠିକାଙ୍କୁ ୧୯୮୬ ମସିହା ସ୍ୱାଧୀନତା ଦିବସର ଶୁଭେଚ୍ଛା ଜଣାଉଛି ।

ଜୟ ଭାରତ, ଜୟ ଉତ୍କଳ ଜନନୀ ।



## ଆମ ଜାତୀୟ ପତାକା

ଭାରତୀୟ ଜାତୀୟ ପତାକାର ଆଦ୍ୟଭାଗ କେଶରୀ, ମଧ୍ୟଭାଗ ଶ୍ୱେତ ଏବଂ ନିମ୍ନଭାଗ ସବୁଜ ରଙ୍ଗ । କେଶରୀ ରଙ୍ଗ ହେଲା ସାହସ ଓ ତ୍ୟାଗର ପ୍ରତୀକ । ସତ୍ୟ, ଶାନ୍ତି ଓ ପବିତ୍ରତା ପାଇଁ ଶ୍ୱେତ ରଙ୍ଗ ଉଦ୍ଦିଷ୍ଟ । ସବୁଜ ରଙ୍ଗ ବୀରତ୍ୱ, ବିଶ୍ୱାସ, ଶ୍ରଦ୍ଧା ଓ ଭକ୍ତିର ନିଦର୍ଶନ । ଶାନ୍ତି ଓ ପ୍ରଗତିର ପ୍ରତୀକ ରୂପେ ପତାକାର ମଧ୍ୟଭାଗରେ ଅଶୋକଚକ୍ର ବିଦ୍ୟମାନ ।

**ଆକାର**—ଜାତୀୟ ପତାକା ପାଞ୍ଚଗୋଟି ଆକାରରେ ମିଳିଥାଏ—
(୧) ୨୧ × ୧୪ (୨) ୧୨ × ୮ (୩) ୬ × ୪
(୪) ୩ × ୨ ଓ (୫) ୯ × ୬

**ପତାକା ପ୍ରଦର୍ଶନର ନିୟମାବଳୀ:—**

* ସରକାରୀ କୋଠାମାନଙ୍କରେ ଜାତୀୟ ପତାକା ଉଡାଇବାକୁ ହେଲେ ଏହା ରବିବାର ଓ ଛୁଟିଦିନ ସମେତ ସବୁଦିନ ଉଡ଼ାଯିବ ଓ ପାଣିପାଗ ଅବସ୍ଥା ଯେପରି ହୋଇଥାଉ ପଛକେ ସୂର୍ଯ୍ୟୋଦୟ ଠାରୁ ସୂର୍ଯ୍ୟାସ୍ତ ପର୍ଯ୍ୟନ୍ତ ଉଡୁଥିବ । ଅତି ବିଶିଷ୍ଟ ଅବସରରେ ଏହା ରାତିରେ ମଧ୍ୟ ଉଡା ଯାଇ ପାରେ ।
* ଯଦି କୌଣସି ସଭାମଞ୍ଚରେ ପତାକା ଉଡ଼ା ଯାଉଥାଏ, ତେବେ ତାହା ବକ୍ତାଙ୍କ ଡାହାଣ ପଟକୁ ରହିବ । ଯଦି ଏହା ଅନ୍ୟ ଭାବେ ପ୍ରଦର୍ଶିତ ହୋଇଥାଏ ତେବେ ପତାକାଟି ବକ୍ତାଙ୍କ ପଛପଟେ ଓ ଉର୍ଦ୍ଧ୍ୱରେ ରହିବ ।
* କୌଣସି ଶୋଭାଯାତ୍ରା ବା ପରେଡରେ ନିଆଗଲାବେଳେ ପତାକାଟି ଶୋଭାଯାତ୍ରାର ଅଗ୍ରଭାଗରେ ଡାହାଣ ପଟକୁ ରହିବ ଅର୍ଥାତ୍ ପତାକାଟି ନିଜର ଡାହାଣ ପଟକୁ ରହିବ । ଯଦି ଅନ୍ୟ କେତେକ ପତାକା ଗୋଟିଏ ଧାଡ଼ିରେ ନିଆଯାଉଥାଏ, ତେବେ ଧାଡ଼ି ସମୂହର କେନ୍ଦ୍ର ସ୍ଥାନରେ ଜାତୀୟ ପତାକାଟି ରହିବ ।
* ନଷ୍ଟ ହୋଇଯାଇଥିବା କିମ୍ବା ଅବ୍ୟବସ୍ଥିତ ବା ମୋଡ଼ି ମକଚି ହୋଇଯାଇଥିବା ପତାକା ପ୍ରଦର୍ଶନ କରାଯିବ ନାହିଁ ।
* କୌଣସି ବ୍ୟକ୍ତି ବା ବସ୍ତୁକୁ ପ୍ରଣାମ ଜଣାଇବା ଉଦ୍ଦେଶ୍ୟରେ ପତାକା ନତ କରାଯିବ ନାହିଁ ।
* କୌଣସି ପତାକା ଜାତୀୟ ପତାକା ସହିତ ଉଡାଯାଇ ପାରିବ ନାହିଁ ।
* ସଭା ସମିତିରେ ବକ୍ତାଙ୍କ ଟେବୁଲର ଆଚ୍ଛାଦନ ରୂପେ କିମ୍ବା ସଭାମଞ୍ଚ ଉପରେ ଝାଲର ଆକାରରେ ଜାତୀୟ ପତାକା ବ୍ୟବହାର କରାଯିବ ନାହିଁ ।
* ଜାତୀୟ ପତାକାକୁ ଭୂମି କିମ୍ବା ଘର ତଳ ସ୍ପର୍ଶ କରିବାକୁ କିମ୍ବା ପାଣିରେ ଘୁସୁରିବାକୁ ଦିଆଯିବ ନାହିଁ ।
* ଜାତୀୟ ପତାକା ଉତ୍ତୋଳନ ବା ଅବତରଣ ଉତ୍ସବ ସମୟରେ ସେଠାରେ ଉପସ୍ଥିତ ସମସ୍ତ ଲୋକ ପତାକା ଆଡକୁ ମୁହଁ କରି ସାବଧାନ ହୋଇ ଠିଆ ହେବେ । ଯେଉଁମାନେ ୟୁନିଫର୍ମ୍ ପିନ୍ଧି ଉପସ୍ଥିତ ଥିବେ ସେମାନେ ପତାକାକୁ ଯଥାରୀତି ଅଭିବାଦନ ଜଣାଇବେ ।



# ସ୍ମୃତି ଓ ସଂକଳ୍ପର ଦିନ

ଶ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକ

ସ୍ୱାଧୀନତା ଦିବସ ଯେ କୌଣସି ଦେଶ ବା ଜାତି ନିକଟରେ ବହୁପାଇଁ ମହାନ୍ ଏବଂ ପବିତ୍ର । ଏହି ମହାନ୍ ଦିବସର ସ୍ୱପ୍ନକୁ ସାର୍ଥକ କରିବା ପାଇଁ ଯେଉଁମାନେ ଜୀବନକୁ ତିଳ ତିଳ କରି ଦେଶ ମାତୃକାର ପାଦପୀଠରେ ଅର୍ପଣ କରିଥିଲେ, ଆଜି ସେମାନଙ୍କୁ ଶ୍ରଦ୍ଧାର ସହିତ ସ୍ମରଣ କରିବା କଥା ।

ଆମର ଜାତୀୟ ପିତା ମହାତ୍ମା ଗାନ୍ଧୀ ଏ ଶତାବ୍ଦୀର ଶ୍ରେଷ୍ଠ ପୁରୁଷ । ...ର ମହାନ୍ ଆଦର୍ଶକୁ ପୃଥିବୀରେ ପ୍ରତିଷ୍ଠା କରିବା ପାଇଁ ଏବଂ ଆମ ...ରେ ଐକ୍ୟ ଓ ସଂହତିକୁ ରକ୍ଷା କରିବା ପାଇଁ ସେ ନିଜ ଜୀବନକୁ ...ଦାନ କଲେ । ସେହିପରି, ଜଣେ ମହୀୟସୀ ନେତ୍ରୀ ଶ୍ରୀମତୀ ଇନ୍ଦିରା ...ଧୀ ଏ ଦେଶର ସଂହତି ଓ ଐକ୍ୟକୁ ବଜାୟ ରଖିବା ପାଇଁ ଆତ୍ମୋତ୍ସର୍ଗ ...ଲେ । ଜାତି, ଧର୍ମ ଓ ବର୍ଣ୍ଣ ନିର୍ବିଶେଷରେ ଯେଉଁ ଆମର କବିମାନେ ...ରତବର୍ଷର ଜୟ ଗାନ କରିଛନ୍ତି, ସେମାନେ ମଧ୍ୟ ଆଜିର ଏହି ପୁଣ୍ୟ ...ସରରେ ସ୍ମରଣୀୟ । ଆମର ଆଜି ସ୍ମରଣ କରିବା କଥା ସ୍ୱାମୀ ...ବେକାନନ୍ଦଙ୍କୁ ଯିଏ କୁମାରୀକାର ଶିଳାଖଣ୍ଡ ଉପରେ ବସି ଭାରତମାତାର ...ବ୍ୟ ରୂପ ଦର୍ଶନ କରିଥିଲେ ଏବଂ ଭାରତବାସୀଙ୍କୁ ଆହ୍ୱାନ କରି ...ନିଷଦର ବାଣୀ ଉଦ୍ଧାର କରି କହିଥିଲେ "ଉତ୍ତିଷ୍ଠତ ଜାଗ୍ରତ, ପ୍ରାପ୍ୟ ...ନ୍ ନିବୋଧତ ।"

ସେହିପରି କବିଗୁରୁ ରବୀନ୍ଦ୍ରନାଥ ଭାରତମାତାଙ୍କର ଜୟଗାନ କରି ...ଥିଲେ, "ଏଇ ଭାରତେର, ମହାମାନବେର, ସାଗରତୀରେ ।" ...ସେ ଭାରତବର୍ଷକୁ ମହାମାନବର ତୀର୍ଥ ରୂପେ ଏବଂ ପୃଥିବୀର ଶ୍ରେଷ୍ଠ ...ରୂପେ ସେ ବର୍ଣ୍ଣନା କରିଯାଇଛନ୍ତି । ନିଜର ଜନ୍ମ ଦିବସ ଏହି ...ଦିନରେ ଶ୍ରୀ ଅରବିନ୍ଦ ଏକ ଅଖଣ୍ଡ, ମହାନ୍ ଗୌରବମୟ, ସ୍ୱାଧୀନ ...ଭୂମିର ସ୍ୱପ୍ନ ଦେଖିଛନ୍ତି । କବିବର ରାଧାନାଥ ମଧ୍ୟ ଆଜି ...ୟ । ସେ ଅଶାବର୍ଷ ତଳେ ଭାରତର ଜୟଗାନ କରି କହିଛନ୍ତି, ...ବର୍ଷ ହେଉଛି ଗୋଟିଏ ପଦ୍ମଫୁଲ ଏବଂ ଆମର ଓଡ଼ିଶା ହେଉଛି ...ଗୋଟିଏ ପାଖୁଡ଼ା ।

ଭାରତ ପଙ୍କଜ ଦଳମିଦମୁତ୍କଳ
　　　　ମଣ୍ଡଳମିତି ବିଦିତଂ ଯତ୍
ତସ୍ୟ କୃତେ ବୟମତ୍ର ସମେତା
　　　　ବିହିତାତ୍ରୋଜନ-ସଂସତ୍ ॥

ଭକ୍ତକବି ମଧୁସୂଦନ ଭାରତମାତାଙ୍କର ଜୟଗାନ କରିଛନ୍ତି ଏବଂ ଆମେ ସମସ୍ତେ ଏକ ମାଆର ସନ୍ତାନ ଭାବି ଗର୍ବ ଅନୁଭବ କରିଛନ୍ତି । ସେ ଲେଖିଛନ୍ତି—

"ତୁହିମା ଜନମ ଭୂଇଁ ପବିତ୍ର ଭାରତ ଭୂମି
　　　　ତୋହରି ସନ୍ତାନ ଆମେ ଅଟୁ ସରବେ,
ତୋର ଶ୍ରୀଚରଣେ ସେବା ପାଇଁ ମନ ପ୍ରାଣଦେବା
　　　　ଗାଇବା ତୋହରି ନାମ ଆନନ୍ଦ ରବେ ।"

ଆଜି ଏହି ପବିତ୍ର ଦିନରେ ଆମେ ଏହି ସନ୍ଥ, ସାଧୁ, ମହାପୁରୁଷ, ମନିଷୀ, କବି ସମସ୍ତଙ୍କୁ ସ୍ମରଣ କରି ଭକ୍ତି ସହକାରେ ପ୍ରଣାମ କରିବା କଥା; କାରଣ ସେହିମାନଙ୍କର ପବିତ୍ର ବାଣୀ ଏବଂ ଆଦର୍ଶରେ ଭାରତର ଜନସାଧାରଣ ଉଦ୍‌ବୁଦ୍ଧ ହୋଇଥିଲେ ଏବଂ ଏବେ ବି ହେଉଛନ୍ତି ।

ସ୍ୱାଧୀନତାର ଏହି ଅଣଚାଳିଶ ବର୍ଷରେ ଭାରତବର୍ଷର ଅଗ୍ରଗତି ଏବଂ ସାଫଲ୍ୟ ପୃଥିବୀରେ ଉଲ୍ଲେଖଯୋଗ୍ୟ । ଆଜି ଆମେ ବିଶେଷ ଗର୍ବ ଓ ଗୌରବର ସହିତ ସ୍ମରଣ କରିବା କଥା ଏଇ ଅଣଚାଳିଶ ବର୍ଷ ସମୟ ଭିତରେ ଆମେ ପୃଥିବୀରେ କିଭଳି ଭାବରେ ନିଜକୁ ପ୍ରତିଷ୍ଠିତ କରାଇ ପାରିଛେ । ପରାଧୀନତାର ବନ୍ଧନରୁ ମୁକ୍ତ ହେବା ସମୟରେ ଭାରତ ପୃଥିବୀର ଦେଶେ ଦେଶେ ଭିକ୍ଷା ଥାଳ ଧରି ବୁଲୁଥିଲା । ଖାଦ୍ୟ ଏବଂ ବସ୍ତ୍ରରେ ଭାରତବର୍ଷକୁ ସ୍ୱାବଲମ୍ବୀ କରିବାକୁ ଜାତିର ପିତା ମହାତ୍ମା ଗାନ୍ଧୀ ସେତେବେଳେ ଆହ୍ୱାନ ଦେଇଥିଲେ । ତାହା ଥିଲା ତାଙ୍କର ପ୍ରଥମ ଘୋଷଣା । ମହାତ୍ମା ଗାନ୍ଧୀଙ୍କର ଆକାଂକ୍ଷା ଓ ଅଭିଳାଷକୁ କିପରି ଭାବରେ କାର୍ଯ୍ୟକାରୀ କରାଯାଇ ପାରିଛି, ସେ ସବୁର ସମୀକ୍ଷା ଆଜି ଆମ ସମସ୍ତଙ୍କ ପକ୍ଷେ ବାଞ୍ଛନୀୟ । ଆଜି ଭାରତବର୍ଷ ଖାଦ୍ୟ, ବସ୍ତ୍ର, ଦେଶରକ୍ଷା ଓ ସାମରିକ କ୍ଷେତ୍ରରେ ଆତ୍ମନିର୍ଭରଶୀଳ ହୋଇ ପାରିଛି । ବିଶ୍ୱର ରାଜନୀତିରେ ଭାରତ ଏକ ନୂତନ ପଥ ଦେଖାଇ ପାରିଛି । ସେ ପଥ

ହେଉଛି, ବିଶ୍ୱଶାନ୍ତି ଓ ମୈତ୍ରୀର ପଥ । ସେ ପଥ ମହାତ୍ମା ଗାନ୍ଧୀଙ୍କର, ପଣ୍ଡିତ ଜବାହରଲାଲ ନେହେରୁଙ୍କର ଏବଂ ଶ୍ରୀମତୀ ଇନ୍ଦିରା ଗାନ୍ଧୀଙ୍କର । ପୃଥିବୀକୁ ଭାରତବର୍ଷର ଅନ୍ୟ ଏକ ଅବଦାନ ହେଉଛି, ସାମ୍ରାଜ୍ୟବାଦର ବିରୋଧ ଏବଂ ବର୍ଣ୍ଣବୈଷମ୍ୟବାଦର ବିଲୋପସାଧନ । ଏହି ନୀତିକୁ ଭାରତ ଅବିଚଳିତ ଭାବରେ ଗ୍ରହଣ କରି ଆସିଛି । ପୃଥିବୀର ବହୁ ଦେଶ ଭାରତର ସେ ନୀତିକୁ ଆଜି ସ୍ୱୀକାର କରିଛନ୍ତି । ଭାରତବର୍ଷର ଜନସାଧାରଣ ନିଜର ବୁଦ୍ଧି ବଳରେ-ହିଁ ବହୁ କ୍ଷେତ୍ରରେ ସ୍ୱାବଲମ୍ବନଶୀଳତା ହାସଲ କରିପାରିଛନ୍ତି ।

ବର୍ତ୍ତମାନ ଭାରତବର୍ଷ ଅନ୍ୟ ଏକ ନୂଆ ମୋଡ ନେଇଛି । ତାହା ହେଉଛି ଦାରିଦ୍ର୍ୟ ନିରାକରଣ ସଂଗ୍ରାମ । ସେ ସଂଗ୍ରାମ ସ୍ୱାଧୀନତା ସଂଗ୍ରାମ ସହିତ ଆରମ୍ଭ ହୋଇଥିଲା ଓ ଆଜି ଏହା ଶେଷ ପର୍ଯ୍ୟାୟରେ ଆସି ପହଞ୍ଚିଛି । ଏହି ପର୍ଯ୍ୟାୟରେ ଭାରତ ନିଶ୍ଚୟ ସଫଳତା ହାସଲ କରିପାରିବ । ଆଜି ଭାରତବର୍ଷର ଭାଗ୍ୟଡୋରି ଆମ ଯୁବ ପ୍ରଧାନମନ୍ତ୍ରୀ ଶ୍ରୀ ରାଜୀବ ଗାନ୍ଧୀଙ୍କ ହସ୍ତରେ ନ୍ୟସ୍ତ । ଶ୍ରୀ ଗାନ୍ଧୀ ସ୍ୱଳ୍ପ ସମୟ ଭିତରେ ଅନେକ ସମସ୍ୟାର ସମାଧାନ କରି ପାରିଛନ୍ତି । ଆଜି ତାଙ୍କର ନେତୃତ୍ୱକୁ ଗ୍ରହଣ କରି ଭାରତବର୍ଷ ଆଗେଇ ଚାଲିଛି ଏକବିଂଶ ଶତାବ୍ଦୀ ଆଡକୁ । ଏକବିଂଶ ଶତାବ୍ଦୀ ହେବ ଭାରତବର୍ଷ ପାଇଁ ଏକ ମହାନ ଶତାବ୍ଦୀ । ତେଣୁ ଅର୍ଥନୀତି, ବିଜ୍ଞାନ, ବିଶ୍ୱଶାନ୍ତି ପ୍ରତିଷ୍ଠା ଓ ଅନ୍ୟ ସମସ୍ତ କ୍ଷେତ୍ରରେ ଭାରତବର୍ଷକୁ ପୃଥିବୀ ସମକ୍ଷରେ ପ୍ରତିଷ୍ଠିତ କରାଇବାକୁ ପଡ଼ିବ ।

ଆଜି ଦେଶର ଏକତା ଓ ସଂହତିକୁ ବିପନ୍ନ କରିବା ପାଇଁ କେତେକ ଷଡଯନ୍ତ୍ରକାରୀ ସକ୍ରିୟ ହୋଇ ଉଠିଛନ୍ତି । ଉଗ୍ରପନ୍ଥୀ ଓ ସନ୍ତ୍ରାସବାଦୀମାନଙ୍କ ହୀନ ଉଦ୍ୟମ ଏବେ ବି ଶେଷ ହୋଇନାହିଁ । ସାଂପ୍ରଦାୟିକ ହିଂସାକାଣ୍ଡ ପରିବର୍ତ୍ତେ ବିଭିନ୍ନ ଜାତି ଓ ସଂପ୍ରଦାୟ ମଧ୍ୟରେ ମୈତ୍ରୀ ପ୍ରତିଷ୍ଠା କରିବା ଏବଂ ଦେଶର ସମସ୍ତ ଅଞ୍ଚଳରେ ଶାନ୍ତିପୂର୍ଣ୍ଣ ବାତାବରଣ ସୃଷ୍ଟିକରି ପ୍ରଗତିକୁ ଅକ୍ଷୁର୍ଣ୍ଣ ରଖିବା ହେଉଛି, ଆମର ଲକ୍ଷ୍ୟ ।

ବିଭିନ୍ନ କ୍ଷେତ୍ରରେ ନିଜକୁ ଭାରତରେ ସୁପ୍ରତିଷ୍ଠିତ କରିବା ପାଇଁ ଓଡ଼ିଶା ପକ୍ଷରୁ ନିରବଚ୍ଛିନ୍ନ ଉଦ୍ୟମ ଚାଲିଛି । କୃଷି, ଜଳସେଚନ, ବିଦ୍ୟୁତ ଶକ୍ତିର ବିକାଶ, ଶିଳ୍ପ ପ୍ରସାର, ଜଙ୍ଗଲ ଉନ୍ନୟନ ଓ ବିଶେଷକରି ଗରିବ ଲୋକଙ୍କ ଥଇଥାନ ପାଇଁ ବ୍ୟାପକ କାର୍ଯ୍ୟକ୍ରମ ଗ୍ରହଣ କରାଯାଇଛି । ଉଚ୍ଚଶିକ୍ଷା ଓ ବୈଷୟିକ ଶିକ୍ଷାର ବିକାଶ ନିମନ୍ତେ ସୁଚିନ୍ତିତ କାର୍ଯ୍ୟକ୍ରମ ନିଆଯାଇଛି । ତଫସିଲଭୁକ୍ତ ଜାତି ଓ ଉପଜାତିର ଲୋକଙ୍କ ଉନ୍ନତି ପାଇଁ ଏବଂ ସେମାନଙ୍କୁ ଚାକିରି ବାକିରିରେ ସୁବିଧା ସୁଯୋଗ ଦେବା ପାଇଁ ବିଭିନ୍ନ ପଦକ୍ଷେପ ନିଆଯାଇଛି । ବିଭିନ୍ନ କାରଣ ଯୋଗୁଁ ଆମେ ଓଡ଼ିଶାବାସୀ ଭାରତରେ ସବା ପଛରେ ପଡ଼ି ରହିଥିଲେ । କିନ୍ତୁ ଆଜି ଆମେ ସବା ପଛରେ ନାହୁଁ । ଆମେ କେତେକ ରାଜ୍ୟ ତୁଳନାରେ ନାନା କ୍ଷେତ୍ରରେ ଆଗକୁ ଆଗେଇ ପାରିଛେଁ । ଅଳ୍ପ ଦିନ ମଧ୍ୟରେ ଆମେ ପ୍ରଗତିର ପଥ୍ୱାରରେ ଯେ ଅଧିକ ଅଗ୍ରସର କରିବା, ଏଥିରେ କୌଣସି ସନ୍ଦେହ ନାହିଁ । ଦାରିଦ୍ର୍ୟ, କେବଳ ଓଡ଼ିଶାରେ ନୁହେଁ ସମଗ୍ର ଭାରତବର୍ଷରେ ରହିଛି । ଆଜି ସମଗ୍ର ଭାରତରେ ଦାରିଦ୍ର୍ୟ ବିରୁଦ୍ଧରେ ସଂଗ୍ରାମ ଆରମ୍ଭ ହୋଇଛି । ଏହି ସଂଗ୍ରାମରେ ଆମେ କିପରି ବିଜୟୀ ହୋଇ ପାରିବା, ତାହା ସମସ୍ତଙ୍କର ଚିନ୍ତା କରିବାର କଥା । ପ୍ରତ୍ୟେକ ବ୍ୟକ୍ତି ଏହି ସଂଗ୍ରାମରେ ନିଜ ନିଜର ଦାୟିତ୍ୱ ଓ କର୍ତ୍ତବ୍ୟ ସୁସ୍ପଷ୍ଟ ରୂପେ ତୁଲାଇବା ଉଚିତ । ଅଶେଷ ତ୍ୟାଗ ଓ ଦୃଢ଼ ସଂକଳ୍ପକୁ ସାମିଲ କରି ସମସ୍ତେ ଦେଶ ଗଠନରେ ବ୍ରତୀ ହେବା ଆଜି ଦିବସର ସଂକଳ୍ପ ହେଉ ।

(ମୁଖ୍ୟମନ୍ତ୍ରୀଙ୍କର ଏକ ଭାଷଣରୁ ସଂଗୃହୀତ)



ମୁଖ୍ୟମନ୍ତ୍ରୀ ବର୍ଷା ଜଳ ଘେରରେ ଥିବା କଟକ ସହରର ଘରଗୁଡ଼ିକ ବୁଲି ଦେଖୁଛନ୍ତି..

# ଅମର ସହିଦ ପ୍ରଣତି ନିଅ

ଶ୍ରୀ ରାଧାମୋହନ ଗଡନାୟକ
ଉପ ସଭାପତି
ଓଡ଼ିଶା ସାହିତ୍ୟ ଏକାଡେମୀ

ଅମର ସହିଦ, ପ୍ରଣତି ନିଅ
ଆମ ଏ ଜାତିର
ଆମ ଏ ମାଟିର
ଜନ୍ମ ମାଟିର
ବନ୍ଦନୀୟ
ଅମରସହିଦ, ପ୍ରଣତି ନିଅ ।

ତ୍ୟାଗ-ବୀର ତୁମେ ଦଧୀଚିର ସନ୍ତାନ
ଅସ୍ଥି ଦେଇଚ କ୍ରାନ୍ତିର ସନମାନ;
ପ୍ରଣତି ନିଅ ।

ଅଭିମନ୍ୟୁର ତୁମେ ବିଦ୍ୟୁତ ଶିଖା,
ଅନ୍ୟାୟ-ରଣ-ବିଜୟୀର ଜୟଟିକା,
ପ୍ରଣତି ନିଅ ।

ଏକଲବ୍ୟର ଆତ୍ମା ତୁମେ ତ ସାଥି,
ଅଙ୍ଗୁଳି ତୁଲେ ଜୀବନ ଦେଇଚ କାଟି,
ପ୍ରଣତି ନିଅ ।

ସଂଗ୍ରାମ ସିଂ, ପ୍ରତାପି ସିଂହ ବୀର
ଦେଶ ପାଇଁ ପ୍ରାଣ ଦେଇଅଛ ତିଳ ତିଳ;
ପ୍ରଣତି ନିଅ ।

ରଣଜିତ ସିଂ, ଶିବ୍ ଜୀ, ମାଟିର ଭକ୍ତ
ମାଟିର ସକାଶେ ଦେଇଅଛ ଲାଲ ରକ୍ତ,
ପ୍ରଣତି ନିଅ ।

ଦୁର୍ଗାବତୀ ଗୋ, ଅୟି ଗୋ ଲକ୍ଷ୍ମୀ ବାଈ
ଶୌର୍ଯ୍ୟ ତୁମର, ତୁଳନା ତାହାର କାହିଁ ?
ପ୍ରଣତି ନିଅ ।

ଖୋରଧାର ଆହେ ବକ୍ସି ବିଦ୍ୟାଧର,
ଜାଳି ଦେଇଥିଲ ବିଦ୍ରୋହ-ଦାବାନଳ,
ପ୍ରଣତି ନିଅ ।

ସୋମନାଥ ସିଂ, ବିପ୍ଳବୀ ତୁମେ ଚଣ୍ଡ
ମତାଇଥିଲ ତ ଅନଗୁଳ-ଖାତଖଣ୍ଡ,
ପ୍ରଣତି ନିଅ ।

ସ୍ଫୁଲିଙ୍ଗ ତୁମେ ବୀର ସୁରେନ୍ଦ୍ର ସାଏ
ଜଳି ଉଠିଥିଲ ଦୀପ୍ତ ତଡ଼ିତ ପ୍ରାଏ,
ପ୍ରଣତି ନିଅ ।

କୋରାପୁଟ ବଣେ ଲାମା ଦୋରା, ଲଇଖଣ,
ମୃତ୍ୟୁ ବରିଚ ଧରି ମୁକ୍ତିର ପଣ,
ପ୍ରଣତି ନିଅ ।

କ୍ଷତର ଜଟାୟୁ ଲାଲା ଲାଜପତ ରାୟ,
ସର୍କାର ଆଗେ ରଚିଲ ଅନ୍ତରାୟ,
ପ୍ରଣତି ନିଅ ।

ଗୋପବନ୍ଧୁ ହେ ବଢ଼ି ମହାମାରୀର ଦେଶେ
ଲଢ଼ି ଲଢ଼ି ତୁମେ ନିଃଶେଷ ଅବଶେଷେ
ପ୍ରଣତି ନିଅ ।

ଉଦାମ ସିଂ, ଭଗତ ସିଂ ଏ ତୁମେ
ଫାଶୀ ଖୁଣ୍ଟରେ ଅମର ହୋଇଛ ତୁମେ
ପ୍ରଣତି ନିଅ ।

ଗଣପତି-ଛାତି, ବାଜି ରାଉତର ପ୍ରାଣ
ପରଖିଚ ତୁମେ ଗୁଳିର ଗୋଳାର ଟାଣ,
ପ୍ରଣତି ନିଅ ।

ସେନାପତି ତୁମେ ଉଗ୍ର ସୁଭାଷ ବୋଷ,
ପ୍ରାଣେ ମନ୍ତ୍ରିଲ ସଂଗ୍ରାମ ଘନ ଘୋଷ,
ପ୍ରଣତି ନିଅ ।

ଜହ୍ନ-ଲହରରେ ତୁମେ ହେ ଜହରଲାଲ
ଦୀପ୍ତ କରିଚ ମାତୃଭୂମିର ଭାଲ,
ପ୍ରଣତି ନିଅ ।

ଅମର ମନିଷ ଲାଲ ବାହାଦୁର ଶାସ୍ତ୍ରୀ,
କାହିଁ ଗଲ ତୁମେ, ଫେରିଲନି ମହାଯାତ୍ରୀ,
ପ୍ରଣତି ନିଅ ।

ଅୟି ସରୋଜିନୀ, ଅୟି ଗୋ ମାତଙ୍ଗିନୀ
ମୁକ୍ତିର ଲାଗି ମରଣ ପାରିଚ ଜିଣି,
ପ୍ରଣତି ନିଅ ।

ସେବାର ମୂର୍ତ୍ତି, ଆଗୋ କସ୍ତୁର ବାଈ,
ବନ୍ଦୀଶାଳାରୁ ଆଉ ତ ଫେରିଲ ନାହିଁ,
ପ୍ରଣତି ନିଅ ।

ସ୍ୱଦେଶରେ ଦେଇ ମୁକ୍ତିର ଅବଦାନ
ଘାତକ-ଗୁଳିରେ ଗାନ୍ଧୀଜୀ ଦେଲ ପ୍ରାଣ,
ପ୍ରଣତି ନିଅ ।

ଅମର ହୋଇଲ ଅୟି ଇନ୍ଦିରା ଅୟି,
ଗୁଳି ପରେ ଗୁଳି ସାରା ଅଙ୍ଗରେ ବହି,
ପ୍ରଣତି ନିଅ ।

ଗୋଟିଏ ଗୋଟିଏ ଦୀପ୍ତ ଶପଥ ତୁମେ,
ଦୀପ୍ତିର ପଥ କୋଟିଏ ଜୀବନ-ଧୂମେ,
ପ୍ରଣତି ନିଅ ।

ଅମର ସହିଦ, ପ୍ରଣତି ନିଅ
ଆମ ଏ ଜାତିର
ଆମ ଏ ମାଟିର
ଜନ୍ମ ମାଟିର
ବନ୍ଦନୀୟ
ଅମର ସହିଦ, ପ୍ରଣତି ନିଅ ।



# ଅସହଯୋଗ ଆନ୍ଦୋଳନ ଓ ସମ୍ବଲପୁର

ଡକ୍ଟର ଶ୍ରଦ୍ଧାକର ସୁପକାର

୧୮୫୭ ରୁ ୧୮୬୪ ମସିହା ପର୍ଯ୍ୟନ୍ତ ସମ୍ବଲପୁରରେ ବ୍ରିଟିଶ୍ ଶାସନ ବିରୁଦ୍ଧରେ ବିପ୍ଳବର ବହ୍ନି ଜଳାଇ ରଖିଥିବା ପାଇଁ ବୀର ସୁରେନ୍ଦ୍ର ସାଏ ଚିରସ୍ମରଣୀୟ ହୋଇ ରହିବେ । ୧୮୫୮ ମସିହା ସୁଦ୍ଧା ଭାରତବର୍ଷର ଅନ୍ୟ ସବୁ ସ୍ଥାନରେ ବିପ୍ଳବର ବହ୍ନି ନିର୍ବାପିତ ହୋଇଥିଲା, ମାତ୍ର ସମ୍ବଲପୁରରେ ସୁରେନ୍ଦ୍ର ସାଏ ଓ ତାଙ୍କର ସହକର୍ମୀଗଣ ବ୍ରିଟିଶ୍ ଶାସନ ବିରୁଦ୍ଧରେ ଦୀର୍ଘ ସାତ ବର୍ଷକାଳ ପ୍ରକୃତ (Guerrilla) ଯୁଦ୍ଧ ଚଳାଇ ରଖିଥିଲେ ।

ଆଧୁନିକ ଯୁଗରେ ମହାତ୍ମା ଗାନ୍ଧୀଙ୍କ ନେତୃତ୍ୱରେ ଭାରତବର୍ଷରେ ଯେତେବେଳେ ଅସହଯୋଗ ଆନ୍ଦୋଳନର ସୂତ୍ରପାତ ହେଲା । ୧୯୨୧ ମସିହାରେ, ସେତେବେଳେ ସେଥିରେ ସମ୍ବଲପୁର ଜିଲ୍ଲା ଏକ ମୁଖ୍ୟ ଭୂମିକା ଗ୍ରହଣ କରିଥିଲା । ସମ୍ବଲପୁରର ଭଗୀରଥି ମିଶ୍ର ଏବଂ ତାଙ୍କର ସାଥୀମାନେ କଲିକତା ବିଶ୍ୱବିଦ୍ୟାଳୟରେ ଅଧ୍ୟାପନା କରୁଥିବା ପଣ୍ଡିତ ନୀଳକଣ୍ଠ ଦାସଙ୍କୁ ଅନୁରୋଧ କଲେ ଯେ ସେ ସମ୍ବଲପୁର ଆସି ଏକ ଜାତୀୟ ବିଦ୍ୟାଳୟର ପ୍ରଧାନ ଶିକ୍ଷକ ହୁଅନ୍ତୁ । ପଣ୍ଡିତ ନୀଳକଣ୍ଠ ବିଶ୍ୱବିଦ୍ୟାଳୟ ଅଧ୍ୟାପକ ଚାକିରି ଛାଡ଼ି ଅସହଯୋଗ ଆନ୍ଦୋଳନରେ ଯୋଗ ଦେଲେ । ଛାତ୍ରମାନଙ୍କୁ ସରକାରୀ ସ୍କୁଲ କଲେଜ ବର୍ଜନ କରିବାକୁ ଓ ଓକିଲମାନଙ୍କୁ କୋର୍ଟ କଚେରୀ ବର୍ଜନ କରିବାକୁ ମହାତ୍ମା ଗାନ୍ଧୀ ଡାକରା ଦେଇଥାନ୍ତି । ପଣ୍ଡିତ ନୀଳକଣ୍ଠ ସମ୍ବଲପୁର ଆସିଲା ପରେ ଚନ୍ଦ୍ରଶେଖର ବେହେରାଙ୍କ ନେତୃତ୍ୱରେ ଜାତୀୟ ବିଦ୍ୟାଳୟ ସମ୍ବଲପୁର ପ୍ରେଷ୍ଟର ଘରେ ଆରମ୍ଭ ହେଲା, ଯେଉଁଠାରେ ଲେଡ଼ି ଲୁଇସ୍ ଉଚ୍ଚ ବାଳିକା ବିଦ୍ୟାଳୟ ଅଛି, ସେତେବେଳେ ସେଠାରେ ସରକାରୀ ଜିଲ୍ଲା ସ୍କୁଲ ଥିଲା । ସରକାରୀ ସ୍କୁଲରୁ ବହୁ ଛାତ୍ର ଚାଲି ଆସି ଜାତୀୟ ବିଦ୍ୟାଳୟରେ ଯୋଗ ଦେଲେ । ସେତେବେଳେ ଜାନୁଆରୀ ପ୍ରଥମ ସପ୍ତାହରୁ ସମ୍ବଲପୁର ଜାତୀୟ ବିଦ୍ୟାଳୟରେ ପଢ଼ାପଢ଼ି ଆରମ୍ଭ ହେଲା ।

ଜାତୀୟ ବିଦ୍ୟାଳୟରେ ଧନ୍ଦାମୂଳକ ଶିକ୍ଷା ମଧ୍ୟ ଦିଆଯାଉଥିଲା । ଅନ୍ୟାନ୍ୟ ପାଠ୍ୟକ୍ରମ ସହିତ ସୂତାକଟା, ଲୁଗାବୁଣା ଓ ବଢ଼େଇ କାମ ମଧ୍ୟ ପାଠ୍ୟକ୍ରମର ଅନ୍ତର୍ଭୁକ୍ତ ଥିଲା । ଚନ୍ଦ୍ରଶେଖର ବେହେରାଙ୍କ ଜାମାତା ଗଣେଶ ପ୍ରସାଦ ପାଢ଼ୀ ପିଲାମାନଙ୍କୁ ଲୁଗାବୁଣା କାମ ଶିଖାଉଥିଲେ ।

୧୯୨୧ ପୂର୍ବରୁ ମଧ୍ୟ ଜାଲିଆନାବାଲା ହତ୍ୟାକାଣ୍ଡ ପରେ ମହାତ୍ମା ଗାନ୍ଧୀଙ୍କ ଡାକରାରେ ଯେଉଁ ହରତାଳ, ସଭା ସମିତି ଓ ଏପ୍ରିଲ୍ ମାସରେ ଜାତୀୟ ସପ୍ତାହ ପାଳନ କରାଯାଉଥିଲା, ସେଥିରେ ସମ୍ବଲପୁରର ଜନଜାଗରଣ ଓଡ଼ିଶା ବାହାରେ କଲିକତା ଆଦି ଅଞ୍ଚଳରେ ମଧ୍ୟ ପ୍ରଶଂସିତ ହୋଇଥିଲା ।

ଜାତୀୟ ବିଦ୍ୟାଳୟରେ ପିଲାମାନେ ସୂତାକାଟି ଖଦୀ ଲୁଗା ବୁଣୁଥିଲେ । ସେହି ସବୁ ଲୁଗା ରବିବାର ଓ ଛୁଟି ଦିନମାନଙ୍କରେ ସହରର ସଡ଼କମାନଙ୍କରେ ଛାତ୍ରମାନେ ବୁଲି ବୁଲି ବିକ୍ରି କରୁଥିଲେ ।

ଅସହଯୋଗ ଆନ୍ଦୋଳନ ଆରମ୍ଭ ହେବା ପୂର୍ବରୁ ଏ ଦେଶକୁ ବିଲାତରୁ ବହୁତ ଲୁଗା—ଏପରିକି ଧୋତି ଓ ଶାଢୀ ମଧ୍ୟ ଆସୁଥିଲା । ଅସହଯୋଗ ଆନ୍ଦୋଳନର ଏକ କାର୍ଯ୍ୟକ୍ରମ ରୂପେ ବିଦେଶୀ ଦ୍ରବ୍ୟ ବର୍ଜନ ଅନ୍ୟତମ ଥିଲା । ଏହି ସମୟରେ ଅସହଯୋଗ ଆନ୍ଦୋଳନର ସଭା ସହିତ ବିଲାତି ଲୁଗା ଏକତ୍ର କରି ସଭା ପାଖରେ ପୋଡ଼ାଇବା ଏହି କାର୍ଯ୍ୟକ୍ରମର ଅନ୍ତର୍ଭୁକ୍ତ ଥିଲା । ବାଲିବନ୍ଧାଠାରେ ଏପରି ଲୁଗାର ବିରାଟ ସ୍ତୂପକୁ ଭସ୍ମସାତ୍ କରାଯିବାର ଦୃଶ୍ୟ ଆଜି ମନେ ପଡ଼େ ।

ଓକିଲମାନଙ୍କର ଅଦାଲତ ବର୍ଜନ ମଧ୍ୟ ସମ୍ବଲପୁରରେ ଅନେକାଂଶରେ ସଫଳ ହୋଇଥିଲା । ଏଥିରେ ନେତୃତ୍ୱ ନେଇଥିଲେ ଦେଶପ୍ରେମୀ ଚନ୍ଦ୍ରଶେଖର ବେହେରା । ବୋଧରାମ ଦୁବେ, ଅଚ୍ୟୁତାନନ୍ଦ ପୁରୋହିତ, ଭଗୀରଥ ମିଶ୍ର ପ୍ରମୁଖ ଯୁବକ ଓକିଲମାନେ ଓକିଲାତି ଛାଡ଼ି ଅସହଯୋଗ ବାର୍ତ୍ତା ପ୍ରଚାର କରୁଥିଲେ । ଏମାନଙ୍କ ମଧ୍ୟରୁ ଭଗୀରଥ ମିଶ୍ର ଚନ୍ଦ୍ରଶେଖର ବେହେରାଙ୍କ ଜାମାତା । ସେ 'ସେବା' ନାମକ ଏକ ସାପ୍ତାହିକ ପତ୍ରିକା ଅସହଯୋଗ ଆନ୍ଦୋଳନର ପ୍ରଚାର ପାଇଁ ସମ୍ବଲପୁରରୁ ପ୍ରକାଶ କଲେ । ଅଚ୍ୟୁତାନନ୍ଦ ପୁରୋହିତ 'ଗାନ୍ଧୀ ଭାଗବତ' ନାମକ ଏକ ପୁସ୍ତକ ନବାକ୍ଷରୀ ଛନ୍ଦରେ ପରେ ପ୍ରକାଶ କଲେ । ବୋଧରାମ ଦୁବେ ୧୯୩୭ ମସିହାରେ ବିଶ୍ୱନାଥ ଦାସ ମନ୍ତ୍ରୀମଣ୍ଡଳରେ ଶିକ୍ଷାମନ୍ତ୍ରୀ ହେଲେ ।

ଅସହଯୋଗ ଆନ୍ଦୋଳନରେ ସମ୍ବଲପୁର ଜିଲ୍ଲାର ଅନ୍ୟାନ୍ୟ ଅଞ୍ଚଳରେ ମଧ୍ୟ ଉଲ୍ଲେଖଯୋଗ୍ୟ ଜନଜାଗରଣ ଦେଖାଗଲା । ତାଳପଟିଆର

ଚିନ୍ତାମଣି ପୂଜାରୀ, ଝାରସୁଗୁଡାର ମହାବୀର ସିଂହ, ବରପାଲିର ଭାଗୀରଥି ପଟ୍ଟନାୟକ, ମାନପୁରର ଘନଶ୍ୟାମ ପାଣିଗ୍ରାହୀ ଓ ଗଣନାଥ ପାଣିଗ୍ରାହୀ, ପାଣିମୋରାର ଯଶୋବନ୍ତ ଭୋଇ ଆଦି ବିଶେଷ ଉତ୍ସାହପ୍ରଦ ନେତୃତ୍ୱ ନେଇଥିଲେ । ସମ୍ବଲପୁରରେ ଯୁବକମାନଙ୍କ ମଧ୍ୟରେ ଲକ୍ଷ୍ମୀ ନାରାୟଣ ମିଶ୍ର, ନୃସିଂହ ଗୁରୁ, ବେନିମାଧବ ସୁପକାରଙ୍କ ନାମ ମଧ୍ୟ ଉଲ୍ଲେଖ ଯୋଗ୍ୟ ।

ସମ୍ବଲପୁରରେ ଖଦୀ ଆନ୍ଦୋଳନ ସଫଳ ହେଲା । ଏହାର କାରଣ ୧୯୨୦ ପୂର୍ବରୁ ମଧ୍ୟ ସମ୍ବଲପୁରରେ ହସ୍ତତନ୍ତ ବୟନ ଶିଳ୍ପର ନାମ ଥିଲା । ସମ୍ବଲପୁରୀ ଶାଢ଼ୀ ଓ ସମ୍ବଲପୁରୀ ଗାମୁଛା ବିଶେଷ ଭାବେ ଆଦୃତ ହେଉଥିଲା । ସମ୍ବଲପୁରରେ ସ୍ତ୍ରୀଲୋକମାନେ କେବଳ ସମ୍ବଲପୁରୀ ଶାଢ଼ୀ ଛଡା ଅନ୍ୟ କୌଣସି ବସ୍ତ୍ର ବ୍ୟବହାର କରୁ ନ ଥିଲେ । ମାତ୍ର ହସ୍ତତନ୍ତ ବସ୍ତ୍ର ବ୍ୟବସାୟ କେବଳ ଭୁଲିଆ, କୋଷ୍ଟା ଓ ଗଣ୍ଡା ଜାତିର ଲୋକମାନଙ୍କର ଜାତିଗତ ବୃତ୍ତି ଥିଲା । ଏହି ଶିଳ୍ପକୁ ସଂଗଠିତ କରିବା ବିଶେଷ ଦରକାର ଥିଲା ।

ସ୍ୱର୍ଗତଃ ପଦ୍ମଶ୍ରୀ କୃତାର୍ଥ ଆଚାର୍ଯ୍ୟ ସେହି ଦାୟିତ୍ୱ ଗ୍ରହଣ କଲେ । ପୂର୍ବେ ସମ୍ବଲପୁରୀ ଶାଢ଼ୀର ରଙ୍ଗ ଅନେକ ଥର କାଚିଲା ପରେ ଫିକା ପଡ଼ି ଯାଉଥିଲା । କିନ୍ତୁ କୃତାର୍ଥ ଆଚାର୍ଯ୍ୟ ପ୍ରଥମେ ସୂତା ଚିରସ୍ଥାୟୀ ରଙ୍ଗ କରିବାର କୌଶଳ ପ୍ରଚଳନ କଲେ । ସେ ବରଗଡ଼ଠାରେ ସମ୍ବଲପୁରୀ ବସ୍ତ୍ରାଳୟ ନାମକ ଏକ ସମବାୟ ଅନୁଷ୍ଠାନ ସ୍ଥାପନ କଲେ । ଏହା ଫଳରେ ବୁଣାକାରମାନଙ୍କୁ ଆଉ ଘର ଘର ବୁଲି ଶାଢ଼ୀ ଗାମୁଛା ବିକିବା ଦରକାର ପଡ଼ିଲା ନାହିଁ । ସେମାନେ ଅଧିକ ସମୟ ଲୁଗାବୁଣାରେ ଅତିବାହିତ କଲେ ।

୧୯୨୨ ମସିହାରେ ଚୌରିଚୌରା କାଣ୍ଡ ପରେ ମହାତ୍ମା ଗାନ୍ଧୀ ଅସହଯୋଗ ଆନ୍ଦୋଳନ ପ୍ରତ୍ୟାହାର କଲେ । ଏହା ଫଳରେ ବହୁ ସ୍ଥାନରେ ନୈରାଶ୍ୟ ଦେଖାଗଲା । ସମ୍ବଲପୁରର ଜାତୀୟ ବିଦ୍ୟାଳୟ ଭାଙ୍ଗିଗଲା । ଛାତ୍ରମାନେ ପୁଣି ଜିଲ୍ଲା ସ୍କୁଲରେ ଯୋଗ ଦେଲେ । ମୋତିଲାଲ ନେହେରୁ, ଚିତ୍ତରଞ୍ଜନ ଦାସ ଆଦିଙ୍କ ନେତୃତ୍ୱରେ ଯେଉଁ ସ୍ୱରାଜ ପାର୍ଟି ଗଢ଼ାଯାଇ ବିଧାନ ପରିଷଦ ପାଇଁ ନିର୍ବାଚନ କରିବାର କାର୍ଯ୍ୟକ୍ରମ ହେଲା, ସେଥିରେ ସମ୍ବଲପୁର କୌଣସି ଭୂମିକା ଗ୍ରହଣ କଲା ନାହିଁ । ଚନ୍ଦ୍ରଶେଖର ବେହେରା ବହୁ ବର୍ଷ ଧରି ସମ୍ବଲପୁର ମ୍ୟୁନିସିପାଲିଟିର ଚେୟାରମ୍ୟାନ କାର୍ଯ୍ୟ କଲେ । ମାତ୍ର ବିହାର ଓଡ଼ିଶାର କାଉନ୍‌ସିଲ୍‌କୁ ନିର୍ବାଚିତ ହେଲେ ରାମନାରାୟଣ ମିଶ୍ର । ସେ ଯୁଗରେ କେବଳ ବଡ଼ ଧନୀ ଓ ପାଠୁଆମାନଙ୍କର ଭୋଟ ଦାନର ଅଧିକାର ଥିଲା । ବିହାର ଓଡ଼ିଶା କାଉନ୍‌ସିଲ୍‌ରେ କଂଗ୍ରେସୀ ଲୋକଙ୍କର ସଂଖ୍ୟା ଅଳ୍ପ ଥିଲା । ନିର୍ବାଚିତ ସଭ୍ୟ ସଂଖ୍ୟା ମଧ୍ୟ ଉଲ୍ଲେଖ ଯୋଗ୍ୟ ନଥିଲା ।

୧୯୨୮ ମସିହାରେ ମହାତ୍ମା ଗାନ୍ଧୀ ସମ୍ଭବ ସମ୍ବଲପୁରକୁ ପ୍ରଥମ ଥର ଆସିଲେ । ସେ ଚନ୍ଦ୍ରଶେଖର ବେହେରାଙ୍କ ଘରେ ରହିଥିଲେ । ତାଙ୍କର ଆଗମନ ସମୟରେ ବିଶେଷ ଜନସମାଗମ ହୋଇଥିଲା । ମହାନଦୀ ବାଲିରେ ଏକ ବିରାଟ ସଭାରେ ସେ ଭାଷଣ ଦେଇଥିଲେ । ସମ୍ବଲପୁରରୁ ଫେରି ସେ କଲିକତା କଂଗ୍ରେସରେ ଯୋଗ ଦେଲେ ।

ସମ୍ବଲପୁରରେ ଅସହଯୋଗ ଆନ୍ଦୋଳନ ସମୟରେ ପଣ୍ଡିତ ଗୋପବ[ନ୍ଧୁ] ଦାସ ଅନେକ ଥର ସମ୍ବଲପୁର ଆସିଥିଲେ । ବାଲିବନ୍ଧା ଘାଟଠାରେ [...] ଅନେକ ସଭାରେ ବକ୍ତୃତା ଦେଇଛନ୍ତି । ତାଙ୍କର ବକ୍ତୃତାର ସାରମ[ର୍ମ] ଜାତୀୟ ବିଦ୍ୟାଳୟର ଛାତ୍ରମାନେ ଟିପି ରଖୁଥିଲେ । ପଣ୍ଡି[ତ] ଗୋପବନ୍ଧୁଙ୍କର ବକ୍ତୃତା ଶୈଳୀ ଥିଲା ଅନନ୍ୟ ସାଧାରଣ । [...] ଶ୍ରୋତାମାନଙ୍କୁ ଉଲ୍ଲାସମୟ ଭାଷଣରେ କନ୍ଦାଇ ପାରୁଥିଲେ, ହସା[ଇ] ପାରୁଥିଲେ ।

ଅସହଯୋଗ ଆନ୍ଦୋଳନ ଫଳରେ ବହୁ ବିଶିଷ୍ଟ ବ୍ୟକ୍ତି କାରାବର[ଣ] କଲେ । ପୂର୍ବରୁ ବିଶେଷତଃ ଅପରାଧୀମାନେ ଜେଲ୍ ଯାଉଥିବା[ରୁ] ଜେଲ୍‌ଦଣ୍ଡ ଜୀବନର ଏକ କଳଙ୍କ ବୋଲି ବିବେଚିତ ହେଉଥିଲା । ସମ୍ଭ୍ରା[ନ୍ତ] କୁଳର ଲୋକେ ଜେଲରୁ ମୁକ୍ତି ପାଇଲା ପରେ ପ୍ରାୟଶ୍ଚିତ କରୁଥିଲେ [...] କାରଣ ଜେଲ୍‌ରେ ଯେ କୌଣସି ଲୋକର ରୋଷେଇ ଖାଦ୍ୟ ଭୋଜ[ନ] କରିବାକୁ ପଡୁଥିଲା । କିନ୍ତୁ ଅସହଯୋଗ ଆନ୍ଦୋଳନରେ ବହୁ ସମ୍ଭ୍ରା[ନ୍ତ] ବ୍ୟକ୍ତି ସ୍ୱେଚ୍ଛାରେ ରାଜନୈତିକ କାରଣରୁ ଅର୍ଥାତ୍ ଦେଶକୁ ସ୍ୱାଧୀନ କରି[ବା] ପାଇଁ ୧୪୪ ଧାରା ଭଙ୍ଗ ପାଇଁ ସାଧାରଣ ବିଷୟରେ ଜେଲ୍ ଭୋ[ଗ] କରିବାରୁ ଜେଲ୍‌ଯାତ୍ରା ତୀର୍ଥ ଯାତ୍ରାରେ ପରିଣତ ହେଲା ।

ଜେଲ୍ ସହିତ ଜୋରିମାନା ଦଣ୍ଡ ମଧ୍ୟ ହେଉଥିଲା । ଅସହଯୋଗୀମାନେ ସ୍ୱେଚ୍ଛାରେ ଜୋରିମାନା ଦେଉ ନଥିବା[ରୁ] ସେମାନଙ୍କର ଜିନିଷ ପତ୍ର କୋରଖ ହୋଇ ଅଳ୍ପ ମୂଲ୍ୟରେ ନିଲା[ମ] ହେଉଥିଲା ।

ଅସହଯୋଗ ଆନ୍ଦୋଳନକୁ ଆଧୁନିକ ଯୁଗର ସ୍ୱାଧୀନତା ସମର[ର] ପ୍ରଭାତ ବୋଲି କୁହାଯାଇପାରେ । ସେ ସମୟରେ ଯେଉଁମାନେ ସ୍ୱାଧୀନତା ସଂଗ୍ରାମରେ ଯୋଗ ଦେବା ପାଇଁ ଆଗେଇ ଆସିଥିଲେ ସେମାନଙ୍କ ମଧ୍ୟରୁ ଅଧିକାଂଶ ପରବର୍ତ୍ତୀ ଲବଣ ସତ୍ୟାଗ୍ରହ, ବ୍ୟକ୍ତିଗ[ତ] ସତ୍ୟାଗ୍ରହ, ନିଶା ନିବାରଣ ପିକେଟିଂ ଭାରତ ଛାଡ ଆନ୍ଦୋଳନରେ ଯୋ[ଗ] ଦେଇ ଜୀବନରେ ବହୁତ କଷ୍ଟ ଭୋଗିଛନ୍ତି । ଅନେକ ଆର୍ଥିକ ସଙ୍କଟ[ର] ସମ୍ମୁଖୀନ ହୋଇଛନ୍ତି । ବ୍ରିଟିଶ୍ ଶାସନ ଓ ଦରିଦ୍ରତା ସହିତ ସଂଘ[ର୍ଷ] କରିଛନ୍ତି । ସେମାନଙ୍କ ମଧ୍ୟରୁ ପ୍ରାୟ ସମସ୍ତେ ଆଜି ଆଉ ଇହଧାମରେ ନାହାନ୍ତି । ସେମାନଙ୍କର ତ୍ୟାଗ, ଆଦର୍ଶ ଓ ସାଧନା ଫଳରେ ଆମେ ଆ[ଜି] ସ୍ୱାଧୀନତାର ଫଳ ଭୋଗ କରୁଥାଇଁ । ସେଥିପାଇଁ ସେମାନଙ୍କୁ ଆଜି ସ୍ମରଣ କରି ସେମାନଙ୍କ ପ୍ରତି କୃତଜ୍ଞତା ଜ୍ଞାପନ କରିବା ଆମର ପବିତ୍ର କର୍ତ୍ତବ୍ୟ ।

ବିଧାୟକ ଓଡ଼ିଶା ବିଧାନ ସଭା
ଭୁବନେଶ୍ୱର



ଅଷ୍ଟ୍ରେଲିଆର ପଦ୍ଧତି ଇଟା ତିଆରି ମେସିନ୍ ଉଦ୍‌ଘାଟନ ଉତ୍ସବରେ ମୁଖ୍ୟମନ୍ତ୍ରୀ

# ଫାଶୀ ଖୁଣ୍ଟୁ ଫାଶୀ

ଶ୍ରୀ ହରମୋହନ ପଟ୍ଟନାୟକ
ଢେଙ୍କାନାଳ

ବାଲିବସ୍ତାକୁ ଫାଶୀ ଦିଆଯାଏ । ଜେଲ୍ କୋର୍ଟର ନିୟମ । ଫାଶୀ ମୀର ଯେତିକି ଓଜନ, ତାହାର ଦେଢ ଓଜନ ବାଲିବସ୍ତାକୁ ଫାଶୀ ଯାଏ, ଜାଣିବାକୁ, ଫାଶୀ ଦୌଡ଼ି ଠିକ୍ ଅଛି କି ନାହିଁ ବୋଲି ।

ସେ ଯୁଗରେ ଓଡ଼ିଶାରେ ମିଲିଟାରୀ ଦେଖିବାକୁ ମିଳନ୍ତି ନାହିଁ । ନଟାରୁ ମାଡ୍ରାଜ କେତେବେଳେ ମିଲିଟାରୀ ଟ୍ରେନ୍ ଯାଏ, କେହି ଜାଣି .ନ୍ତି ନାହିଁ । କଟକରେ ଆମ କଲେଜ ପଢା ଭିତରେ ମିଲିଟାରୀ ଟିଏ ଖିବାକୁ ମାଉ 'ନଥିଲୁ । କିନ୍ତୁ ଆସିଲେ ଗୋରା ଫୌଜ– ଓ.ଏସ୍.ବି.(Kings Own Scottish Borderers) ୩୮ ସେପ୍ଟେମ୍ବର ୧୧ ତାରିଖ ଓ ୧୨ ତାରିଖରେ ଢେଙ୍କାନାଳ ସରକାର ଓ ଢେଙ୍କାନାଳ ପ୍ରଜାମଣ୍ଡଳ ଭିତରେ ଲଢେଇରେ ଙ୍କର ବିଜୟ ଏବଂ ରାତି ଅଧରେ ପ୍ରଜାମଣ୍ଡଳ ନେତା ମାନଙ୍କର ବିନା ରେ ମୁକ୍ତି । ରାଜ ସରକାର ଆଉ ପ୍ରଜାମଣ୍ଡଳ ଭିତରେ ଚାଲିଲା ମିଶା କଥାବାର୍ତ୍ତା । ଭଏ ନ ସବୁଣ୍ଣୁ ଆସିଗଲେ ଗୋରା ଫୌଜ ।

ଏହି ମାନଙ୍କ ନିର୍ଦ୍ଦେଶରେ ଦେଶୀ ପୁଲିସିଙ୍କ ଦ୍ୱାରା ଚାଲିଲା ଞ୍ଚଳରେ ଅଶ୍ରାବ୍ୟ ଅମାନୁଷିକ ଅତ୍ୟାଚାର । ଜୀବନକୁ ପାଣି ଇ, ସତ୍ୟାଗ୍ରହ କରି, ଲୁଚିଛପି କାମ କରୁଥାଆନ୍ତି ପ୍ରଜାମଣ୍ଡଳ ମାନେ । ଭୁବନ ଲୋକେ ସଂଗ୍ରାମିତି କରି ପ୍ରଜାମଣ୍ଡଳ ଦାଳନକୁ ତୁହିଭୁତ କରୁଥାଆନ୍ତି । ଲୋକଙ୍କୁ ଦବାଇବାକୁ ସେଠି ଥିଲେ ପୁଲିସ୍ ମାଜିଷ୍ଟ୍ରେଟ । ଲୋକଙ୍କ ଉପରେ ଗୁଳି ଚାଲିଲା । ତେକ ମଲେ ଏବଂ ଅନେକ ଖଣ୍ଡିଆ ଖାବରା ହେଲେ । 'ମରିବୁ ପଛେ ବୁ ବାହି ଯା'ନା ଏହା ଭୁଲି । ଆରେ ମାର ତୁ ଯେତେ ଗୁଳି ।ଶଙ୍କୀ ଅତରାୟଙ୍କର ଏହି ଗୀତ ଗାଁ ଗାଁରେ ବୋଲା ହେଉଥାଏ । ଶୁ ଡରିବା ପରିବର୍ତ୍ତେ ମାଡ଼ି ଆସିଲେ ଜନ ସମୁଦ୍ର । ଭଏ ହେଲା ୩୮ ଅକ୍ଟୋବର ୧୧ ତାରିଖ ରାତି । ପୁଲିସ ମାଜିଷ୍ଟ୍ରେଟ ଆସି ଆ ହୋଇ ଭୁବନରୁ ପଳାଇ ଆସିଲେ ନିଳକଣ୍ଠପୁର ଘାଟ । ବ୍ରାହ୍ମଣୀ ଆଏ । ପାର ହୋଇ ପଳାଇବେ ।

ସେତେବେଳକୁ ଚତୁର୍ଦ୍ଦିଗକୁ ଖବର ବୁଲି ଗଲାଣି । ନୀଳକଣ୍ଠପୁର ଗାଁ ଭୂଇରେ ଘାଟ । ପ୍ରଜାମଣ୍ଡଳ କର୍ମୀଙ୍କ ପରାମର୍ଶ କ୍ରମେ ଘାଟ ଜଗି ଲେ ଲୋକେ । ମାଜିଷ୍ଟ୍ରେଟ ଆଉ ସଶସ୍ତ୍ର ପୁଲିସ୍ କାହାରି ମନା ନ ମାନି ଉଡଙ୍ଗ ଡଙ୍ଗାରେ ବସିଲେ । କିନ୍ତୁ ୧୨ ବରଷର ବାଜି ରାଉତ ଆଉ ର ସାଥୀମାନେ ଦଉଡ଼ି ଛାଡ଼ିଲେ ନାହିଁ । ହେଲା ଗୁଳି ଫାୟାର । ତଳି ଲେ ବାଜି । ମରି ଶୋଇଲେ ରଘୁ ଗୁରୁବାରୀ ଆଦି । ଖଣ୍ଡିଆ ଖାବରା ହେଲେ ବହୁତ । ବ୍ରାହ୍ମଣୀ ନଦୀ ପାର ହୋଇ ପଳାଇଲେ ଢେଙ୍କାନାଳ ଟାଉନକୁ ଗୋରାଫୌଜଙ୍କ ପାଖେ ଆଶ୍ରୟ ନେବାକୁ ଦେଶୀ ପୁଲିଶ ଓ ମାଜିଷ୍ଟ୍ରେଟ ।

ମରିଲେ ପଛେ ଡରିଲେ ନାହିଁ । ଭୁବନରୁ ଶୋଭାଯାତ୍ରା କରି .ଶହିଦ୍‌ମାନଙ୍କୁ ଲୋକେ ଆଣିଲେ ନୀଳକଣ୍ଠପୁର ଘାଟକୁ । ଡଙ୍ଗା ସଜ୍ଜିତ ହେଲା । ବାଜି ରାଉତ ପ୍ରମୁଖ ନୀଳକଣ୍ଠପୁର ଓ ଭୁବନର ସମସ୍ତ ଶହିଦ୍‌ଙ୍କୁ ଲୋକେ ନେଲେ କେଳାପୁର । ରେଳଗାଡ଼ିରେ କଟକ ଷ୍ଟେସନରେ ଶହିଦ୍‌ମାନଙ୍କ ଅବତାରଣ । ଷ୍ଟେସନ ଲୋକାରଣ୍ୟ । ଅନନ୍ତ ପଟ୍ଟନାୟକ ଆଉ ଶଙ୍କୀ ରାଉତରାୟଙ୍କ ଗୀତ ସାଙ୍ଗକୁ ହମିନଙ୍କ ଗୀତରେ ଗଗନ ପବନ ଉଛୁଳୁ ଥାଏ । ଇତିହାସରେ କଟକ ସହର ଏପରି ଶହୀଦ୍ ପଟୁଆର ଓ ଶୋଭାଯାତ୍ରା କେବେ ଦେଖି ନଥିଲେ କି ଏବେ ସୁଦ୍ଧା ଦେଖି ନାହିଁ । କଂଗ୍ରେସ, କମ୍ୟୁନିଷ୍ଟ, ସୋସିଆଲିଷ୍ଟ ପ୍ରଭୃତି ସବୁ ରାଜନୈତିକ ଦଳରୁ ନେତା କର୍ମୀଙ୍କ ସହିତ କଲେଜ ଓ ସ୍କୁଲ ଛାତ୍ର, ଶିକ୍ଷକ, ଜନସାଧାରଣ ଚାଲି ଥାଆନ୍ତି ଏବଂ ରାସ୍ତାର ଦୁଇ ପଟରୁ ହେଉଥାଏ ପୁଷ୍ପ ବୃଷ୍ଟି ।

ଜେଲ୍ ପାଚେରୀ ଭେଦି ଏହି ଶହୀଦ୍ ବାର୍ତ୍ତା ବନ୍ଦୀ ପ୍ରଜାମଣ୍ଡଳ କର୍ମୀଙ୍କୁ ଇତଃସ୍ତତ କରି ଦେଲା । ଜେଲ୍‌ର ନାରକୀୟ ଯନ୍ତ୍ରଣାଠାରୁ ଭାଇମାନଙ୍କ ଗୁଳିରେ•ମରିବା ଦୁଃଖ ସହସ୍ରଗୁଣରେ ଅଧିକା ହେଲା । ପ୍ରଜାମଣ୍ଡଳ ସଭାପତି ଫାଶୀ ଦୌଡ଼ି ପରୀକ୍ଷାକୁ ହସୁଥିଲେ । ଗୋରାଫୌଜ–ବ୍ରିଟିଶ ସାମ୍ରାଜ୍ୟବାଦର ସର୍ବୋତ୍କୃଷ୍ଟ କେ.ଓ.ଏସ୍.ବି (K.O.S.B) ତାଙ୍କୁ ଫାଶୀ ଦେବେ, ସେଥିପାଇଁ ସେ ପ୍ରସ୍ତୁତ ଥିଲେ । କିନ୍ତୁ ତାଙ୍କ ଭାଇମାନଙ୍କ ଗୁଳିରେ ମରିବା ଖବର ତାଙ୍କୁ ଅଚେତ 'କରି ଦେଲା । ସଙ୍ଗେ ସଙ୍ଗେ ଜେଲ୍ ଡାକ୍ତରମାନଙ୍କୁ ନିଆ ଗଲା, ଚିକିତ୍ସା ଚାଲିଲା । ସେଇ ଅକ୍ଟୋବର ୧୧ ରାତିରେ ପ୍ରଥମ ଗୁଳି ଫାୟାର– ଭୁବନ ଆଉ ନୀଳକଣ୍ଠପୁରରେ । ଠିକ୍ ଏକ ମାସ ପୂର୍ବେ ସେପ୍ଟେମ୍ବର ୧୧ ରାତିରେ ସଭାପତି ପ୍ରମୁଖ ଜେଲ୍‌ରେ ଭର୍ତ୍ତି ହୋଇଥିଲେ । ପରଦିନ ରାତି ଅଧରେ ଢେଙ୍କାନାଳ ରାଜ ସରକାର ହାରି ବିନା ସର୍ତ୍ତରେ ସେମାନଙ୍କୁ ଜେଲରୁ ବିଦାୟ ଦେଇଥିଲେ ।

ସେଥି ସହିତ ନିଷ୍ପତ୍ତି ହେଲା–ବ୍ରିଟିଶ ସାମ୍ରାଜ୍ୟବାଦ ପରାଜିତ– କ୍ଷମତାଚ୍ୟୁତ ରାଜ ସରକାରଙ୍କୁ ସାମ୍ନାରେ ରଖି ପ୍ରଜାମଣ୍ଡଳ ବିରୁଦ୍ଧରେ ବିଭିନ୍ନ ପ୍ରକାର ଲଢେଇ । ଦେଶ ସ୍ୱାଧୀନ ହେଲା ପର୍ଯ୍ୟନ୍ତ ଏହା ଚାଲିଲା । ୧୯୪୨ ରେ ଭାରତ ଛାଡ ଆନ୍ଦୋଳନ ଢେଙ୍କାନାଳରେ ଯେପରି ତୀବ୍ର ରୂପ ନେଇଥିଲା ସେହିପରି ମଧ୍ୟ ଗଡଜାତ ମିଶ୍ରଣର ନେତୃତ୍ୱ ଦେଲା । ଆପୋଷହୀନ ସାମ୍ରାଜ୍ୟବାଦ– ବିରୋଧରେ ସ୍ୱାଧୀନତା ଆନ୍ଦୋଳନ ହେଉଛି ଢେଙ୍କାନାଳ ପ୍ରଜାମଣ୍ଡଳର ଭୂମିକା । ○

# ଲୁଣର ସେନା ସାଜିଲି

ଶ୍ରୀ ବୈକୁଣ୍ଠ ନାଥ ମହାନ୍ତି

ପୁରୀରୁ ବାଲେଶ୍ୱର ଜିଲ୍ଲାର ଇଞ୍ଚୁଡ଼ି ଅଭିମୁଖେ ଚାଲିଥିବା ଲବଣ ସତ୍ୟାଗ୍ରହୀ ଦଳ ଯେତେବେଳେ ଦୁଇଟି କୁଆଖିଆ ଓ କିମିରିଆ ନଈ ପାର ହୋଇ ତାଳଦା ରିସୋଲ ତରା ସାହି ବାଟେ ମାଛ ଗାଁ ହାଟରେ ପାଦଦେଲେ ଲୋକେ ଚାଟିକା ହୋଇ ସେମାନଙ୍କୁ ଚାହିଁ ରହିଲେ, ଶାନ୍ତି ସୌମ୍ୟ ଚେହେରା । ପିନ୍ଧିଥାନ୍ତି ଖଦଡ ଧୋତି, ଫତେଇ ଚାଦର ଓ ମୁଣ୍ଡରେ ଧଳା ଗାନ୍ଧୀ ଟୋପି । କାନ୍ଧରେ ଝୁଲୁଥାଏ ଗୋଟିଏ କରି ଝୁଲା । ସେଥିରେ ସେମାନଙ୍କର ଦରକାରୀ ଜିନିଷତକ ଥାଏ । ହାତରେ ଚରଖା ଅରଟମାର୍କା ତ୍ରିରଙ୍ଗୀ ପତାକା। ଜଣେ ତାଙ୍କ ଭିତରୁ ଡାକ ଦେଲେ ମହାତ୍ମା ଗାନ୍ଧିକି, ଅନ୍ୟ ସମସ୍ତେ---------ଜୟ

ଭାରତ ମାତାକି------ଜୟ

ସ୍ୱାଧୀନ ଭାରତକି-------ଜୟ

କୌମି ନାରା-------ବନ୍ଦେ ମାତରଂ

ଲବଣ ଆଇନ ଭଙ୍ଗ କର ।

ହାଟ ଜମି ଜମି ଆସୁଥାଏ, ଭିଡ ବଢ଼ି ବଢ଼ି ଚାଲିଥାଏ, ପସରା ସବୁ ଥୁଆଥୋଇହେଉଥାଏ । ହଠାତ୍ ଏ ନାଦ ଏ ଜୟଧ୍ୱନି ସମସ୍ତଙ୍କ କାନରେ ପଡ଼ିଲା । ଲୋକେ ହାଟ କଥା ଭୁଲି ତେଲ, ଲୁଣ, ପନିପରିବା, ମାଛ, ଶୁଖୁଆର ମୋହ ପଛକୁ ପକେଇ ଦେଇ ସତ୍ୟାଗ୍ରହୀ ମାନଙ୍କ ଚାରିପଟେ ଘେରିଗଲେ । ଧୀରେ ଧୀରେ ଆଗର ହାଟ ଶୂନ୍ୟ ହୋଇ ଏଠି ଗୋଟିଏ ନୂଆ ହାଟ ବସିଗଲା । କନେଷ୍ଟବଳ ଅସଗର ମିଆଁ, ଚଉକିଦାର ତମେଇ ମଲିକ, ଦଫାଦାର ସୁନାକର ଜେନା ସମସ୍ତେ ବସି ଗଞ୍ଜେଇ ଟାଣୁଥିଲେ । ହଠାତ୍ ସତ୍ୟାଗ୍ରହୀମାନଙ୍କ ଜୟଧ୍ୱନିରେ ସମସ୍ତଙ୍କ ନିଶା ଛାଡ଼ିଗଲା । ଚଉକିଦାର ପିଳେଇ ଚମକିଲା, ଦଫାଦାରଛାତିରେଛନକା ପଶିଲା । କନେଷ୍ଟବଳ ବିସ୍ମୟା ତାର ପଗଡ଼ି ସମ୍ଭାଳୁ ସମ୍ଭାଳୁ ଅଣ୍ଟାର ବେଲ୍ଟ ଖସି ପଡ଼ିଲା । ତାକୁ ଠିକ୍ କରୁ କରୁ ଯୋତା ହଳକ କୋଉଠି ଯାଇ ପଡ଼ିଲା । ହତବାକ୍ ହୋଇ ସେ କହିଲା ଏ କିଏରେ ବାବା ତା ଜିନ୍ଦେଗୀରେ ସେ ସାହେବ ଲୋକଙ୍କର ଟୋପି ଦେଖିଛି । ସେମାନଙ୍କୁ ସଲାମ ବଜେଇଛି । ଆଜି ଏ ଧଳା ଟୋପିବାଲା କିଏ ଲୋକଙ୍କ ଘେରରେ । ଯାହାଙ୍କୁ ଲୋକେ ଖାତିର କରୁଛନ୍ତି । ସମ୍ମାନ ଦେଖାଉଛନ୍ତି । ତାଙ୍କ କଥା ମନଦେଇ ଶୁଣୁଛନ୍ତି । ଯିଏ ଇଂରେଜ ସରକାରକୁ ଛି ଛାକର କରୁଛନ୍ତି । ଇଏ ଆଲ୍ଲା ! ଜମାନା କିଏମିତି ବଦଳିଗଲା ।

ସତ୍ୟାଗ୍ରହୀମାନଙ୍କ ମଧ୍ୟରୁ ଜଣେ କହିଲେ, ବୋଧ ହୁଏ ସତ୍ୟବାଦୀ ନନ୍ଦ ଗୋରା ଲୋକଟିଏ । ଘନ ଦାଢ଼ି--''ଭାଇମାନେ ଆମେମାନେ ଲବଣ ସତ୍ୟାଗ୍ରହୀ । କଂଗ୍ରେସ ବାଲା । ଗାନ୍ଧୀଙ୍କ ଚେଲା । ବାଲେଶ୍ୱର ଜିଲ୍ଲାର ଇଞ୍ଚୁଡ଼ି ଯାଉଛୁ ଲୁଣ ମାରିବାକୁ । କୁଜଙ୍ଗରେ ଲୁଣ ମରା ଚାଲିଛି । ସେଠାରେ ରମାଦେବୀ, ମାଳତୀ ଦେବୀ ପ୍ରଭୃତି ଅଛନ୍ତି । ଆପଣଙ୍କ ଘର ପାଖ ଓରଣ୍ଡରେ ଆଉକିଛି ଦିନ ପରେ ଲୁଣ ମରା ଯିବ । ଲବଣ ଆଇନ ଭଙ୍ଗ କରାଯିବ । ଆପଣମାନେ ନିତି ପଖାଳ ସାଥିରେ ସରକାରୀ ଲୁଣ ଖାଉଛନ୍ତି । ସେ ଲୁଣ ବିଲାତରୁ ଆସୁଛି । ଏଣିକି ଆମେ ସମୁଦ୍ରରୁ ଲୁଣ ମାରି ଖାଇବା । ଆମ ତିନିପଟେ ସମୁଦ୍ର ଘେରିଛି । ଅଥଚ ଲୁଣ ମାରି ଖାଇବାର ଅଧିକାର ଆମର ନାହିଁ । ଦେବୀ ନଦୀର ପାଣି ଲୁଣିଆ ତା ଦେହରୁ ଯେଉଁ ଛୋଟ ଛୋଟ ନଦୀ ସବୁ ବାହାରିଛି ତା ପାଣି ମଧ୍ୟ ଲୁଣିଆ । ଆମେ ସେଥିରୁ ପାଣି ନେଇ ଲୁଣ ମୁଠେ ମାଇଲେ ଜେଲ ଯିବୁ । ମାଡ ଖାଇବୁ । ଜୋରିମାନା ଦେବୁ । ଆମର ପ୍ରଧାନ ଆହାର ପଖାଳ ମୁଠିଏ । ଲୁଣ ଟିକିଏ ହେଲେ ତରକାରି କଥା ପଛକୁ ଥାଉ । ଏ ଅନ୍ୟାୟ ଏ ଅନୀତି ଭାଙ୍ଗି ଚୁରମାର କରିଦେବା । ନିମିକି କୋଠି ସବୁ ଉଠେଇ ଦେବା । ସେମାନଙ୍କ ଭିତରୁ ଜଣେ ଗାଇ ଉଠିଲେ--

''ଲୁଣ ମାରିବାକୁ ଚାଲରେ ଭାଇ,
ମହାତ୍ମା ଆଦେଶ ପାଳହୋ
ଆମ ଘର ପାଖେ ଘେରିଛି ସାଗର
ଲୁଣ ମାରିବାକୁ ନାହିଁ ଅଧିକାର
ଏ ଅନ୍ୟାୟ ଏ ଅନୀତି କୁହ ଭାଇ
ସହିଥିବା କେତେ କାଳ ହେ ।''

ଲୋକେ ଗୀତଟି ସାଙ୍ଗରେ ନିଜର ସ୍ୱର ମିଳାଇଲେ । କଣ୍ଠରେ କଣ୍ଠ ମିଶେଇ ଜୟଧ୍ୱନି ଦେଲେ । ତାଳି ଉପରେ ତାଳି ବୃଷ୍ଟିହେଲା । ଲୋକମାନଙ୍କ ପ୍ରାଣରେ କି ଉଚ୍ଛ୍ୱାସ, କି ଉତ୍ତେଜନା । ପାଞ୍ଚ ମିନିଟ ଭିତରେଯେମିତି ନିଆଁ ଲୁଣିଦେଲେ ସତ୍ୟାଗ୍ରହୀମାନେ । କିଏ ନଡ଼ିଆ ପଣା ଆଣି ଦେଇଲା । କିଏ ଦେଲା ଗରମ ଚପ, ବୁଢ଼ାଟିଏ ମୁଢ଼ି, ଉଖୁଡ଼ା, ଛେନା, ପାଚିଲା କଦଳୀ, ନଡ଼ିଆ ଗୋଟେଇ ତା ଦୋକାନକୁ ଡାକିନେଇ ପେଟେ ଖୋଇଲା । ସେତେବେଳେ ସେଠି ଜଳଖିଆ ଥିଲା । ସତ୍ୟାଗ୍ରହୀ ଜଣେ ଝୋଲା ପାତିଲେ । ପାଞ୍ଚଲା ଅଧଲା

ଲୋକେ ଯିଏ ଯାହା ପାଇଲା ସ୍ୱଇଛାରେ ଦାନ ଦେଲା । ସେହି ପାହୁଲା ଧଳାର ମୂଲ୍ୟଆଜି ଢେର ବେଶୀ ।

କର୍ମୀମାନେ ଚାଲିଲେ ବାଲିକୁଦା ଆଡେ । ଧୂଳି ଧୂସରିଆ ରାସ୍ତା ଲମ୍ବି ଯାଇଛି ହରିପୁରର ଦଣ୍ଡ ନଗର ପୋଲଯାଏ । ସଡକର ଦି ଜଡ଼ଯାକ ଲି ବଡ ବଡ ଜିଆ ଆଉ ସପଫେଣା କଣ୍ଟା । ମଝିରେ ଆଣ୍ଠୁଏ ବହଳ ଦଳା ବାଲି । ଗୋଡ ପୋତି ହୋଇ ପଡୁଥାଏ । ମୁଣ୍ଡ ଉପରେ ବିଶାଖର ତାଳୁଫଟା ଖରା ଝାଞ୍ଜି ପିଟୁଥାଏ । ନିଛାଟିଆ ରାସ୍ତାରେ ଧଳା ମେଘ ଖଣ୍ଡେ ଭାସି ଯାଉଥାଏ ଦୂର ଆକାଶରେ ।

ସତ୍ୟାଗ୍ରହୀମାନଙ୍କର ସେଥିପ୍ରତି କ୍ରୁକ୍ଷେପ ନଥାଏ । ଯେ ଘର ସଂସାର ମାୟା ମମତାକୁ ପଛକୁ ପକେଇ ଦେଇ ଆସିଛି, ଯେ ନିଜର ସୁଖ ସମ୍ଭୋଗ ଭୋଗ ବିଳାସକୁ ପାଶୋରି ଦେଇ ଏକ ମହାନ୍ ଉଦ୍ଦେଶ୍ୟ ନେଇ ଆଗେଇ ଛିଛି, ଏ ସବୁ ବାଧାବିଘ୍ନ ତା ଆଗରେ ଅତି ତୁଚ୍ଛ ଅତି ନଗଣ୍ୟ ।

ବିଙ୍କ ଭାଷାରେ:—

"ତୁ ତ ସତ୍ୟାଗ୍ରହୀରେ
ଆସୁ ଝଞ୍ଜା ବତାସ ହେବୁ ନାହିଁ ହତାଶ
ବସିବୁ ନାହିଁ ଥକି ଯାଇରେ
ବାଟରେ ଗୁଡାଏ ଖଜୁରୀ ଗଛ ।
ତାଡ଼ିର ଓଳା ଦେଖି କେହି ଜଣେ ଗାଉଥାଏ:—
ଆସ ଭାଇ କାଟିବା ଖଜୁରୀ
ଏ ଶୁଣି ସରକାର ଗଣ୍ଡି ବଢାଉଛି
ତା ବେକରେ ମାରିବା କଟୁରୀ
କିଏ ବା ସ୍ୱର ଧରିଥାଏ—
ସାରା ବିଲାତରେ ହାହାକାର ଆମେ
ପକେଇଦେବୁ ପକେଇଦେବୁ ।
ଗୋରା ବେପାରୀଙ୍କୁ ଏପାରି ସେପାରି କରି
ନଚେଇ ଦେବୁ ନଚେଇ ଦେବୁ
ଆମେ ନ କିଣିବୁ ବିଲାତି ଚିଜ
ଆଉ ନ ଆସିବ ତାଙ୍କ ଜାହାଜ
ବେପାର ତାଙ୍କର ଛଡେଇ ଦେବୁ
ଛଡେଇ ଦେବୁ ।"

ମଝିରେ ମଝିରେ ଜୟ ଧ୍ୱନି ଚାଲିଥାଏ ।

ବାଟ ଚଲା ବାଟୋଇଙ୍କୁ, ହାଟ ଫେରନ୍ତା ହାଟୁଆଙ୍କୁ ଟାଣି ଆଣୁଥାଏ । ସେମାନେ ମଧ୍ୟ ସ୍ୱରରେ ସ୍ୱର ମିଶେଇ ପାଦରେ ପାଦ ମିଶେଇ ଚାଲି ଥାଆନ୍ତି ।

କଂପଡା, ଡିହୁଡି, ଓଥରପା ବାଲାଙ୍କୁ ମଟେଇ, ଆମଶାଳା ଚନ୍ଦ୍ରପଡା ନାଦାବାଲାଙ୍କୁ ଉଚେଇ ଇଶ୍ୱରପୁର, କଣିପା, ବାସାଙ୍କୁ ଚେତେଇ ସତ୍ୟାଗ୍ରହୀମାନେ ଯେତେବେଳେ ଆସି ଦାମଦୋଦରପୁର ଗଡାରେ ପହଞ୍ଚିଲେ, ସେତେବେଳେ ସ୍ୱରିଆଡେ ମୁଣ୍ଡମାଳ । ଆଉ ଚାଲିଯିବ । ବୀର କିଶୋର ଦାସଙ୍କ ନେତୃତ୍ୱରେ ସେ ଆଜି ଥାଳି ମାରି ଦେଲେ ହୁଳିରେ ହୁଳରେ ବୋହୂଝିଅମାନେ ହୁଳହୁଳି ଦେଇ ବନ୍ଦାପନା କଲେ । ମସ୍ତକରେ ପିନ୍ଧାଇ ଦେଲେ ବିଜୟର ଟିକା । ଗଳାରେ ଲମ୍ବାଇ ଦେଲେ ଫୁଲମାଳ ।

ସେହି ବୀର ବାବୁଙ୍କ ବିରାଟ କଚେରୀ ଘରେ ସତ୍ୟାଗ୍ରହୀମାନଙ୍କ ରହଣିର ବ୍ୟବସ୍ଥା । ବୀରବାବୁଙ୍କ ମା ଲକ୍ଷ୍ମୀ ସ୍ୱରୂପା, ନିଜ ହାତରେ ରାନ୍ଧି ଅତି ଯତ୍ନରେ ସୁଆଦରେ ଖୋଇଲେ । ମିଷ୍ଟ ଭାଷା ସ୍ନେହ ବଚନରେ ଅପୂର୍ବ ମମତାରେ ଏପରି ବାନ୍ଧି ପକେଇଲେ ଯେ, ସତ୍ୟାଗ୍ରହୀମାନେ ନିଜ ଘର କଥା ଭୁଲିଗଲେ । ଆଗକୁ କଣ ଆସୁଛି ତାହା ପାଶୋରି ପକେଇଲେ ।

ସତ୍ୟାଗ୍ରହୀ ଜୀବନ ଅତି କଠୋର । ଯଥା ସମ୍ଭବ ସରଳ ଆଉ ନିରାଡମ୍ବର । ସତ୍ୟାଗ୍ରହ ଚାଲି ଥିବା ଯାକେ ତେଲ ଲଗେଇବେ ନାହିଁ, ମସଲା ଖାଇବେ ନାହିଁ । ମାଛ ମାଂସ ଭକ୍ଷଣ ମଧ୍ୟ ନିଷିଦ୍ଧ, ଯେଉଁଠି ଯାହା ମିଳିବ ତାକୁ ହିଁ ଆଦରି ନେବେ । ସେ ଦିନ ସଂଧ୍ୟାରେ ବାଲି ସାହି ପତିତପାବନଙ୍କ ଅଗଣାରେ ଏକ ବିରାଟ ସଭା ହେଲା । ସତ୍ୟାଗ୍ରହୀମାନଙ୍କ ନେତା ଯାହା ସବୁ ଲୋକଙ୍କୁ ବୁଝେଇଲେ ତାହା ଯେମିତି ସମସ୍ତଙ୍କ ମନକୁ ଛୁଇଁଗଲା ।

ଅତିଥି ଗୋଟିଏ ତିଥିର । ତାପର ଦିନ ସେମାନେ ମୁହାଁଇଲେ ଇଞ୍ଚୁଡ଼ି ଆଡେ ।

ରମାଦେବୀ କୁଜଙ୍ଗର ଲୁଣମରା ଦାୟିତ୍ୱ ମାଳତୀ ଦେବୀଙ୍କ ଉପରେ ଅର୍ପଣ କରି ଆଗେଇ ଚାଲିଲେ ବାଲିକୁଦା ଆଡେ । ତାଙ୍କୁ ସାହାଯ୍ୟ କରୁଥାନ୍ତି ନାରାୟଣ ବୀରବର ସାମନ୍ତ, ଡାକ୍ତର ବ୍ରଜବନ୍ଧୁ ମିଶ୍ର, ଭାବଗ୍ରାହୀ ପତି, ଦୁର୍ଯ୍ୟୋଧନ ପଟ୍ଟନାୟକ (ମାଷ୍ଟ୍ରେ), ବାବାଜୀ ଭୀମସେନ ଦାସ, ଭ୍ରମରବର ଦାସ, ବୃନ୍ଦାବନ ପାତ୍ର ଓ ଆହୁରି ଅନେକ ।

ରମାଦେବୀଙ୍କ ଗସ୍ତ ଫଳରେ ଖାଲି ବାଲିକୁଦା ନୁହେଁ, ହର୍ଷପୁର ବିସ୍ନୁପୁରରେ ମଧ୍ୟ ଅପୂର୍ବ ଉନ୍ମାଦନା ସୃଷ୍ଟି ହେଲା । ନାହିଁ ନଥିବା ଜନଜାଗରଣ ଦେଖାଦେଲା । ଲୋକେ ଯିଏ ଯାହା ପାଇଲେ ସ୍ୱଇଛାରେ ତାଙ୍କ ଥଳୀ ଭରି ଦେଲେ ।

ଘରର ବୋହୂଝିଅମାନେ ଘରକଣ ଛାଡ଼ି ଆସି ଦାଣ୍ଡରେ ଠିଆ ହେଲେ । ନିଜର ଦାମିକା ଅଳଙ୍କାରମାନ ହାତରୁ ଖୋଲି ହସି ହସି ରମାଦେବୀଙ୍କ ହାତରେ ଟେକି ଦେଲେ । ଚୁଡ଼ା,ନଡ଼ିଆ, ଗୁଡ଼ର ଗାଡ଼ି ଗାଡ଼ି ହୋଇ ଅଳକା ଆଶ୍ରମକୁ ଚାଲିଲା ।

ରମାଦେବୀଙ୍କ ପ୍ରଥମ କଂଗ୍ରେସ ସଭା ହେଲା ବାଲି ସାହି ଦୋଳମଣ୍ଡପ ପଡ଼ିଆରେ । ମାଧବ ମିଶ୍ର ଦିପୋଟି ଏ ସଭାକୁ ଭଣ୍ଡୁର କରିବା ଲାଗି ଗାଁ ଗାଁ ଚଉକିଆ, ଦଫାଦାର, କନେଷ୍ଟବଳଙ୍କୁ ଲଗେଇ ନାନା ଧମକ ଚମକ ଦବା ଆରମ୍ଭ କଲେ । ଜେଲ, ଜୋରିମାନା ଭୟ ଲୋକଙ୍କୁ ଦେଖାଇଲେ । ଦିନ ଚାରିଟା ବେଳେ କଂଗ୍ରେସ ପଟୁଆର ଯେତେବେଳେ ବାଲିକୁଦା ବଜାର ଦେଇ ଗଲା, ସେତେବେଳେ ଶହ ଶହ ଲୋକଙ୍କ ଆଗରେ ଆମେ ସ୍କୁଲ ପିଲା ଥାଉ ପ୍ରାୟ ଦୁଇ ଶହ । କିଛି ବୁଝୁ ନଥାଉ କିନ୍ତୁ ଏକ ପ୍ରବଳ ଆକର୍ଷଣ ସେ ଗୀତ, ସେ ଜୟ ଧ୍ୱନି ଆମକୁ ଚୁମ୍ବକ ପରି ଟାଣି ନେଉଥାଏ । ଗୋବିନ୍ଦ ଦାସ ଗାଉଥାନ୍ତି ଜାତୀୟ କବି ବୀର କିଶୋରଙ୍କ ଗୀତ—

ଉଠରେ ଉଠରେ ସ୍ୱରାଜ ସୈନିକ
ଉଠ ବୀର ମଦେ ମାତି
ଏ ଇଂରେଜ ରାଜତ୍ୱ କରିବା ବିଲୁପ୍ତ
ଆମେ ଗଜପତି ଜାତି
ସୀତାଙ୍କୁ ହରିଲା ରାବଣ ମରିଲା
ଦ୍ରୌପଦୀ ଶାପରୁ କୁରୁକୁଳ ଗଲା
ଏ ଇଂରେଜ ଆୟୁଷ ଆଉ ଦୁଇ ଚାରି ମାସ
ଜଳିଲାଣି ନାଲିବତି ।
ଇତ୍ୟାଦି ।

ପୁଣି ଗାଇଲେ—

ଲୁଣ ମାରିବାକୁ ଚାଲ
ଭାଇ ମହାତ୍ମା ଆଦେଶ ପାଳହେ ।

ତେଣେ ବାଲିକୁଦା ଡାକ ବଙ୍ଗଳାରେ ମାଧବ ମିଶ୍ର ଥାନାର ଯେତେ ଚଉକିଆ, ଦଫାଦାର, ୟୁନିୟନ ପ୍ରେସିଡେଣ୍ଟ, ସରକାରଙ୍କ କେତେକ ଖୁସାମଦିଆଙ୍କୁ ଠୁଳ କରି ଗୋଟାଏ ନାଟ ଦଳକୁ ଧରି ଆଣି ଗୋଟି ପିଲା ଆଠ ଦଶଟିଙ୍କୁ ନଚେଇ ଲୁଣ ମରାର ବ୍ୟଙ୍ଗୋକ୍ତି କରି ଗାଇ ନଚଉଥାନ୍ତି ।

ଲୁଣମାରିବାକୁ ଚାଲ
ଯେବେ ପିଠି ହୁଏ ଗଲ ଗଲ ହେ ।

ଜେଲକୁ ଯିବ ଘଣାକୁ ପେଲିବ
କଟା ପିଟି ପିଟି ହାତ ବିଷି ହେବ
ଚମ ପିଠିରୁ ଉଠିବ ଛାଲ ହେ ।

ବେତ ଖାଇ ଖାଇ ଲୋକା ଫାଟିଯିବ
ନେତ ଧରିବାକୁ ବଳ ଯେ ନଥିବ
ଆମେ ବିଛେଇ ଦେଇଛୁ ଜାଲହେ ।

ମାଧବ ମିଶ୍ରଙ୍କ ଗୋଟି ପିଲା ନାଚ, ନାନା ଧମକ ଚମକ ପ୍ରଲୋଭନ ସତ୍ତ୍ୱେ ବାଲି ସାହିର ଦୋଳ ମେଳଣ ପଡ଼ିଆରେ ସେଦିନ ଯେଉଁ ବିରାଟ ସାଧାରଣ ସଭା ହୋଇଥିଲା ତାର ତୁଳନା ନାହିଁ । ତେପନ ବର୍ଷ ତଳର କଥା ମୋର ସବୁ ମନେ ଅଛି । ମୋ ବୟସ ସେତେବେଳେ ମାତ୍ର ତେର ।

ଜଣେ ବଡଲୋକ ଘରର ବୋହୂ, ବାରିଷ୍ଟର ମଧୁବାବୁଙ୍କ ଝିଅଣୀ, ଚିଠି ପୋଟି ଗୋପବନ୍ଧୁ ବାବୁଙ୍କ ସ୍ତ୍ରୀ ଯିଏ ଘର କଣରୁ ବାହାରିବା କଥା ନୁହେଁ ସେ ଆସି କାଦୁଅ ପାଣିରେ ଖାଲି ଚ୍ଚିପ ନମାନି ଖରା ବରଷା ସହି ଗାଁକୁ ଗାଁ ପାଦରେ ବୁଲୁଛନ୍ତି । ସେ କେମିତି ହୋଇଥିବେ, କଣ କହିବେ ଶୁଣିବାକୁ ଲୋକେ ଥାଟ ପଙ୍ଗାଳି ଭାଙ୍ଗିଲେ । ସଭାରେ ସୋରିଷ ପକାଇବାକୁ ଯାଗା ରହିଲାନି । ସେତେବେଳେ ମାଇକ ନଥିଲା କିନ୍ତୁ ହଜାର ହଜାର ଲୋକ ଏତେ ଧୀର ସ୍ଥିର ହୋଇ ଶୁଣୁଥାନ୍ତି ଯେ, ତାଙ୍କର ପ୍ରତ୍ୟେକଟି କଥା ଲୋକଙ୍କ ମନକୁ ଛୁଇଁ ଯାଉଥାଏ । ମୋତେ ମଧ୍ୟ ବିହ୍ୱଳ କରି ପକାଇଲା । ଆଉ ସ୍କୁଲକୁ ଗଲିନି । ପୋଥିରେ ଡୋର ବନ୍ଧା ହେଲା । ହେଡମାଷ୍ଟରଙ୍କ କଠୋର ଶାସନ, ଘର ମୁରବୀମାନଙ୍କର ତାଡନା, ପରିବାରର ମାୟା ମମତା ମୋତେ ଆଉ ବାନ୍ଧି ରଖି ପାରିଲା ନାହିଁ ।

ଦିନେ ସାହସ ସଞ୍ଚୟ କରି ଦଶ ମାଇଲ ବାଟ ପାଦରେ ଚାଲି ଚାଲି ଆସି ଜଗତ୍‌ସିଂହପୁର 'ଲକ୍' ପାଖରେ ପହଞ୍ଚିଲି । ପଚାରି ପଚାରି ଅଳ ଆଶ୍ରମକୁ ଆସିଲି ଥକ୍‌କା ହୋଇ ଆଶ୍ରମ ଦୁଆର ମୁହଁରେ ବସି ପଡ଼ିଲି ଏକା ଥରକେ ଏତେ ବାଟ କେବେ ଚାଲି ନଥିଲି । ତେଣୁ ସେଇଠି କା ପାରି ଶୋଇ ପଡ଼ିଲି । କେତେବେଳେ ନିଘୋଡ ନିଦ ଆସିଛି ଜାଣେନା ହଠାତ୍ ଆଶ୍ରମ ପରିଚାଳକ ବିଶ୍ୱନାଥ ପରିଡାଙ୍କ ଡାକରେ ତ ଟୁଟିଗଲା । ସେ ମୋଠାରୁ ସମସ୍ତ ଶୁଣି ଅତି ସ୍ନେହରେ ଆଶ୍ରମ ଡାକିନେଲେ । ଗୋଡ ହାତ ମୁହଁ ଧୋଇବାକୁ ପାଣି ଦେଲେ । ମୁ କୋରା ନଡ଼ିଆ ବସାଦହି ଗୁଡ ଆଣି ବସି ଖୋଇଲେ । ପିଠିରେ ହା ବୁଲାଇ ଦେଲେ । ଏବେବି ତାଙ୍କର ସେହି ସ୍ନେହ ମମତା ମୁଁ ଭୁ ପାରିବିନି । ଏଠାରେ ସୁତାକଟା ଲୁଗାବୁଣା ଇତ୍ୟାଦି ଚାଲିଥାଏ । ସୁହୃଁ ସ ରହି ଗଲି ପନ୍ଦର ଦିନ । 'ରମା' (ମାଳତୀ ଦେବୀ) ତୁଳଙ୍ଗ ଲୁଣ ଚଟାଣ କଟକ ଯିବା ବାଟରେ ଅଳକା ଆଶ୍ରମ ଦେଇ ଆସିଲେ । ବାନର ସେ ହେଇ କଟକର ମଦ, ଗଞ୍ଜେଇ, ଅଫିମ ଦୋକାନ ଆଗରେ ପିକେଟି କରିବାକୁ ସେ ମୋତେ ସାଥିରେ ନେଇଗଲେ ।

ସେହି ଗାତି ଗାତି, ଖଦଡ ନାଲି ପ୍ୟାଣ୍ଟ, ଖଦଡ ନାଲି ସାର୍ଟ ଆଉ ଧ ଗାନ୍ଧୀ ଟୋପି ମତେ ପିନ୍ଧିବାକୁ ମିଳିଲା । ମୋଭଳି ଆହୁରି ଅନେକ ପି ସେଠି ଥା'ନ୍ତି । ସେମାନଙ୍କୁ ବାନରସେନା କୁହାଯାଉଥିଲା । ମୁଁ ମ ବାନରସେନା ବନିଗଲି ।

କ୍ୟାରପ୍ ବିଦ୍ୟାପୁରୀ,
କଟକ—୨



ଆରବାର୍ଷି ଷ୍ଟୁଡିଓମ୍‌ଠାରେ ଆରନ୍ତର୍ଜାତୀ ସମ୍ମିଳନୀରେ ସୁପ୍ରିମ୍ କୋର୍ଟର
ମାନ୍ୟବର ବିଚାରପତି ଶ୍ରୀ ରଙ୍ଗନାଥ ମିଶ୍ର ...

•• ସ୍ମରଣ

# ଭଦ୍ର ପର୍ଯ୍ୟାୟର ସ୍ୱାଧୀନତା ସଂଗ୍ରାମ ଚୌକିଦାର ଟିକସ ବନ୍ଦ ••

ଶ୍ରୀ ରବୀନ୍ଦ୍ର ମୋହନ ଦ

ନିଖିଳ ଭାରତ ଜାତୀୟ କଂଗ୍ରେସର ଘୋଷଣାକୁ ଶିରଧାର୍ଯ୍ୟକରି ଆକୁମାରୀ ହିମାଳୟ, ବିରାଟ ଭାରତବର୍ଷର ଜନସାଧାରଣ ନିଜର ମାତୃଭୂମିକୁ ପରାଧୀନତାରୁ ମୁକ୍ତ କରିବା ପାଇଁ ୧୯୩୦ ଜାନୁୟାରୀ ୨୬ ତାରିଖରେ ଶପଥ ନେଲେ—ଜାତୀୟ ତ୍ରିରଙ୍ଗା ପତାକା ତଳେ ।

କିନ୍ତୁ ସଂକଳ୍ପକୁ କାର୍ଯ୍ୟକାରୀ କରାଯିବ କିପରି ? ଜାତିର ପିତା ମହାତ୍ମା ଗାନ୍ଧିଙ୍କ ପରାମର୍ଶରେ କଂଗ୍ରେସ ସ୍ଥିରକଲା ମୁକ୍ତି ସଂଗ୍ରାମର ପ୍ରଥମ ଧାପ ହେଲା ବ୍ରିଟିଶସରକାରଙ୍କର ଲବଣ ଆଇନକୁ ଭଂଗକରିବା । ନିଜେ ମହାତ୍ମା ଗାନ୍ଧି ସାବରମତୀ ଆଶ୍ରମରୁ ଲବଣ ସତ୍ୟାଗ୍ରହର ଯୁଦ୍ଧଯାତ୍ରା ଆରମ୍ଭ କଲେ—ଗୁଜରାଟ ଉପକୂଳର ଦାଣ୍ଡିକୁ । ଦେଶର ଦୀର୍ଘ ସମୁଦ୍ରକୂଳରେ ଅସଂଖ୍ୟ କେନ୍ଦ୍ରରେ ବ୍ରିଟିଶ ସରକାରର ଲବଣ ଆଇନ୍ ଭଙ୍ଗ କରାଗଲା ।

ଓଡ଼ିଶାର ବାଲେଶ୍ୱର ଜିଲ୍ଲାର ଇଂଚୁଡ଼ି ଗ୍ରାମରେ ୧୯୩୦ ଏପ୍ରିଲ ୧୩ ତାରିଖ ମକର ସଂକ୍ରାନ୍ତି ଦିନ ଲବଣ ଆଇନ ଭଙ୍ଗକରି ଲୁଣମାରିବା ଆରମ୍ଭହେଲା । ଓଡ଼ିଶା ଓ ଓଡ଼ିଶା ବାହାରୁ ବହୁ ସତ୍ୟାଗ୍ରହୀ ଏଠାକୁ ଆସି ଲବଣ ଆଇନ ଭଙ୍ଗକରି କାରାବରଣକଲେ । ବହୁ ସତ୍ୟାଗ୍ରହୀ ଗିରଫହେଲାପରେ—ସରକାର ଅନ୍ୟ ସତ୍ୟାଗ୍ରହୀମାନଙ୍କୁ ଗିରଫ ନ କରି ଲୁଣମାରିବା ହାଣ୍ଡି ଭାଂଗିଲେ—ତେଣେ ବର୍ଷା ଦିନ ଆସିବାରୁ ଲୁଣମାରିବା ବନ୍ଦହେଲା । ଏତେବେଳକୁ ନେତା ଓ ମୁଖ୍ୟ କର୍ମୀମାନେ ଗିରଫହୋଇ ସାରିଲେଣି । ଅନ୍ୟ ଯେଉଁମାନେ ଆଗ୍ରହରେ ସତ୍ୟାଗ୍ରହରେ ଯୋଗଦେଇ କାରାବରଣ ପାଇଁ ବ୍ୟାକୁଳ ହେଉଥିଲେ, ଗିରଫ ବନ୍ଦହେବାରୁ ସେମାନେ ହତାଶହେଲେ । ସେମାନେ ଗ୍ରାମସଂଗଠନ କାର୍ଯ୍ୟରେ ଲାଗିଲେ । ଲବଣ ସତ୍ୟାଗ୍ରହର ଆରମ୍ଭରେ ଦେଶବ୍ୟାପୀ ଯେଉଁ ରାଜନୈତିକ ଉଦ୍ଦୀପନା ପରିଲକ୍ଷିତ ହୋଇଥିଲା କ୍ରମେ ମୌଳିକତାକୁ ଲାଗିଥାଏ । ନୂଆ କେ କାର୍ଯ୍ୟକ୍ରମର ଅଭାବରୁ ନୂଆ ସତ୍ୟାଗ୍ରହୀଙ୍କ ଆଗମନ ବନ୍ଦହେଲା ।

ଗ୍ରାମ ସଂଗଠନରେ ନିଯୁକ୍ତି କର୍ମୀମାନେ, ସମସ୍ତେ କାର୍ଯ୍ୟରେ ଅନଭିଜ୍ଞ ଥିଲେ ସୁଦ୍ଧା ଜାତୀୟ ଆନ୍ଦୋଳନ ଗ୍ରାମବାସୀଙ୍କ ଅକୁଣ୍ଠ ସମର୍ଥନ ଓ ସହାନୁଭୂତିଥିବା ଏ ଆମଭଳି ଅନଭିଜ୍ଞ କର୍ମୀମାନେ ଗ୍ରାମବାସୀଙ୍କ ଆଦର ଗ୍ରାମ ସଂଗଠନ କାର୍ଯ୍ୟରେ ଲାଗିଲେ ।

ଏତିକିବେଳେ ଏକ ନୂଆ ଆନ୍ଦୋଳନର ସୂତ୍ରପାତ ଗ୍ରାମର ସାଧାରଣ ଲୋକେ ପ୍ରତ୍ୟକ୍ଷ ଭାବେ ବ୍ରିଟିଶ ସରକ ସମ୍ମୁଖୀନ ହେଲେ ସଂଗ୍ରାମ କ୍ଷେତ୍ରରେ । ଏହି ଆନ୍ଦୋ ଓଡ଼ିଶାର ସ୍ୱାଧୀନତା ସଂଗ୍ରାମରେ ଯେପରି ସ୍ଥାନ ପାଇ ହକଦାର ତାହା ହୋଇପାରି ନାହିଁ ।

ସ୍ୱାଧୀନତା ସଂଗ୍ରାମର ପ୍ରଥମ କାର୍ଯ୍ୟକ୍ରମ ଭାବେ ସତ୍ୟାଗ୍ରହ, ମହାତ୍ମା ଗାନ୍ଧିଙ୍କ ଦାଣ୍ଡିଯାତ୍ରା ଓ ସମଗ୍ର ଦେଶରେ ଅଭୂତପୂର୍ବ ଜନ ଜାଗରଣ ସୃଷ୍ଟି କରିଥିଲା

ବର୍ତ୍ତମାନ ଯେଉଁ ନୂଆ ଆନ୍ଦୋଳନର ଡାକରା ତାହା ହେଉଛି ଚୌକିଦାରୀ ଟିକସ ବନ୍ଦ ଆନ୍ଦୋଳ ଏ ଆନ୍ଦୋଳନର ବିଶେଷତ୍ୱ ହେଉଛି ନିଜେ ଗ୍ରାମବାସୀ ବ୍ରିଟିଶ ସରକାରକୁ ଆହ୍ୱାନ ଦେଲେ "ତୁମ ବିଦେଶୀ ସର ଆମ ସରକାର ନୁହେଁ—ଆମେ ତୁମକୁ ଟିକସ ଦେବୁ ନା ଚୌକିଦାରିପ୍ରଥା ବ୍ରିଟିଶ ସରକାରର ସୃଷ୍ଟି । ନିଜର ଶା ଦୃଢ଼କରିବା ପାଇଁ ଗାଁ ଗାଁ ତାଙ୍କ ତରଫରେ ଚୌକିଦା ଦଫାଦାର । ଚୌକିଦାରମାନେ ଗାଁ ଖବରଅନ୍ତର,

ୟର ହିସାବ ଥାନାରେ ଦେବା ଓ ବିଶେଷ ଭାବେ କଂଗ୍ରେସ
କଙ୍କ ଗତିବିଧିର ଖବର ଥାନାରେ ଜଣାଇବା । ସେଇ
ବା ମଧ୍ୟ ସେମାନଙ୍କ କାମ ଥିଲା । ଏଥିପାଇଁ ପ୍ରତି ଥାନାକୁ
କେତେଗୁଡ଼ିଏ ସର୍କଲରେ ବିଭକ୍ତ କରାଯାଇ ଥିଲା । ସର୍କଲରେ
ଣ ଜଣେ ପ୍ରେସିଡ଼େଣ୍ଟ ରହୁଥିଲେ । ପ୍ରେସିଡ଼େଣ୍ଟମାନେ
ୀଙ୍ଗରୀ ନୁହନ୍ତି–ଚୌକିଦାରି ଟିକସ ଆଦାୟକରି ସେଥିରୁ
ମାନ୍ୟ ଅଂଶ ସେ ପାଉଥିଲେ । ଅର୍ଥ ଦୃଷ୍ଟିରୁ ସେପରି
ଜନକ ନୁହେଁ–କିନ୍ତୁ ପ୍ରେସିଡ଼େଣ୍ଟ ଜଣେ ଜଣାଶୁଣା ବର୍ଦ୍ଧିଷ୍ଣୁ
କ୍ତିକୁ ନିଯୁକ୍ତି କରାଯାଇ ଥିଲା ଏବଂ ସେ ସରକାରୀ ଲୋକ
ଭାବରେ ନିଜ ଅଂଚଳରେ ଯଥେଷ୍ଟ ସମ୍ମାନ ପାଉଥିଲେ ।

ଚୌକିଦାରର ଦରମା ୩ଟଙ୍କାରୁ ୬ଟଙ୍କା ଏବଂ ଏମାନଙ୍କ
ର୍ଯ୍ୟକୁ ତଦାରଖ୍ କରୁଥିବା ଦଫାଦାରଙ୍କମାନଙ୍କ ଦରମା ୧୨ଟଙ୍କା
ତ ଥିଲା । ଚୌକିଦାର ଓ ଦଫାଦାରଙ୍କ ଦରମା ଚୌକିଦାରୀ
ଟିକସରୁ ଭରଣା ହେଉଥିଲା । ସେହି ଦୃଷ୍ଟିରୁ ଚୌକିଦାରୀ ଟିକସ
ହେବା ଦ୍ୱାରା ଖୋଦ ସରକାରଙ୍କର ରାଜକୋଷ ଉପରେ
କ୍ଷେପ । ଏହା ପ୍ରତ୍ୟକ୍ଷଭାବେ ସରକାର ଓ ଗ୍ରାମବାସୀଙ୍କ
ଧ୍ୟରେ ଲଢ଼ାଇ । ସ୍ୱାଧୀନତା ସଂଗ୍ରାମର ଏକ ଗୁରୁତ୍ୱପୂର୍ଣ୍ଣ
ଧ୍ୟାୟ ।

ବାଲେଶ୍ୱର ଥାନାର ୯ ନମ୍ବର ସର୍କଲ ଗୋପୀନାଥପୁର ଓ
ନମ୍ବର ସର୍କଲ ଶ୍ରୀଜଙ୍ଗ ଅଞ୍ଚଳରେ ଗ୍ରାମବାସୀମାନେ ନିଜେ
ଜ ସରକାରୀ କଳକୁ ଅଚଳ କରିବା ପାଇଁ ପ୍ରସ୍ତୁତହେଲେ ।
ସରକାରଙ୍କୁ "ହାତରେ ନମାରି ବର୍ତ୍ତମାନ ଭାତରେ ମରାହେବ"
ଶୁଣାଖାନା ଶୁନହେବ ।

ଏପରି ଏକ ପରିସ୍ଥିତି ପାଇଁ ସରକାରୀ କଳ ପ୍ରସ୍ତୁତ
ଥିଲେ । ବର୍ଷାଯୋଗୁଁ ଲବଣ ସତ୍ୟାଗ୍ରହ ବନ୍ଦହେବାରୁ ସରକାରୀ
ସ୍ୱସ୍ତିରେ ନିଶ୍ୱାସ ମାରୁଥିଲେ । ପୁଣି ଯୁଦ୍ଧର ଡାକରା
ଆସିଗଲା । ଏଟା କଂଗ୍ରେସର ପ୍ରସ୍ତାବ ନୁହେଁ ଏହା ଜନତାର
ଆହ୍ୱାନ ବ୍ରିଟିଶ ସରକାରକୁ ।

ଗ୍ରାମବାସୀମାନେ ଛୋଟବଡ଼ ସଭାମାନ କରି ସର୍କଲର
ପ୍ରେସିଡ଼େଣ୍ଟଙ୍କୁ ଜଣାଇଦେଲେ "ଆମେ ବ୍ରିଟିଶ ସରକାରର
ପ୍ରଜା ନୋହୁଁ–ଆମେ ଚୌକିଦାରୀ ଟିକସ ଦେବୁ ନାହିଁ" ।

ଏସବୁ ସଭାସମିତିରେ ବାହାରୁ ଆସିଥିବା କଂଗ୍ରେସ-
କର୍ମୀମାନେ ଯୋଗ ଦେଇ ଆନ୍ଦୋଳନ ଶାନ୍ତିପୂର୍ଣ୍ଣ ଓ ଶୃଙ୍ଖଳିତ
ଉପାୟରେ ଚଳାଇବା ପାଇଁ ଲୋକଙ୍କୁ ବୁଝାଉଥିଲେ ।

ଆନ୍ଦୋଳନ ଚଳାଇବା ପାଇଁ କେତେଗୁଡ଼ିଏ ନିୟମ ସ୍ଥିର
କରାଯାଇଥିଲା । (୧) ନିଜେ ନିଜେ ଚୌକିଦାରୀ ଟିକସ
ବନ୍ଦ କରିବେ । (୨) ଆନ୍ଦୋଳନ ସଂପୂର୍ଣ୍ଣ ଅହିଂସା ଉପାୟରେ
ଚାଲିବ । (୩) ଟିକସ ଆଦାୟ ପାଇଁ ସରକାରୀ କର୍ମଚାରୀ
ବା ପୁଲିସ ଆସିଲେ ପ୍ରତି ଗ୍ରାମର ସ୍ତ୍ରୀଲୋକମାନେ ଏକ ବିଶେଷ
ଭାବରେ ଶଙ୍ଖ ବଜାଇବେ । (୪) ଚଳନ୍ତି ସଂପତ୍ତି ସରକାର
ନିଲାମ କଲେ କେହି ସେ କାର୍ଯ୍ୟରେ ସହଯୋଗ
କରିବେ ନାହିଁ । (୫) କେହି ଗାଁ ଛାଡ଼ି ଅନ୍ୟତ୍ର ଯିବେ ନାହିଁ ।
(୬) ପୁଲିସ ଆସିଲେ ସବୁ ପୁରୁଷ ଲୋକ ଗାଁ ମୁଣ୍ଡରେ ରୁଣ୍ଡ
ହୋଇ ସେମାନେ ଫେରିଯିବାକୁ ଅନୁରୋଧ କରିବେ ।
ଲବଣ ସତ୍ୟାଗ୍ରହରେ ଗିରଫ ହୋଇନଥିବା ସତ୍ୟାଗ୍ରହୀମାନଙ୍କୁ
ସେ ଅଞ୍ଚଳକୁ ପଠାଗଲା । ଆମେମାନେ ସେଠାରେ ପହଞ୍ଚିଲା
ବେଳକୁ ଶ୍ରୀଯୁକ୍ତ ନବକୃଷ୍ଣ ଚୌଧୁରୀ ୯ ନମ୍ବର ସର୍କଲରେ
ଗିରଫ ହୋଇ ସାରିଥିଲେ । ଓଡ଼ିଶା ବିଧାନସଭାର ପ୍ରଥମ
ବାଚସ୍ପତି ଶ୍ରୀଯୁକ୍ତ ମୁକୁନ୍ଦ ପ୍ରସାଦ ଦାସଙ୍କ ପୁତ୍ର ଗୌର ଗୋପାଳ
ଦାସ ଓ ଖୋର୍ଦ୍ଧାର ଅଭିରାମ ମହାନ୍ତି ଗିରଫ ହେଲେ । ଆମେମାନେ
ଗାଁରୁ ଗାଁ ବୁଲି ଲୋକଙ୍କୁ ଭେଟି ସେମାନଙ୍କ ମତ ବୁଝୁଥିଲୁଁ ।
ଲୋକଙ୍କର ଏକମାତ୍ର ଜବାବଥିଲା, "ସରକାର ଯେତେ ଅତ୍ୟାଚାର
କଲେ ମଧ୍ୟ ଆମେ ଚୌକିଦାରୀ ଟିକସ ଦେବୁ ନାହିଁ ।"
୯ ନମ୍ବର ସର୍କଲ ଗୋପିନାଥପୁର ଗ୍ରାମର ଭାଗବତ ଭୂୟାଁ ।
ଏ ଆନ୍ଦୋଳନର ନେତୃତ୍ୱ ନେଇଥିଲେ । ନିରଞ୍ଜନ ମହାନ୍ତି,
ବିପ୍ର ଚରଣ ମହାନ୍ତି ଓ ରାମଚନ୍ଦ୍ର ପ୍ରଧାନ, ସତି ବେହେରା
ପ୍ରଭୃତି ଅଞ୍ଚଳର ବିଶିଷ୍ଟ ବ୍ୟକ୍ତିମାନେ ଆନ୍ଦୋଳନର ଅଗ୍ର ଭାଗରେ
ଥିଲେ । ଏମାନଙ୍କ ମଧ୍ୟରୁ ଭାଗବତ ଭୂୟାଁ ଓ ନିରଞ୍ଜନ
ମହାନ୍ତି ଗିରଫ ହେଲେ । ଅନ୍ୟମାନେ ମଧ୍ୟ ।

ସେ ଅଞ୍ଚଳରେ ପୁଲିସ ପ୍ରବେଶ କଲାମାତ୍ରେ ଗାଁରୁ
ଗାଁ ଶଙ୍ଖ ଧ୍ୱନିରେ ପ୍ରକମ୍ପିତ ହେଉଥିଲା । ଏଭଳି ଏକ
ଦୃଢ଼ ସଙ୍ଗଠନ ପୋଲିସମାନଙ୍କ ମନରେ ମଧ୍ୟ ଭୟ ସଞ୍ଚାର
କରୁଥିଲା ।

ଗାଁ ଲୋକମାନେ ଗାଁ ମୁଣ୍ଡରେ ରୁଣ୍ଡ ହୋଇ ପୋଲିସକୁ
ଗାଁ ଭିତରେ ପ୍ରବେଶ କରିବାରେ ବାଧା ସୃଷ୍ଟି କରୁଥିଲେ ।
ବେଳେ ବେଳେ ଲୋକେ ଉତ୍ତ୍ୟକ୍ତ ହୋଇ ହିଂସା କାଣ୍ଡ ଘଟାଇବାର
ଉଦ୍ୟମ ହେଉଥିଲା । ମାତ୍ର ବାହାରର କଂଗ୍ରେସ ସତ୍ୟାଗ୍ରହୀ-
ମାନେ ଗ୍ରାମବାସୀଙ୍କୁ ବୁଝାଇ ସୁଝାଇ ହିଂସା କାର୍ଯ୍ୟରୁ ନିବୃତ୍ତ
କରାଉଥିଲେ । ତେଣେ ଟିକସ ଆଦାୟପାଇଁ ବନ ଘନ ପୋଲିସ
ଫୌଜ ଗାଁ ଗାଁରେ ପଶି ଘର କୋରକି କଲେ–ମାତ୍ର କୋରକି
ଜିନିଷ ବୋହିବା ପାଇଁ ଗାଁରେ ଲୋକ ମିଳିଲେ ନାହିଁ–କେତେକ
ସ୍ଥାନରେ ଟାଉନରୁ ଲୋକ ଆଣି କୋରକି କାର୍ଯ୍ୟ ଚାଲିଲା । ମୁଖ୍ୟ
ଲୋକ ଓ ବାହାରୁ ଆସିଥିବା ସତ୍ୟାଗ୍ରହୀମାନେ ଗିରଫ ହେବାପରେ
୯ ନମ୍ବର ସର୍କଲର ଆନ୍ଦୋଳନ ଧିମେଇ ଆସିଲା ।

ଶ୍ରୀଜଙ୍ଗ ୧୦ ନମ୍ବର ସର୍କଲର ଲୋକେ ଟିକସ ବନ୍ଦ
ଆନ୍ଦୋଳନରେ ପୂର୍ଣ୍ଣଭାବେ ଯୋଗ ଦେଇ ଟିକସ ଦେବା
ବନ୍ଦ କରି ଦେଲେ । ପୋଲିସ ବାରମ୍ବାର ଟିକସ ଆଦାୟ
କରିବାକୁ ଆସି ଗ୍ରାମବାସୀଙ୍କ ଏକତା ଓ ଦୃଢ଼ତା ପାଖରେ
ହାର ମାନି ଫେରିବାକୁ ବାଧ୍ୟ ହେଲେ । ଗ୍ରାମବାସୀମାନେ
ପୋଲିସ ଉପରେ ଆକ୍ରମଣ କରିଛନ୍ତି ବୋଲି ପୋଲିସ
ଆଳ ଦେଖାଇ ବିରାଟ ସଶସ୍ତ୍ର ପୁଲିସ ଫୌଜ ନେଇ ଗ୍ରାମର
ବିଶିଷ୍ଟ ବ୍ୟକ୍ତି ଶ୍ରୀ ଗୌର ମୋହନ ଦାସ, ବିଦ୍ୟାଧର ରଥ
ଓ ଅନ୍ୟ ନେତୃ ସ୍ଥାନୀୟ ବ୍ୟକ୍ତିମାନଙ୍କୁ ଗିରଫ କଲେ ।
ତାପରେ ଅକଥନୀୟ ଅତ୍ୟାଚାର ଚାଲିଲା । ପୁରୁଷ ଲୋକେ
ଗ୍ରାମ ଛାଡ଼ି ପଳାଇଗଲେ । ଘରେ କେବଳ ସ୍ତ୍ରୀ ଲୋକମାନେ
ରହିଲେ–ପୁଲିସ ସମ୍ଭ୍ରାନ୍ତ ବ୍ୟକ୍ତିଙ୍କ ଘରସବୁ ଲୁଟ କରି ବହୁ
ମୂଲ୍ୟବାନ ସାମଗ୍ରୀ ଅଳଙ୍କାର ଇତ୍ୟାଦି ବୋହି ନେଲେ ।
ସ୍ତ୍ରୀ ଲୋକଙ୍କ ଉପରେ ମଧ୍ୟ ଅମାନୁଷିକ ଅତ୍ୟାଚାର ଚାଲିଲା ।

ଏହିପରି ଭାବେ ୧୯୩୦ ସ୍ୱାଧୀନତା ସଂଗ୍ରାମର ୨ୟ
ପର୍ଯ୍ୟାୟର ଟିକସ ବନ୍ଦ ଆନ୍ଦୋଳନ ମଧ୍ୟ ମଉଳିବାକୁ
ଲାଗିଲା ।

ଲବଣ ସତ୍ୟାଗ୍ରହର ମୁଖ୍ୟ ରଣକ୍ଷେତ୍ର ଇଂଚୁଡ଼ି, ଡୁଣ୍ଡରା, ଜଙ୍ଗପୁର ଓ ଭୀମପୁର ଗ୍ରାମରେ ଏବଂ ଚୌକିଦାର ଟିକସ ବନ୍ଦ ଆନ୍ଦୋଳନର ପୀଠ ଭୂମି ଗୋପିନାଥ ପୁର ଓ ଶ୍ରୀଜଙ୍ଗ ଅଞ୍ଚଳର ଗ୍ରାମବାସୀଙ୍କ ଉପରେ ପିଟୁଣି ଟିକସ (Punitive Tax) ବା ଜୋରିମାନା ଟିକସ ବସିଲା । ଦୀର୍ଘ ଦିନର ଆନ୍ଦୋଳନରେ କ୍ଳାନ୍ତ ଗ୍ରାମବାସୀମାନେ ପିଟୁଣି ଟିକସ ବିରୋଧ କରିବାର ସାହସ ପାଇଲେ ନାହିଁ । ଅଳ୍ପ କିଛି ଲୋକ ସେ ଟିକସ ଦେଲେ । ୧୯୩୧ରେ ଗାନ୍ଧୀ-ଇରଉଇନ୍ (ବଡ଼ଲାଟ) ଚୁକ୍ତି ଫଳରେ ସତ୍ୟାଗ୍ରହୀମାନେ ଜେଲରୁ ଖଲାସ ହେଲେ । ପିଟୁଣି ଟିକସ ଫେରସ୍ତ ମିଳିଲା ଓ ଲୋକେ ଲୁଣ ମାରିବାର ଅଧିକାର ପାଇଲେ ।

କିନ୍ତୁ ଯେଉଁସବୁ ମୂଲ୍ୟବାନ ଜିନିଷପତ୍ର ଲୁଟରେ ସରକାରି କର୍ମଚାରୀଙ୍କ ଘରକୁ ଯାଇଥିଲା–ତାହା ଲୋକେ ଫେରି ପାଇଲେ ନାହିଁ ।

ଏହିପରି ଭାବେ ୧୯୩୦ର ସ୍ୱାଧୀନତା ସଂଗ୍ରାମର ପରିସମାପ୍ତି ହେଲା ।

ପରବର୍ତ୍ତୀ କାଳର ଅଧିକ ଗୁରୁତ୍ୱପୂର୍ଣ୍ଣ ସଂଗ୍ରାମ ପାଇଁ କଂଗ୍ରେସ ଓ ଦେଶବାସୀ ପ୍ରସ୍ତୁତ ହେବାକୁ ଲାଗିଲେ ।

ମାର୍ଫତ୍ ଶ୍ରୀମତୀ ଯଶୋଧାରା ଦାସ
ଏଲ୍–୧୧, ସିଭିଲ୍ ଟାଉନ୍‌ସିପ୍,
ରାଉରକେଲା–୪, ସୁନ୍ଦରଗଡ଼ ।



ତାନ୍‌ଜାନିଆ ଶାସକ ଦଳର ଅଧ୍ୟକ୍ଷଙ୍କ ସହିତ ପ୍ରଧାନମନ୍ତ୍ରୀ...

# ଏବେ ମୋର ଯାତ୍ରା ମନେ ପଡ଼ୁଛି

ଶ୍ରୀ କୃତ୍ତିବାସ ପ୍ରଧାନ

ପ୍ରାୟ ୧୯୧୧/୧୨ ମସିହାର କଥା । ଚଟଶାଳୀରେ ପଢୁଥିବାବେଳେ "ପଞ୍ଚମ ଜର୍ଜଙ୍କର ଅଭିଷେକ ଉତ୍ସବ" ଭାରତର ସ୍ଥାନେସ୍ଥାନରେ ପାଳିତ ହେଉଥାଏ । ପଞ୍ଚମ ଜର୍ଜଙ୍କ ଫଟୋ ଉପରେ ଫୁଲମାଳ ଦେଇ "ଭାରତ ସମ୍ରାଟ ପଞ୍ଚମ ଜର୍ଜଙ୍କି ଜୟ" କହି କହି ଗ୍ରାମ ସାରା ବୁଲୁବୁଲୁ ତାଙ୍କ ଫଟୋ ଦେଖି ଚଟଶାଳୀ ଅଧ୍ୟକ୍ଷଙ୍କୁ ପଚାରିଲି ଏ କ'ଣ ସମ୍ରାଟ ? କାରଣ ତାଙ୍କ ବେଶଭୂଷା ପ୍ରଥମେ ମୋର ଦୃଷ୍ଟି ଆକର୍ଷଣ କରିଥିଲା ।

ଚଟଶାଳୀ 'ଅବଧାନ' ଚିହ୍ନ ଓ ଜାଣିବା ବ୍ୟକ୍ତିଥିବାରୁ ସମ୍ରାଟ ଆମ ଦେଶର ନୁହନ୍ତି—ସେମାନେ ଅନେକ ଦୂରରୁ ଆସି ଅଛନ୍ତି—ଏତିକି ଶୁଣି ମୋ ମନରେ ଘୃଣା ଜାତ ହେଲା ।

ଏହି ପରିପ୍ରେକ୍ଷୀରେ କ୍ରମେ ବୟସ ବଢ଼ିବା ସଙ୍ଗେ ସଙ୍ଗେ ଭାରତ ଇତିହାସ ପଢ଼ି ଜାଣିଲି ଯେ ଚଟଶାଳୀ ବେଳର ସମ୍ରାଟ ବନାମ ଇଂରେଜ ଜାତି ଆମମାନଙ୍କର ଦୁର୍ବଳତାର ସୁଯୋଗ ନେଇ ଆମ ଦେଶକୁ ଶାସନ କରୁଛନ୍ତି ।

ବାଳରୁ ରଙ୍ଗା ଅଙ୍କୁର ଭଳି ବିଦେଶୀ ଇଂରେଜ ଶାସକମାନଙ୍କ ଉପରେ ମୋର ଘୃଣା ବଢୁଥାଏ ।

ଏତିକି ବେଳେ ମହାତ୍ମା ଗାନ୍ଧିଙ୍କ 'ସ୍ୱରାଜ' ଶବ୍ଦ ପଣ୍ଡିତ ଗୋପବନ୍ଧୁଙ୍କ ସମାଜ ପତ୍ରିକାରୁ ପଢ଼ି ସହଯୋଗୀ ତଥା ଶିକ୍ଷକମାନେ ଆଲୋଚନା କରୁଥାନ୍ତି ।

ନିରନ୍ତର ଢେଙ୍କାନାଳ ଉଚ୍ଚ . ବିଦ୍ୟାଳୟର ପ୍ରଧାନ ଶିକ୍ଷକ ଏମାନେ ଦେଇଥିଲା ଦର ଏପରି ଚତୁରତାର ସହିତ କଥା କହନ୍ତି ଯେପରି ସମସ୍ତେ ଗାନ୍ଧିଜୀଙ୍କୁ ସାହାଯ୍ୟ କରିବେ ।

ସେତେବେଳେ ଢେଙ୍କାନାଳ ଗଡ଼ଜାତର ରାଜା ନାବାଳକ ଥିବାରୁ ଇଂରେଜମାନଙ୍କ କୋର୍ଟ ପଲିଟିକାଲ ଏଜେଣ୍ଟଙ୍କ ଦ୍ୱାରା ରାଜ୍ୟ ଶାସିତ ହେଉଥାଏ ।

୧୯୨୧ ମସିହା ଅସହଯୋଗ ଆନ୍ଦୋଳନର ସର୍ବମୟ କର୍ତ୍ତା ମହାତ୍ମା ଗାନ୍ଧୀ କହିଲେ ଏକା ଦିନକେ ସ୍ୱରାଜ୍ୟ ହାସଲ ହେବ ଯଦି ସମସ୍ତ ବିଦ୍ୟାଳୟକୁ ଛାତ୍ର ଓ ଶିକ୍ଷକ ବର୍ଜନ କରିବେ । ତା ସହିତ ଓକିଲମାନେ ଓ ସରକାରୀ କର୍ମଚାରୀମାନେ କଚେରୀ ବର୍ଜନ କରିବେ ।

ପ୍ରଥମେ ଏ ଡାକରା ଛାତ୍ର ସମାଜ ଓ ଓକିଲମାନେ ଗ୍ରହଣ କଲେ ।

ଢେଙ୍କାନାଳ ଉଚ୍ଚ ବିଦ୍ୟାଳୟର ଯେଉଁମାନେ ଶ୍ରେଣୀରେ ପ୍ରଥମ ସ୍ଥାନ ଅଧିକାର କରିଥିଲେ ସେମାନେ ଓ ତାଙ୍କ ସହ ଅନ୍ୟମାନେ ଶ୍ରେଣୀ ବର୍ଜନ କଲୁ ।

ସେତେବେଳେ ଢେଙ୍କାନାଳର କଣ୍ଟ୍ରାକ୍ଟର ଶ୍ରୀ ପଞ୍ଚଲାଲ ଆମମାନଙ୍କୁ ପାଥେୟ ଦେଇ କଟକ ସ୍ୱରାଜ୍ୟ ଆଶ୍ରମକୁ ପଠାଇବାର ବ୍ୟବସ୍ଥା କଲେ । ସେତେବେଳକୁ ଢେଙ୍କାନାଳ ବାଟେ ତାଳଚେର ଟ୍ରେନ୍‌ଲାଇନ ନଥିଲା କିମ୍ବା ବସ କିପରି କେହି ଜାଣି ନଥିଲେ । ବଳଦ ଗାଡ଼ିରେ ଲୋକେ ଚଉଦ୍ୱାର ଯାଇ ମହାନଦୀକୁ ଡଙ୍ଗାରେ ପାରହୋଇ କଟକ ଯାଉଥିଲେ । ଆମେ ସ୍କୁଲ ଛାତ୍ରମାନେ ଏହି ପନ୍ଥାରେ କଟକ ସ୍ୱରାଜ୍ୟ ଆଶ୍ରମରେ ପହଞ୍ଚିଲୁ ।

ମୋର ଆଶ୍ରମ ଶବ୍ଦ ପ୍ରତି ମମତା ପୂର୍ବରୁ ଥିଲା । କାରଣ ରାମାୟଣର ସ୍ରଷ୍ଟା ବାଲ୍ମୀକି ମହର୍ଷିଙ୍କ ଆଶ୍ରମରେ ସତୀଶିରୋମଣି ସୀତାଦେବୀ ଆଶ୍ରୟ ଗ୍ରହଣ କରି ଯମଜ ପୁତ୍ର ଦ୍ୱୟଙ୍କୁ ପୃଥିବୀର ଶ୍ରେଷ୍ଠ ବୀର ରୂପେ ଗଢ଼ି ପାରିଥିଲେ ।

କଟକ ସ୍ୱରାଜ୍ୟ ଆଶ୍ରମରେ ନିୟମ ଏପରିଥିଲା ଯେ ଆଶ୍ରମବାସୀମାନେ ବ୍ରାହ୍ମ ମୁହୂର୍ତ୍ତରେ ବିଛଣାଛାଡ଼ି ପ୍ରାର୍ଥନା କରିବେ । ତାପରେ ଶୌଚାଦି କାର୍ଯ୍ୟ ଶେଷ କରି ପୁଣି ପ୍ରାର୍ଥନା ପରେ ପୂର୍ବନିର୍ଦ୍ଧାରିତ ନିର୍ଦ୍ଦିଷ୍ଟ କାର୍ଯ୍ୟକ୍ରମ ଅନୁସାରେ ପ୍ରତ୍ୟେକ ପ୍ରତ୍ୟେକଙ୍କର ଦାୟିତ୍ୱ ସୁସ୍ପଷ୍ଟରୂପେ ପାଳନ କରି ଘ ୧୧ ବେଳକୁ ଆଶ୍ରମ ପ୍ରତ୍ୟାବର୍ତ୍ତନ କରିବେ । ଘ ୧୨ ମଧ୍ୟରେ ଭୋଜନ ଶେଷକରି ଘ ୧ ରୁ ଘ ୨ ଯାଏଁ ଅନ୍ୟାନ୍ୟ ସୂତା କଟାରେ ସମୟ କଟାଇବେ । ତାପରେ ଘ ୫ ଯାଏଁ ଗୋଟିମତେ କର୍ତ୍ତବ୍ୟ ସଂପାଦନ । ସଂଧ୍ୟା ଛଅଟାରୁ ରାତି ନ'ଟା ଯାଏଁ ଗୋଟିମତେ ଭଳି ସୂତା କଟା, ଲୁଗାବୁଣା, ଗ୍ରାମ ସଫେଇ, ଗ୍ରାମପଞ୍ଚାୟତ, ଗ୍ରାମରାସ୍ତା ନିର୍ମାଣ, ପୁଷ୍କରଣୀ ସଫା, ଟ୍ରେଞ୍ଚପାଇଖାନା ନିର୍ମାଣ ସର୍ବୋପରି ମହାତ୍ମାଗାନ୍ଧୀଙ୍କ ଏକାଦଶ ବ୍ରତ, ଗୀତାପାଠ ଓ ଭଜନର ଉପକାରିତା ସମ୍ପର୍କରେ ଆଲୋଚନା ।

ବିଶେଷଭାବେ ପିକେଟିଂ, ନିଶା ନିବାରଣ, ସତ୍ୟାଗ୍ରହ, ବିଦେଶୀ ବର୍ଜନ ବିଷୟରେ ଶିକ୍ଷା ଦିଆଯାଉଥିଲା ।

ଆଶ୍ରମରେ ପ୍ରତ୍ୟେକ ପୃଥକ୍ ଭାବେ ଖାଦ୍ୟ ଗ୍ରହଣ କରିବେ ଓ ପୃଥକ ପୃଥକ ଶଯ୍ୟାରେ ଶୋଇବେ ।

ଆଶ୍ରମରେ ଏକ ମାସ ତାଲିମ୍ ପରେ ଶ୍ରୀ ଅଲେଖ ପ୍ରସାଦ ଦାସଙ୍କ ନେତୃତ୍ୱରେ ପାଞ୍ଚ ଜଣ କଟକ ଜିଲ୍ଲାର ଧର୍ମଶାଳା ଥାନାରେ ଅସହଯୋଗ ଆନ୍ଦୋଳନର ବାର୍ତ୍ତା ପ୍ରଚାର, କଂଗ୍ରେସ ସଭ୍ୟ ଗ୍ରହଣ, ସୂତାକଟା, ଖଦଡ ପ୍ରଚାର, ରାସ୍ତା ସଫେଇ ପ୍ରଭୃତି କାର୍ଯ୍ୟ ଦ୍ୱାରା ଜନସାଧାରଣଙ୍କୁ ଇଂରେଜମାନଙ୍କ ଶୋଷଣ ବିରୁଦ୍ଧରେ ସଚେତନ କରାଇବା ହେଲା । ଏଥିରେ ସଦ୍ୟ କଲେଜ ବର୍ଜନ କରିଥିବା 'ସିଂଘାରୁ ଶାସନ' ନିବାସୀ ନିତ୍ୟାନନ୍ଦ ରଥ ଆମମାନଙ୍କୁ ତାଙ୍କ ଘରେ ରଖାଇ ସମସ୍ତ କାର୍ଯ୍ୟରେ ସାହାଯ୍ୟ କଲେ ଏପରିକି ତାଙ୍କ ବୃଦ୍ଧାମାତା ଆମମାନଙ୍କୁ ନିଜର ପୁତ୍ରଭଳି ବ୍ୟବହାର ଦେଖାଇ ପୁରାଣ ବର୍ଣ୍ଣିତ ଆଶ୍ରମ ବର୍ତ୍ତୀରୂପେ ନିଜକୁ ପ୍ରତିଷ୍ଠା କରିଲେ ।

ଥରେ ଗଡମଧୁପୁର ଷ୍ଟେସନ ନିକଟରେ ସଭାକରୁଥିଲା ବେଳେ ଧର୍ମଶାଳା ପୋଲିସ ଆସି ଶ୍ରୀ ଅଲେଖ ପ୍ରସାଦ ଦାସଙ୍କ ସହ ମତେ ସଂଧ୍ୟା ୬ଟାରୁ ରାତ୍ରି ଘ ୧୨ ଯାଏଁ ଅଟକାଇ ରଖିଲେ । ଏଥିରେ ଆଖପାଖ ଗ୍ରାମର ପ୍ରାୟ ୨୦୦୦ ଲୋକ ଉତ୍ୟକ୍ତ ହୋଇ ଦାବୀ କଲେ ଯେ ଆମଙ୍କୁ ବୃଥାରେ ଅଟକାଇବାର କାରଣ କଣ ? ତାପରେ ପୋଲିସ ସେଠାରେ ଆମର ଖାଇବା ପାଇଁ ବ୍ୟବସ୍ଥା କରି, ନିର୍ଜନରେ କହିଲେ, "ତୁମାନ୍ୟ ଜଣ ଆମର ନୁହେଁ ? ସ୍ୱକେରୀ କରିଛୁ ଯେତେବେଳେ ଯେତେ କିଛି କରିବାକୁ ହେବ । ଆପଣମାନେ ଯାଆନ୍ତୁ– ମନ ଦେଇ ଦେଶ ପାଇଁ କାମ କରନ୍ତୁ ।"

ବର୍ଷଦିନ ଆସିଯିବାରୁ ଆଶ୍ରମକୁ ଫେରିଆସିଲୁ । ଆଶ୍ରମର କର୍ତ୍ତୃପକ୍ଷ କହିଲେ, "ବର୍ଷଦିନରେ କିଛି ନୂତନ କାର୍ଯ୍ୟ କରିବା ପୂର୍ବରୁ ନିଜ ନିଜ ଘରକୁ ଯାଇ ଆତ୍ମୀୟ ସ୍ୱଜନମାନଙ୍କୁ ଦେଖିଆସ ।" କଟକ ଜିଲ୍ଲା ମାଜିଷ୍ଟ୍ରେଟଙ୍କ ଲେଖା ଅନୁସାରେ ଢେଙ୍କାନାଳ ଷ୍ଟେଟ ସୁପରିଟେଣ୍ଡେଣ୍ଟ ମୋର ଅଭିଭାବକଙ୍କୁ ନୋଟିସ ଦେଲେ ଯେ ତମ ନାବାଳକ ପୁତ୍ରକୁ ଆନ୍ଦୋଳନରୁ ଫେରାଇ ନ ଆଣିଲେ ଜମିସବୁ ବାଜ୍ୟାପ୍ତି କରାଯିବ ଓ ତାଙ୍କ ସର୍ବରାକାରୀ ମୌଜାରୁ ଉଚ୍ଛେଦ କରାଯିବ । ଘରର ମୁରବ୍ବି ଓ ଅନ୍ୟାନ୍ୟ ଦାଦା ଜେଜେବାପା ପ୍ରଭୃତି ମନ ଦୁଃଖରେ କହିଲେ ଘରେ ରହି ଜମି ବୁଝି ମଧ୍ୟ ମହାତ୍ମା ଗାନ୍ଧୀଙ୍କ କାମ ତୁଲାଇ ହେବ । ନହେଲେ ଆମେ ଏଣିକି ଜମି ବିନା ଖାଇବା କ'ଣ ?

ଏହିକି ବେଳେ ମହାତ୍ମା ଗାନ୍ଧୀ ହରିଜନ ପତ୍ରିକାରେ ଲେଖିଲେ ଗଡଜାତ ବିଷୟରେ । ବର୍ତ୍ତମାନ କାର୍ଯ୍ୟକ୍ରମରେ ଗଡ଼ଜାତକୁ ନ ରଖିବା ଭଲ । ବ୍ରିଟିଶ ଶାସିତ ଅଞ୍ଚଳ ଯଦି ସଚେତନ ହୁଏ ତେବେ ମୁଷ୍ଟିମେୟ ଗଡଜାତ କଣ ପଛେଇଯିବ ? ସତକୁ ସତ ଗଡ଼ଜାତ ରାଜାମାନେ ୧୯୩୬ ବେଳୁ କଂଗ୍ରେସ କର୍ତ୍ତୃପକ୍ଷଙ୍କ ସହିତ ସଂପର୍କ ରଖି କିପରି ଭବିଷ୍ୟତରେ ଆମେମାନେ ଚଳିବୁ ତାର ବ୍ୟବସ୍ଥା କଲେ ।

ଗଡଜାତ ଆନ୍ଦୋଳନ କିପରି ଭାବେ ଆମ ଓଡ଼ିଶାରେ ସର୍ବପ୍ରଥମେ ଢେଙ୍କାନାଳରେ ଆରମ୍ଭ ହେଲା ତାର କାରଣ ଅନ୍ବେଷଣରୁ ତେ ନକହିଲେ ଏବର ସ୍ୱାଧୀନ ଭାରତରେ, ସ୍ୱାଧୀନ ଜଳବାୟୁରେ ବର୍ଦ୍ଧିତ ବର୍ତ୍ତମାନର ଜନ ସମାଜ କିଛି ଜାଣି ପାରିବେ ନାହିଁ ।

୧୯୨୫ ମସିହା ଢେଙ୍କାନାଳର ରାଜା ୯ଶଙ୍କର ପ୍ରତାପ ମହାନ୍ଦ୍ର ବାହାଦୁର । ତାଙ୍କୁ ସେହି ବର୍ଷ ରାଜ୍ୟ ଶାସନର ପୂର୍ଣ୍ଣ ଦାୟିତ୍ୱ ମିଳିଲା । ଶାସନ କ୍ଷମତା ପାଇବା ପରେ କେଉଁ ଉପାୟରେ ଷ୍ଟେଟ ଟ୍ରେଜେରୀକୁ ଟଙ୍କା ନ ଯାଇ ସବୁ ନିଜ ପକେଟକୁ ଯିବ ସେ ବିଷୟରେ ପରାମର୍ଶ ଦେବାକୁ ସେତେବେଳେ ତାଙ୍କ ନିକଟରେ ଲୋକର ଅଭାବ ରହିଲା ନାହିଁ ।

ସେତେବେଳେ ପ୍ରଜାମାନେ ସୁଵଳ ବିକିଲେ କେବଳ ନିଜର ତେଲ, ଲୁଣ, ଲୁଗା, ଗାମୁଛା କିଣିବାକୁ ପଇସା ପାଉଥାଆନ୍ତି । ସେତିକିବେଳେ ନିୟମ ହେଲା ଢେଙ୍କାନାଳରୁ ସୁଵଳ ବାହାରକୁ ଯିବ ନାହିଁ । ବନ୍ଧୁ ସୁଵଳ କେହି ୬୪ ସେର ବା ୬୫ ସେର ବାହାରକୁ ବିକିବାକୁ ନେଲେ ଟ ୧.୨୫ ମା'ସୁଲ ବଟସରକୁ ଦେଇ ଖଣ୍ଡେ ହାତ ଲେଖା ପତ୍ର ପାଉଥିଲା ।

ସେତେବେଳେ ତ ରାସ୍ତା ଘାଟ ନଥିଲା । କେବଳ ତାଳଚେର ଟ୍ରେନ, ବ୍ରାହ୍ମଣୀ ନଦୀରେ ନାହା ଓ କଟକ–ସମ୍ବଲପୁର ରାସ୍ତାରେ ବଳଦଗାଡ଼ି ଦ୍ୱାରା କାର୍ଯ୍ୟ ଚଳୁଥିଲା । ଠିକଣା କାଳରେ ରାଜଦରବାର ତରଫରୁ ସବଳ ସତାପା ଜଗୁଆଳି ମୁତୟନ କରାଯାଉଥିଲା । ସେତେବେଳେ ପ୍ରାୟ ଲୋକଙ୍କର ଚଳପ୍ରଚଳନ ପାଇଁ ନିତାନ୍ତ କମ୍‌ରେ ବର୍ଷକୁ ସାଢେ ସାତ ଲକ୍ଷ ଟଙ୍କାର ସୁଵଳ ବିକିବାକୁ ହେଉଥିଲା । ଏକଲକ୍ଷ ବସ୍ତା ପାଇଁ ୧ଲକ୍ଷ ପଚିଶ ହଜାର ଟଙ୍କା ସୁଵଳ ଛାଡରୁ ବାହାର ଆୟ ହୁଏ । ଏହା ଟ୍ରେଜେରୀକୁ ଯାଏ ନାହିଁ ।

ସେତେବେଳେ ଚାଳିଶରୁ ପଚାଶ ହଜାର ପରିବାର ଢେଙ୍କାନାଳରେ ବାସ କରୁଥିଲେ । ଅନ୍ତତଃ ପ୍ରତ୍ୟେକ ପରିବାରରୁ ଜଣେ ଲେଖାଏଁ ବାର୍ଷିକ ଛଅ ମାସ ନିଜ ଘରୁ ଖାଇ ବେଠି କରନ୍ତି । ଅନେକ ଗେରୁଆ ଲୁଗା ଓ ଝାମ୍ପି ମୁଣ୍ଡାଇ କଟକରେ ଶ୍ରମିକ କାମ କରି ଚଳେଇ ନିଅନ୍ତି । ଏହି ଶ୍ରମିକମାନଙ୍କଯୋଗୁଁ ସେତେବେଳେ କଟକ ସହର ଗଢ଼ି ଉଠିଥିଲା ବୋଲି କୁହାଯାଏ ।

ଏଇ ସବୁ କାରଣରୁ ଲୋକେ ଉତ୍ୟକ୍ତ ହୋଇ ଥାଆନ୍ତି । ଖରାଦିନେ ଜଙ୍ଗଲରେ ଡାଳକୁ ଡାଳ ଘସି ହୋଇ ନିଆଁ ବାହାରିବା ଦ୍ୱାରା ଜଙ୍ଗଲ ପୋଡ଼ି ଭଳି ଲୋକମାନେ ପ୍ରଜାମଣ୍ଡଳ ଗଠନମାତ୍ରେ ସହସ୍ର ସର୍ପର ଫୁତ୍କାର ଭଳି ମୁଖର ହୋଇ ଉଠିଲେ ।

୧୯୨୫–୩୭ ମଧ୍ୟରେ ଯେତେ କୁଳାଙ୍ଗ ଗୁଣ୍ଡାମାନଙ୍କ ଦ୍ୱାରା ପ୍ରଜାମାନଙ୍କୁ କୁହାଇଥିଲେ ସେ ସବୁର ଚକ୍ରବୃଦ୍ଧି ହାରରେ ଅସଲ ସୁଧ ଜନସାଧାରଣ ହାଟ ବଜାରରେ ପରିଶୋଧ କଲେ ।

ଢେଙ୍କାନାଳ ପ୍ରଜାମଣ୍ଡଳ ଗଠନ ହେଲା ୧୯୩୮ ମସିହା ଜୁଲାଇ ମାସରେ 'ପରଜଙ୍ଗଠାରେ । ସେହି ଅଞ୍ଚଳର ଜଣାଶୁଣା ବ୍ୟକ୍ତିମାନଙ୍କ ସହ କଟକର ନବକୃଷ୍ଣ ଚୌଧୁରୀ, ଶ୍ରୀମତୀ ମାଳତୀ ଚୌଧୁରୀ, ଶ୍ରୀ ସାରଙ୍ଗଧର ଦାଶ ଏକତ୍ର ହେଲେ ଏବଂ ଶ୍ରୀ ହରମୋହନ ପଟ୍ଟନାୟକଙ୍କୁ ସଭାପତି ଓ ଶ୍ରୀ ଲକ୍ଷ୍ମୀଧର ସାହୁଙ୍କୁ ସଂପାଦକ ଭାବେ ମନୋନୀତ କଲେ । ଏଥିରେ ଢେଙ୍କାନାଳର ସବୁ ଅଞ୍ଚଳର ଲୋକ ନଥିବାରୁ ସ୍ଥିର ହେଲା ଯେ ସେହି ବର୍ଷ ସେପ୍ଟେମ୍ବର ଏକ ତାରିଖରେ ଜେନାପୁର (କଟକ ଜିଲ୍ଲା) ଠାରେ ଢେଙ୍କାନାଳର ସବୁ ଅଞ୍ଚଳର ଲୋକଙ୍କୁ ନେଇ ଏକ ସମାବେଶ ହେବ । ଷାଠିଏ ହଜାର 'ଢେଙ୍କାନାଳବାସୀଙ୍କ ଉପସ୍ଥିତିରେ ପ୍ରବଳ ଉତ୍ସାହରେ ଏ ସମାବେଶ ହେଲା ।

ପୂର୍ବୋକ୍ତ ସଭାପତି, ସମ୍ପାଦକ ଆଉ ସମୁଦାୟ ଢେଙ୍କାନାଳରୁ ଆଉ ୯୮ ଜଣଙ୍କୁ ନେଇ ପ୍ରଜାମଣ୍ଡଳ ଗଠନ କରାଗଲା । ୧୫ ଜଣଙ୍କୁ ନେଇ କାର୍ଯ୍ୟକାରୀ କମିଟି ଗଠିତ ହେଲା ।

ସୌଭାଗ୍ୟ ବଶତଃ ଲେଖକଙ୍କୁ ସେଥିରେ ନିଆଯାଇଥିଲା । କଟକରୁ ଚୌଧୁରୀ ଦମ୍ପତି, ଶ୍ରୀ ଦାସ ଓ ଶ୍ରୀ ଭଗବତୀ ଚରଣ ପାଣିଗ୍ରାହୀଙ୍କୁ ଉପଦେଷ୍ଟା ଭାବେ ଗ୍ରହଣ କରାଗଲା ।

ଦାବୀପତ୍ର ରାଜାଙ୍କୁ ଦିଆଗଲା । ପାଲିସ ପ୍ରଭାବ ରାଜାଙ୍କ ଆଡୁ ଆସିଥିଲେ ମଧ୍ୟ ଆନ୍ତରିକତାର ଅଭାବ ଯୋଗୁଁ ତାହା ସଫଳ ହେଲା ନାହିଁ ।

କୌତୁହଳର କଥା ରାଜା ତା ୧୧.୯.୩୮ ରିଖରେ ଚାଏ ଭାଇଙ୍କ ଛଅ ଏକୋଇଶ ପାଇଁ ଆମ ପ୍ରଜାମଣ୍ଡଳ କର୍ମକର୍ତ୍ତାମାନଙ୍କୁ ନିମନ୍ତ୍ରଣ କରି ସେହି ସଂଧ୍ୟାରେ ବାରଜଣଙ୍କୁ ଗିରଫ କଲେ । ଏଥିରେ ଢେଙ୍କାନାଳ ଜନସାଧାରଣ ଉତ୍ତ୍ୟକ୍ତ ହୋଇ ତା ୧୨.୯.୩୮ ଦିନ ମ ୧୦ଘଣ୍ଟା ମଧ୍ୟରେ ପ୍ରାୟ ୭୫ ହଜାର ଲୋକ ଅଳସୁଆ ହାଟ ମୋଟାରେ ଏକତ୍ର ହେଲେ । ଟାଉନବାସୀ ସ୍ୱେଚ୍ଛାରେ ଶଗଡରେ ଭାତ ନେଇ ଲୋକଙ୍କୁ ଖାଇବାକୁ ଦେଲେ । ଏ ସଂବାଦ ରାଜାଙ୍କ କାନକୁ ଗଲା । ପୋଲିସ

ଫୌଜ ପଠାଇ ହାତୀ, ଘୋଡାରେ ସବାର ହୋଇ, ଲୋକଙ୍କୁ ଡରାଇ, ଘଉଡାଇ ଦେବା ସ୍ୱପ୍ନରେ ପରିଣତ ହେଲା । ଲୋକଙ୍କ ତାଡି ମାଡରେ ହାତୀ, ଘୋଡା, ମାହୁନ୍ତ ଓ ଘୋଡା ସବାରଙ୍କ ଅବାଧ୍ୟ ହୋଇ ପଳାଇ ଆସିଲେ ।

ତା ୧୧.୯.୩୮ ରାତ୍ରି ଘ ୧ ୧ଣ୍ଟା ବେଳେ ଆମମାନଙ୍କୁ ଜେଲରୁ ଛାଡ଼ି ଦେଲେ ଏବଂ ଅନୁରୋଧ କଲେ ଲୋକମାନଙ୍କୁ ବୁଝାଇ ଘରକୁ ପଠାଇ ଦିଅ । ଆମେ କଥାବର୍ତ୍ତା ହୋଇ ଦୁଇ ପକ୍ଷର ମଙ୍ଗଳ ହେଲା ଭଳି ବ୍ୟବସ୍ଥା କରିଥିଲୁ ।

ପ୍ରଜାମଣ୍ଡଳ ଓ ଜନସାଧାରଣ ସେମାନଙ୍କ ଦାବୀରେ ଅଟଳ ରହିବା ଦେଖି ଶେଷକୁ ସଭାପତି ଶ୍ରୀ ହରମୋହନ ପଟ୍ଟନାୟକଙ୍କୁ ରାଜା ବାରମ୍ବାର ଡକାଇ କଥାବାର୍ତ୍ତା ହେବାରୁ ଜନସାଧାରଣଙ୍କ ମନରେ ଏଥିରେ ସନ୍ଦେହ ଜାତ ହେଲା । ତେଣୁ ସଭାପତି ହରମୋହନ ବାବୁ ଓ ସମ୍ପାଦକ ଲକ୍ଷ୍ମୀଧର ବାବୁ ତାଙ୍କ ଦାୟିତ୍ୱରୁ ଇସ୍ତଫା ଦେଲେ ।

ପ୍ରଜାମଣ୍ଡଳ କେନ୍ଦ୍ର କମିଟି ଶ୍ରୀ ମହେଶ୍ୱର ସୁବାହୁସିଂହ, ଶ୍ରୀ ବ୍ରଜକିଶୋର ଧଳ ଓ ଲେଖକଙ୍କୁ ଯଥାକ୍ରମେ ସଭାପତି, ଉପସଭାପତି ଓ ସମ୍ପାଦକ ନିର୍ବାଚିତ କଲେ ।

ଢେଙ୍କାନାଳରେ ପ୍ରଜା ଶାସନ କିପରି ପ୍ରତିଷ୍ଠିତ ହୋଇ ପାରିବ ତାହାର ଉପାୟ ସ୍ଥିର କରିବା ପାଇଁ ଏହି ତିନିଜଣଙ୍କୁ କେନ୍ଦ୍ର କମିଟି ୧୯୪୭ ମସିହାରେ କ୍ଷମତା ଦେଲା । ଏହି ପ୍ରସ୍ତାବକୁ ଷ୍ଟେଟର ପ୍ରାୟ ସମସ୍ତ ଓକିଲ ବୃନ୍ଦ ସମର୍ଥନ କରିଥିଲେ । ଓକିଲମାନଙ୍କ ମଧ୍ୟରୁ ବର୍ତ୍ତମାନ କେବଳ ଶ୍ରୀ ସୁରେନ୍ଦ୍ର ମୋହନ ପଟ୍ଟନାୟକ ଜୀବିତ ଅଛନ୍ତି ।

ଶ୍ରୀ ସୁବାହୁସିଂହ ଥିଲେ ଜଣେ ସାଧୁ, ସରଳ ଲୋକ ଓ ଅହିଂସାର ପ୍ରତିମୂର୍ତ୍ତି । ତାଙ୍କୁ ନେଇ ସଂଗ୍ରାମ ଚଳାଇବା କଷ୍ଟ । ତେଣୁ ଉପସଭାପତି ଶ୍ରୀ ଧଳ ଓ ଏହି ଲେଖକ ମିଳିତ ଭାବରେ ନିଷ୍ପତ୍ତି ଗ୍ରହଣ କରି ସଭାପତିଙ୍କ ଅନୁମୋଦନ ନେଇ କାର୍ଯ୍ୟ କରୁଥିଲୁ ।

ତା ୧୫.୮.୪୭ ରେ ଭାରତ ସ୍ୱାଧୀନତା ପାଇଥିଲେ ମଧ୍ୟ ଗଡଜାତ ଗୁଡ଼ିକ ଅଲଗାହୋଇ ରହିଥିଲେ ତା ୭.୧୨.୪୭ ରାତ୍ରି ଘ ୩ ବେଳେ ଷ୍ଟେଟର ସବୁ ଥାନା, କଚେରୀ, ଟ୍ରେଜେରୀ ଏକ ସମୟରେ ଦଖଲ କରାଯିବ ବୋଲି ନିଷ୍ପତ୍ତି ନିଆଗଲା । ଏଣୁ ନଭେମ୍ବର ମାସ ଆରମ୍ଭରୁ ପ୍ରତ୍ୟେକ ଗ୍ରାମରୁ ବଛା ବଛା ସ୍ୱେଚ୍ଛା ସେବକଙ୍କୁ ନେଇ ତାଲିମ ଦିଆଗଲା । ଯେଉଁମାନେ ତାଲିମ ଦେବେ ଓ ପାଇବେ ସେମାନେ କିଛି ଜାଣିବେ ନାହିଁ । ସେମାନେ କେବଳ ଜାଣିବେ ଗ୍ରାମ ସଫେଇ, ଦୁର୍ନୀତି ନିବାରଣ 'କାର୍ଯ୍ୟକ୍ରମଗୁଡ଼ିକ' ଓ ଜାତୀୟତା ବିଷୟରେ ଅଧିକରୁ ଅଧିକ ଉଦ୍‌ବୁଦ୍ଧ ହେବା କାର୍ଯ୍ୟକ୍ରମ ।

ନଭେମ୍ବର ୩ୟ ସପ୍ତାହରେ ଯେଉଁଠି ଯେଉଁଠି ସରକାରୀ ସଂସ୍ଥା ଅଛି ତାର ଏକ ମାଇଲ ମଧ୍ୟରେ ଯେ କୌଣସି ଗ୍ରାମରେ କ୍ୟାମ୍ପ ରଖି ସବୁ ଗ୍ରାମରୁ ମାର୍ଚ୍ଚ କରିବା । ଜାତୀୟ ପତାକା ସହିତ ଶୋଭାଯାତ୍ରା ପରିଚାଳନା କରିବା, ସତ୍ୟାଗ୍ରହ କାହିଁକି ଓ କିପରି ଏକଥା ଶିକ୍ଷା ଦେବା— ଏହିଭଳି ବହୁତ କ୍ୟାମ୍ପ ସ୍ଥିରୁ ରଖାଗଲା । ପ୍ରତ୍ୟେକ ପରିବାରରୁ ଜଣେ ଲେଖାଏଁ ଏଥିରେ ଯୋଗ ଦେବାକୁ ପ୍ରଚାରପତ୍ର ମାଧ୍ୟମରେ ଲୋକମାନଙ୍କୁ ବୁଝାଯାଉଥାଏ ।

ଅସଲ କାର୍ଯ୍ୟକ୍ରମ କାହାକୁ ଜଣାଇ ଦିଆଯାଉ ନଥାଏ । କଥାଛଳରେ ଘରେ ବସି ଗପ କଲା ଭଳି କିପରି ଦଖଲ କରାଯାଏ ତାହା ଉତ୍ତମ ରୂପେ ଶୁଣାଇ ଦିଆଯାଏ ।

ଏହି କାର୍ଯ୍ୟକ୍ରମ ଗ୍ରହଣ ପୂର୍ବରୁ କେନ୍ଦ୍ର ଥାନାରେ କେତେ ସିପାହୀ କେତେ ବନ୍ଧୁକ, ଅଫିସର, ସେମାନେ କେଉଁଠିକାର ସବୁ ତଥ୍ୟ ସଂଗ୍ରହ କରାଯାଇଥାଏ ।

ଅସଲ କଥା ହେଲା ପୂର୍ବ ଗଡଜାତ ଫୋର୍ସଙ୍କ ହେଡକ୍ୱାଟର୍ସ ଥିଲା ଢେଙ୍କାନାଳରେ । ସେତେବେଳେ ଏଥିରେ ଯେଉଁ ରେଜିମେଣ୍ଟ ଥିଲା ତାର ଅଧିକାଂଶ ଲୋକ ଉତ୍ତର-ପଶ୍ଚିମ ସୀମାନ୍ତ ପ୍ରଦେଶର ଥିଲେ ।

ଉତ୍ତର-ପଶ୍ଚିମ ସୀମାନ୍ତ ପ୍ରଦେଶର ଶ୍ରୀ ଗଫୁର ଖାଁ (ବର୍ତ୍ତମାନ ମଧ୍ୟ ଜୀବିତ) ସୀମାନ୍ତ ଗାନ୍ଧୀ ହିସାବରେ ପରିଚିତ । ପ୍ରଜାମଣ୍ଡଳ ଅଫିସରେ ସେତେବେଳର ଭାରତର ସମସ୍ତ ନେତାମାନଙ୍କ ଫଟୋ ଥାଏ । ପଶ୍ଚିମ ପଞ୍ଜାବରୁ ହିନ୍ଦୁ, ଶିଖଙ୍କୁ ତଡ଼ିବାକୁ ମୁସଲମାନମାନେ ଚେଷ୍ଟା କରୁଛନ୍ତି ବୋଲି ପୂର୍ବ ପଞ୍ଜାବରୁ ମୁସଲମାନମାନଙ୍କୁ ତଡ଼ି ଦେବାକୁ ହିନ୍ଦୁ, ଶିଖମାନେ ଚେଷ୍ଟା କରୁଛନ୍ତି ବୋଲି ଭୁଲ ଖବର ବୁଲିଥାଏ । ତେଣୁ ଏହି ଫୋର୍ସରେ ଥିବା ସୀମାନ୍ତ ପ୍ରଦେଶର ମୁସଲମାନ ସିପାହୀମାନେ ପ୍ରତ୍ୟେକ ସଂଧ୍ୟାରେ ସାଧା ପୋଷାକରେ ପ୍ରଜାମଣ୍ଡଳ ଅଫିସିକୁ ଆସି ଦୟାକରି ଆମକୁ ଆମ ପ୍ରଦେଶକୁ ପଠାଇ ନିରାପଦରେ ରହନ୍ତୁ ବୋଲି କହୁଥାନ୍ତି । ସେମାନଙ୍କ ସହିତ ଆମ ପ୍ରଜାମଣ୍ଡଳ କୋଷାଧ୍ୟକ୍ଷ ଶ୍ରୀ ମହମ୍ମଦ ଆୟୁବ କଥାବାର୍ତ୍ତା କରନ୍ତି, ତେଣୁ ବେଶ ସୁବିଧା ହୋଇଥାଏ । ଆମେ ଯଦି ଦଖଲ କରିବାକୁ ଯିବୁ ଆପଣମାନେ ସାହାଯ୍ୟ କରିବେ କି ? ବୋଲି ତାଙ୍କୁ ପଚରା ହୋଇଥିଲା । କିପରି ଯିବାକୁ ହେବ, ସେମାନେ ଅସ୍ତ୍ରାଗାର କିପରି ଦଖଲ କରିବାକୁ ହେବ— ସବୁ କଥା ବତାଇଲେ । ପୁଣି କହିଲେ, "ଆପଣମାନେ ଶହେ ଜଣ ସ୍ୱେଚ୍ଛା ସେବକଙ୍କୁ ନେଇଗଲେ ଆମେମାନେ ସମୂହ ଭାବରେ ଆପଣଙ୍କୁ ସାହାଯ୍ୟ କରିବୁ । ଏହି ସର୍ତ୍ତରେ ଯେ ସେହି ଦିନ ଯେପରି ଟ୍ରେନରେ ଆମମାନଙ୍କୁ ଆମ ପ୍ରଦେଶକୁ ପଠାଇ ଦେବେ ।"

ଏ ବାବଦରେ ଆମେ ସେଣ୍ଟରର ଘରୋଇ ମନ୍ତ୍ରୀ ଶ୍ରୀଯୁକ୍ତ ପଟେଲଙ୍କ ସହ ଯୋଗାଯୋଗ କରି ସମସ୍ତ ବ୍ୟବସ୍ଥା ଠିକ୍ କଲୁ । ଏପରିକି ୭.୧୨.୪୭ ରାତ୍ରି ଘ ୩ଣ୍ଟା ବେଳେ କିଏ କେଉଁ ସରକାରୀ କାର୍ଯ୍ୟାଳୟ ଦଖଲ କରିବ ଏ ବିଷୟ ଛପାଯାଇ ପ୍ରସ୍ତୁତ ପତ୍ର ରକ୍ଷିତ ଥିଲା । ବିନା ବାଳିଗ୍ରେଇ ସଭାରେ ଘୋଷଣା କରାଗଲା, ବର୍ତ୍ତମାନ ରାଜ ସରକାରରେ କାର୍ଯ୍ୟ କରୁଥିବା କର୍ମଚାରୀମାନେ ପ୍ରଜାମଣ୍ଡଳ ଅଧୀନରେ ସେହି ସେହି କାମ କରିବେ ବୋଲି ଘ ୨୪ଣ୍ଟା ମଧ୍ୟରେ ସଂପାଦକଙ୍କୁ ନିଜର ସ୍ୱୀକୃତି ପତ୍ର ଦିଅନ୍ତୁ ।

ଆଶ୍ଚର୍ଯ୍ୟର କଥା, ପରଦିନ ସଂଧ୍ୟା ପୂର୍ବରୁ କେବଳ ଦେୱାନ, ବେଦେବ ସହକାର, ଏସ୍.ଡ଼ି.ଓ. ଶ୍ରୀ କିଶୋର ଚରଣ ସିଂହଦେଓ ଯେକି ରାଜାଙ୍କ ୫ମ ଭାଇ ଟିକିଙ୍କ ମଧୁର ସଂପର୍କୀୟ ଓ ରେଭେନ୍ୟୁ ଅଫିସର ଶ୍ରୀ କିଶୋର ଚରଣ ମହାନ୍ତିଙ୍କ (ଆନ୍ଦୋଳନ ଆରମ୍ଭରୁ ଲେଖକ ତାଙ୍କରି ବସାରେ ଥାନ୍ତି) ବ୍ୟତୀତ ସମସ୍ତେ ସ୍ୱୀକୃତି ପତ୍ର ଦାଖଲ କରିଥିଲେ ।

ନଭେମ୍ବର ଡ଼ିସେମ୍ବର ଶେଷଯାଏ ପ୍ରକୃତ ରାମରାଜ୍ୟ ଢେଙ୍କାନାଳରେ ପ୍ରତିଷ୍ଠିତ ହୋଇଥିଲା । ସରକାରୀ କର୍ମଚାରୀ କୌଣସି ଲୋକଙ୍କୁ ପାଞ୍ଚମିନିଟ ଅଟକାଇ ତାଙ୍କ କାମ କରି ଦେଉଥିଲେ ।

ଏପରି ଲେଖିଲେ ଅନେକ ଉଦାହରଣ ଦେଇ ହେବ ଯେ ସନ୍ଦର୍ଭ ବଡ ହୋଇଯିବା ଭୟରେ କଲମକୁ ନିବର୍ତ୍ତାଇଲି ।

ଏ ସମସ୍ତ କାର୍ଯ୍ୟକ୍ରମ ସୁଶିକ୍ଷିତ, ଶୃଙ୍ଖଳିତ ଅଭିଜ୍ଞ ନେତାମାନଙ୍କୁ ଦାୟିତ୍ୱ ବଣ୍ଟନ କରାଯାଇ, ଲେଖାଛପା ହୋଇ ଗୋପନରେ ରଖା ଯାଇଥିଲା ଯାହାକି ସେତେବେଳେ ଶ୍ରୀ ଧଳ ଓ ଲେଖକଙ୍କ ବ୍ୟତୀତ କାହାକୁ ଜଣା ନଥିଲା । ଏପରିକି କେହି ଆତ୍ମୀୟ ସ୍ୱଜନ, ବନ୍ଧୁ, ବଂଶ ହେବାକୁ ଯାଉଛି ବୋଲି ପଚାରନ୍ତି ନାହିଁ । ଧନ୍ୟ ସଂଗଠନ । ଧନ୍ୟ ଜନସାଧାରଣ । ଅକାତରେ ଶ୍ରମ, ଧନ, ସମୟ ସମସ୍ତ ଦେଉଥିଲେ ଅଥଚ କାହିଁକି ଦେଉଥିଲେ ଜାଣି ନଥିଲେ ବା ଜାଣିବାକୁ ଚାହୁଁନଥିଲେ । କି ଅଗାଧ ବିଶ୍ୱାସ ।

ପଞ୍ଚାୟତ, ଥାନା, ସବ୍‌ଡ଼ିଭିଜନ, ସଦର ଟ୍ରେଜେରୀ, ଏଜେନ୍‌ସିଫୋର୍ସ ହେଡକ୍ୱାଟର ଦଖଲକାରୀମାନେ ମଧ୍ୟ ନିଜକୁ କେଉଁଠି ମୁତୟନ କରିବେ ସେ କଥା ତା ୭.୧୨.୪୭ ରିଖ ରାତ୍ରି ଘ ୨ଣ୍ଟା ପର୍ଯ୍ୟନ୍ତ ଜଣାଇ ଦିଆ ନଯିବାକୁ ସ୍ଥିର ହୋଇଥିଲା ।

ଏହି ଅକିଞ୍ଚନ ଲେଖକ ଓ ସହଯୋଗୀ ଶ୍ରୀ ଧଳଙ୍କ ବ୍ୟତୀତ ଅନ୍ୟ କେହି ଜାଣି ନଥିଲେ । ଏହି ସବୁ ସଂଗଠନର ବୁଦ୍ଧି ଭଣ୍ଡାର ସର୍ବମୟ କର୍ତ୍ତା ଥିଲେ

ସେ ଭଳିଟି କି ଉଦ୍ଦେଶ୍ୟରେ ପ୍ରଦାନ କରିଥିଲେ ତାହା ଏବେ ଅନୁଭବ ହେଉଅଛି ।

ଏହା ମେଘେ ବଜ୍ରିଶ ପ୍ରହାର' ଭଳି ତା ୫.୧୨.୪୭ ରିଖରେ ସର୍ଦ୍ଦାର ବଲ୍ଲଭଭାଇ ପଟେଲ ଘରୋଇମନ୍ତ୍ରୀ ଭାରତଙ୍କଠାରୁ ଲେଖକଙ୍କୁ ଟେଲିଗ୍ରାମ ଆସିଲା ଯେ, ମୁଁ ତା ୧୪.୧୨.୪୭ ରିଖରେ ଓଡ଼ିଶା ଯାଉଛି । ସେ ପର୍ଯ୍ୟନ୍ତ ସମସ୍ତ କାର୍ଯ୍ୟକ୍ରମ ବନ୍ଦରଖ । ପରେ ପରେ ଚିଠି ଆସିଲା କଟକରେ ତାଙ୍କୁ ତା ୧୪.୧୨ରେ ଦେଖା କରିବାକୁ ।

ଏ କଥା ଜନସାଧାରଣଙ୍କୁ ଜଣାଇ ଦେବାକୁ ତା ୫.୧୨.୪୭ ରିଖ ସନ୍ଧ୍ୟାରେ ବାଣିଜ୍ୟିକ ସଭାରେ ଟେଲିଗ୍ରାମ ପଢ଼ାଇ ଶୁଣାଇ ଦେବାପରେ ସଭା ସମସ୍ତେ ଉପସ୍ଥିତ ଲୋକେ ଅତିମ୍ରିୟମାଣ ହୋଇଗଲେ । କିଛିକ୍ଷଣ ପରେ କେହି କେହି ଦାବୀକଲେ ଯେ ଆମ କଥାରେ ପଟେଲ କିଏ ? ଯେତେବେଳେ ଆମେ ନିର୍ଯ୍ୟାତିତ ହେଉଥିଲା ବେଳେ ପଟେଲ ଥିଲେ କେଉଁଠି ?

ଲୋକମାନଙ୍କର ଏ ପ୍ରଶ୍ନର ଉତ୍ତର ଦେବ କିଏ ?

ଶ୍ରୀ କୃତିବାସ ପ୍ରଧାନଙ୍କ ଜନ୍ମ ଅକ୍ଟୋବର ୩୦, ୧୯୦୪ ମସିହା ଭାଲିଆପାଟ ଗ୍ରାମର ଏକ ସମ୍ଭ୍ରାନ୍ତ କୃଷୀ ପରିବାରରେ ।

ଢେଙ୍କାନାଳ ହାଇସ୍କୁଲରେ ୧୯୨୧ ମସିହା ବେଳକୁ ୯ମ ଶ୍ରେଣୀରେ ପଢୁଥିବା ବେଳେ ସ୍ୱାଧୀନତା ସଂଗ୍ରାମରେ ନିଜକୁ ଝାସ ଦେଲେ ।

୧୯୪୭ ପର୍ଯ୍ୟନ୍ତ ଆନ୍ଦୋଳନରେ ସଂପୃକ୍ତ ରହିବାପରେ ପରବର୍ତ୍ତୀ ୧୯୬୫ ପର୍ଯ୍ୟନ୍ତ କଂଗ୍ରେସର ଗଠନମୂଳକ କାର୍ଯ୍ୟରେ ସଂପୃକ୍ତ ଥିଲେ । ବୟସର ଅପରାହ୍ନରେ ମଧ୍ୟରେ କର୍ମରତ ।

---

ଗ୍ରାମ:—ଭାଲିଆ ପାଟ
ପୋ:/ଜି:—ଢେଙ୍କାନାଳ



କଟକ ସହରର ବନ୍ୟାଜଳ ଦ୍ୱାରା ପୀଡ଼ିଗ୍ରସ୍ତ ଅଧିବାସୀଙ୍କର ପ୍ରତିକାର ପାଇଁ ମୁଖ୍ୟମନ୍ତ୍ରୀ ଅଫିସରମାନଙ୍କ ସହ ଆଲୋଚନାରତ . . .


ଗ୍ରୋମୋର ହିଁ
ବ୍ୟବହାର କରନ୍ତୁ
ଏହି ପ୍ରତୀକ
ଚିହ୍ନ
ଦେଖନ୍ତୁ
GROMOR
PHOSPHATE
28-28-0
GROMOR
N-P-K
14-35-14
ଗ୍ରୋମୋର
୨୮-୨୮-୦
ଗ୍ରୋମୋର
୧୪-୩୫-୧୪
ଜମିର ଉର୍ବରତା
କୃଷକର ଲାଭ ପାଇଁ – ଗ୍ରୋମୋର

# ଓଡ଼ିଶାରେ ଅସହଯୋଗ ସଂଗ୍ରାମ

ଶ୍ରୀ ବଳରାମ ମହାନ୍ତି

୧୯୨୧ ମସିହାରେ ମହାତ୍ମା ଗାନ୍ଧୀଙ୍କ ନେତୃତ୍ୱରେ ସମଗ୍ର ରତରେ ଅସହଯୋଗ ସଂଗ୍ରାମ ଆରମ୍ଭ ହେବା ପୂର୍ବରୁ ଓଡ଼ିଶାରେ ଳମଣି ଗୋପବନ୍ଧୁ ଦାସ ଓ ଉତ୍କଳ ଗୌରବ ମଧୁସୂଦନ ଦାସ ହଯୋଗ ସଂଗ୍ରାମ ପାଇଁ କ୍ଷେତ୍ର ପ୍ରସ୍ତୁତ କରିଥିବା ଓ ଭାରତର ପ୍ରଥମ ନତା ସଂଗ୍ରାମର ଗ୍ରିଳିଶ ବର୍ଷ ପୂର୍ବରୁ ଓଡ଼ିଶାରେ ସ୍ୱାଧୀନତା ଗ୍ରାମର ଭିତ୍ତି ପ୍ରସ୍ତୁତ ହୋଇଥିବା ବିଷୟ ଗତ ଅଗଷ୍ଟ ମାସ ନତା ଦିବସ ବିଶେଷାଙ୍କରେ ଆଲୋଚନା କରିଥିଲି । ତେବେଳେ ଓଡ଼ିଶାର ବୁଦ୍ଧିଜୀବୀମାନେ ଉତ୍କଳ ଗୌରବ ମଧୁସୂଦନଙ୍କ ତ୍ୱରେ ପରିଚାଳିତ ବିଚ୍ଛିନ୍ନାଞ୍ଚଳ ମିଶ୍ରଣ ଓ ସ୍ୱତନ୍ତ୍ର ପ୍ରଦେଶ ଗଠନ ଳନ ପ୍ରତି ଅଧିକ ଆକୃଷ୍ଟ ହୋଇଥିଲେ । ଏହା ମଧ୍ୟ ସ୍ୱାଭାବିକ ସେତେବେଳେ ସମଗ୍ର ଓଡ଼ିଆଭାଷୀଙ୍କ ପାଇଁ ଏହା ଏକ ଜରୁରୀ ୟ ଥିଲା । ୧୯୦୯ ମସିହାରେ ଉତ୍କଳମଣି ଗୋପବନ୍ଧୁଙ୍କ ନରେ ପ୍ରତିଷ୍ଠିତ ସତ୍ୟବାଦୀ ବନ ବିଦ୍ୟାଳୟରେ ଓଡ଼ିଶାର ବିଭିନ୍ନ ରୁ ଆସି ଅଧ୍ୟୟନ କରୁଥିବା ଛାତ୍ରମାନେ ଜାତି ବର୍ଣ୍ଣ ନିର୍ବିଶେଷରେ ରହି ବିଦ୍ୟାଧ୍ୟୟନ ସଙ୍ଗେ ସଙ୍ଗେ ଗୋପବନ୍ଧୁ ଏବଂ ବନ ୟର ସୁବିଦିତ ଶିକ୍ଷ୍ୟମାନଙ୍କ ସହିତ ବନ୍ୟା ଓ ମରୁଡ଼ିବେଳେ ଗ୍ରସ୍ତ ଲୋକଙ୍କ ସେବା କରୁଥିଲେ । ସମଗ୍ର ଦେଶରେ ଏହି ନଟି ଏକ ଆଦର୍ଶ ବିଦ୍ୟାଳୟ ରୂପେ ସୁଖ୍ୟାତି ଲାଭ କରିଥିଲା । ବନ୍ଧୁଙ୍କ ପରିକଳ୍ପିତ ଜାତୀୟ ଶିକ୍ଷାର ପରୀକ୍ଷା ଯେପରି ଏଇଠି ଲା, ସେହି ସମୟରେ ଓଡ଼ିଶାର ବିଶ୍ୱ ବିଖ୍ୟାତ କୁଟୀର ଶିଳ୍ପଗୁଡ଼ିକୁ ଭ କରିବା ପାଇଁ ଉତ୍କଳ ଗୌରବ ମଧୁସୂଦନଙ୍କ ପ୍ରୟାସ ଓଡ଼ିଶାର ଓ ନାଗରିକଙ୍କ ଭିତରେ ଅପୂର୍ବ ଜାଗରଣ ସୃଷ୍ଟି କରିଥିଲା । ନଙ୍କ ଏହି ଉଦ୍ୟମ ଅସହଯୋଗ ଆନ୍ଦୋଳନ ବେଳେ ଗାନ୍ଧୀଜୀଙ୍କ ଭାଇ କରୁଥିଲା ।

ସମୟରେ ବଙ୍ଗଭଙ୍ଗ ଆନ୍ଦୋଳନ ସହିତ ସଂପୃକ୍ତ କେତେକ ର ବିପ୍ଳବୀ ଯୁବକ ଓଡ଼ିଶାରେ ସଶସ୍ତ୍ର ବିପ୍ଳବ ନିମନ୍ତେ କ୍ଷେତ୍ର କରିବା ପାଇଁ ଉଦ୍ୟମ କରିଥିଲେ । ବିଶିଷ୍ଟ ବିପ୍ଳବୀ ଯୁବକ ଘୋଷ ଗୋପନରେ ଓଡ଼ିଶାକୁ ଆସି ଉତ୍କଳମଣି ଗୋପବନ୍ଧୁଙ୍କ ପର୍କ ସ୍ଥାପନ କରିଥିଲେ ଏବଂ ସେତେବେଳର ବିଚ୍ଛିନ୍ନାଞ୍ଚଳ ମିଶ୍ରଣ ଆନ୍ଦୋଳନର ନେତା ବ୍ରଜସୁନ୍ଦର ଦାସଙ୍କ ବାସ ଭବନରେ କିଛି ଦିନ ରହି ଓଡ଼ିଶାରେ ବିପ୍ଳବୀ ଯୁବ ସଂଗଠନ ସ୍ଥାପନ ପାଇଁ ପ୍ରେରଣ ଦେଇଥିଲେ । ୧୯୧୪ ରେ ବଙ୍ଗଳାର ବିପ୍ଳବୀ ଯୁବ ସଂଗଠନ ସହିତ ସଂପୃକ୍ତ କେତେକ ଯୁବକ ଯାଜପୁରଠାରେ ଏକ ରାଜନୈତିକ ଡକାୟତି କରୁଥିଲେ ଏବଂ ଏହାର ବର୍ଷକ ପରେ ୧୯୧୫ ମସିହାରେ ବିପ୍ଳବୀ ଯତୀନ୍ଦ୍ରନାଥ ବାଲେଶ୍ୱର ଓ ମୟୂରଭଞ୍ଜର କପ୍ତିପଦା ଜଙ୍ଗଲରେ ଲୁଚି ରହି ସଶସ୍ତ୍ର ସଂଗ୍ରାମ ପାଇଁ ପ୍ରସ୍ତୁତ ହେଉଥିଲେ । ଯତୀନ୍ଦ୍ରନାଥ ଯେ କି ବାଘା ଯତୀନ ବୋଲି ସୁପରିଚିତ କେତେକ ପ୍ରତିଭାଶାଳୀ ସାହସୀ ଶିକ୍ଷିତ ଯୁବକ ବନ୍ଧୁଙ୍କ ସହିତ ଜର୍ମାନୀର ଅସ୍ତ୍ରଶସ୍ତ୍ର ସଂଗ୍ରହ କରି ଭାରତର ବିଭିନ୍ନ ସ୍ଥାନରେ ସଶସ୍ତ୍ର ବିପ୍ଳବ ପାଇଁ ଆୟୋଜନ କରୁଥିଲେ । ଯତୀନ୍ଦ୍ରନାଥ ତାଙ୍କ କର୍ମ କ୍ଷେତ୍ରରୁ ଓଡ଼ିଶାକୁ ଉଠାଇ ଆଣିଥିଲେ । ମୟୂରଭଞ୍ଜର କପ୍ତିପଦା ଜଙ୍ଗଲ ଭିତରେ ତାଙ୍କର ଗୁପ୍ତ ସଂଗଠନ କାର୍ଯ୍ୟ ଚଳେଇଥିବା ବେଳେ ପୋଲିସ ସେମାନଙ୍କୁ ଧରିବା ପାଇଁ ଉଦ୍ୟମ କରିଥିଲେ । ମାତ୍ର ପୋଲିସ ନିକଟରେ ଆତ୍ମ ସମର୍ପଣ ନ କରି ଯତୀନ୍ଦ୍ରନାଥ ଓ ତାଙ୍କ ବନ୍ଧୁମାନେ ପୋଲିସ ସହିତ ସଶସ୍ତ୍ର ଲଢ଼େଇ କରି ପ୍ରାଣ ହରାଇଥିଲେ । ଏହି ବିପ୍ଳବୀ ଯୁବକମାନଙ୍କର ଦେଶପ୍ରେମ ସାହସ ଓ ସଂଗଠନ ଓଡ଼ିଶାର ଯୁବକମାନଙ୍କୁ ପ୍ରେରଣା ଦେଇଥିଲା । ସେତେବେଳେ ଭାରତର ଅନ୍ୟାନ୍ୟ ପ୍ରଦେଶର ଯୁବକମାନଙ୍କ ପରି ଓଡ଼ିଆ ଯୁବକମାନଙ୍କ ଭିତରେ ବିଚ୍ଛିନ୍ନାଞ୍ଚଳ ମିଶ୍ରଣ ଆନ୍ଦୋଳନ ସହିତ ବ୍ରିଟିଶ ଶାସନର ଅନ୍ୟାୟ, ଜୁଲମ ଓ ଅତ୍ୟାଚାରର ବିରୁଦ୍ଧରେ ପ୍ରଜ୍ଜ୍ୱଳ ଅସନ୍ତୋଷ ପୁଞ୍ଜିଭୂତ ହେଉଥିଲେ ମଧ୍ୟ ସେମାନେ ଉପଯୁକ୍ତ ଜାତୀୟ ନେତୃତ୍ୱର ଅନ୍ୱେଷଣରେ ଥିଲେ । ସେତେବେଳକୁ ୩୫ ବର୍ଷ ହେଲା ଜାତୀୟ କଂଗ୍ରେସ ପ୍ରତିଷ୍ଠିତ ହୋଇସାରିଥିଲା ଏବଂ ବାର୍ଷିକ ଅଧିବେଶନମାନଙ୍କରେ ଜାତୀୟ ସମସ୍ୟା ସଂପର୍କରେ ପ୍ରସ୍ତାବ ଗୃହୀତ ହେଉଥିଲେ ମଧ୍ୟ କଂଗ୍ରେସ ତଥାପି ନରମପନ୍ଥୀ ବୁଦ୍ଧିଜୀବୀଙ୍କ ନେତୃତ୍ୱରେ ପରିଚାଳିତ ହେଉଥିଲା । କୌଣସି ପ୍ରତ୍ୟକ୍ଷ ସଂଗ୍ରାମ ପାଇଁ ଜାତୀୟ କଂଗ୍ରେସ ପ୍ରସ୍ତୁତ ହୋଇ ପାରି ନଥିଲା । ତେଣୁ ବ୍ରିଟିଶ ଶାସନର ଜୁଲମ, ଅନ୍ୟାୟ ଓ ଅତ୍ୟାଚାରର ବିରୁଦ୍ଧରେ ପ୍ରତ୍ୟକ୍ଷ ସଂଗ୍ରାମ ପାଇଁ ଅଧୀର ହୋଇ ଯୁବକମାନେ ସଶସ୍ତ୍ର ସଂଗ୍ରାମ ପନ୍ଥା ଚିନ୍ତା କରିବା ସ୍ୱାଭାବିକ । ବିଶ୍ୱର ସ୍ୱାଧୀନତା ସଂଗ୍ରାମର ଇତିହାସରୁ ସେମାନେ ତାହାହିଁ ଶିକ୍ଷା ଲାଭ କରିଥିଲେ ।

## ମହାତ୍ମା ଗାନ୍ଧୀ କଂଗ୍ରେସର ନେତୃତ୍ୱ ନେଲେ

ଭାରତବର୍ଷର ରାଜନୈତିକ ପରିସ୍ଥିତିର ଏହି ପୃଷ୍ଠଭୂମିରେ ୧୯୧୪ ମସିହାରେ ମହାତ୍ମାଗାନ୍ଧୀ ଭାରତବର୍ଷରେ ପଦାର୍ପଣ କଲେ । ତା ପୂର୍ବରୁ ଦକ୍ଷିଣ ଆଫ୍ରିକାରେ ଅବସ୍ଥାନ କରୁଥିବା ବେଳେ ଗାନ୍ଧୀଜୀ କଳା ଲୋକଙ୍କ ବିରୁଦ୍ଧରେ ଗୋରା ଶାସକ ଜୁଲମ ଓ ଅତ୍ୟାଚାର ବିରୁଦ୍ଧରେ ଅହିଂସା ଅସହଯୋଗ ପନ୍ଥାରେ ସଂଗ୍ରାମ ଚଳାଇ ସଫଳତା ହାସଲ କରିସାରିଥିଲେ ଏବଂ ସେହି ପନ୍ଥାରେ ସେ ଭାରତରେ ବ୍ରିଟିଶ ଶାସନର ଅନ୍ୟାୟ କାର୍ଯ୍ୟ ବିରୁଦ୍ଧରେ ପ୍ରତିରୋଧ କରିବା କଥା ଚିନ୍ତା କରିଥିଲେ । ଗାନ୍ଧୀଜୀ ଭାରତରେ ପଦାର୍ପଣ କଲାବେଳେ ପ୍ରଥମ ମହାଯୁଦ୍ଧ ଚାଲିଥାଏ । ସେ ଗୁଜୁରାଟର ସାବରମତୀଠାରେ ଆଶ୍ରମ ସ୍ଥାପନ କରି ଅହିଂସା ଅସହଯୋଗ ପ୍ରତିରୋଧର ପରିକଳ୍ପନା ପ୍ରସ୍ତୁତ କଲେ । ୧୯୧୭ ମସିହାରେ ଗାନ୍ଧୀଜୀ ସର୍ବ ପ୍ରଥମେ ବିହାରର ଚମ୍ପାରଣଠାରେ ନୀଳଚାଷୀଙ୍କ ନ୍ୟାୟସଙ୍ଗତ ଅଧିକାର ହାସଲ ପାଇଁ ସତ୍ୟାଗ୍ରହର ନେତୃତ୍ୱ ନେଇ ଗିରଫ ହେଲେ । ୧୯୧୮ରେ ଅହମ୍ମଦାବାଦର ମିଲ ଶ୍ରମିକଙ୍କ ଦାବୀ ଓ ଖେଡା କୃଷକଙ୍କ ଦାବୀ ହାସଲ ପାଇଁ ସତ୍ୟାଗ୍ରହର ନେତୃତ୍ୱ ନେଇ ସଫଳତା ହାସଲ କରିବା ପରେ ଜାତୀୟ ସ୍ତରରେ ସଂଗ୍ରାମ ପାଇଁ ଗାନ୍ଧୀଜୀ ଦେଶବାସୀଙ୍କୁ ପ୍ରସ୍ତୁତ କରିଥିଲେ । ସେତେବେଳେ ସର୍ବଭାରତୀୟ ସ୍ତରରେ ଏକ ଜାତୀୟ ସମସ୍ୟା ପାଇଁ ଯେମିତି ସମସ୍ତେ ଅପେକ୍ଷା କରିଥାନ୍ତି । ୧୯୧୯ରେ ପ୍ରଥମ ମହାଯୁଦ୍ଧ ଶେଷରେ 'ରାଉଲାଟ ଆଇନ୍'ଟି ସେହି ଜାତୀୟ ସମସ୍ୟା ଆଣି ଜୁଟାଇ ଦେଲା । ପ୍ରଥମ ମହାଯୁଦ୍ଧବେଳେ ମତ ପ୍ରକାଶ କରିବାର ସ୍ୱାଧୀନତାକୁ ଦମନ କରିବା ପାଇଁ ଯେଉଁସବୁ ଦମନମୂଳକ ଆଇନଗୁଡ଼ିକ ପ୍ରବର୍ତ୍ତନ କରାଯାଇଥିଲା । ତାକୁ ବଳବତ୍ତର କରିବା ପାଇଁ ବ୍ରିଟିଶ ସରକାର ଏହି ଦମନମୂଳକ ଆଇନଗୁଡ଼ିକୁ 'ରାଉଲାଟ ଆଇନ୍' ନାମରେ ସମଗ୍ର ଦେଶରେ ପ୍ରବର୍ତ୍ତନ କଲେ । ଏହି ସର୍ବଗ୍ରାସୀ ଆଇନ ବିରୁଦ୍ଧରେ ପ୍ରତିବାଦ କରିବା ପାଇଁ ଜାତୀୟ କଂଗ୍ରେସ ପକ୍ଷରୁ ମହାତ୍ମାଗାନ୍ଧୀ ୧୯୧୯ ଏପ୍ରିଲ ମାସ ୬ ତାରିଖରେ ପ୍ରତିବାଦ ଦିବସ ପାଳନ କରିବା ପାଇଁ ଭାରତବାସୀଙ୍କୁ ଆହ୍ୱାନ କରିଥିଲେ ।

## ଅହିଂସା ଅସହଯୋଗ ସଂଗ୍ରାମ ପାଇଁ ଆହ୍ୱାନ

ଏହିପରି ଭାବରେ ରାଉଲାଟ ଆଇନ ସର୍ବଭାରତୀୟ ସ୍ତରରେ ଜାତୀୟ ସଂଗ୍ରାମ ପାଇଁ କ୍ଷେତ୍ର ପ୍ରସ୍ତୁତ କରିଦେଲା ଏବଂ ମହାତ୍ମା ଗାନ୍ଧୀ ଦେଶର ସର୍ବମାନ୍ୟ ନେତା ଭାବରେ ଗୃହୀତ ହେଲେ । ରାଉଲାଟ ଆଇନ ପ୍ରତିବାଦରେ ୧୯୧୯ ଏପ୍ରିଲ ୬ ତାରିଖ ହରିତାଳ ପାଳନ ଆହ୍ୱାନ ସମଗ୍ର ଦେଶରେ ଉତ୍ସାହ ଉଦ୍ଦୀପନା ସୃଷ୍ଟି କଲା । ଦେଶର ଯୁବକମାନେ ଯେପରିକି ପ୍ରକୃତ ସଂଗ୍ରାମର ପଥ ଏବଂ ସଂଗ୍ରାମର ସେନାପତିଙ୍କୁ ଖୋଜି ପାଇଲେ । ଏହି ପ୍ରତିବାଦ ଦିବସ ପାଳନ କରି ସେତେବେଳର ମିଳିତ ପଞ୍ଜାବର ରାଜଧାନୀ ଲାହୋରଠାରେ ମହାତ୍ମାଗାନ୍ଧୀ ଗିରଫ ହେଲେ । ଏହାର ପ୍ରତିବାଦରେ ଅମୃତସରଠାରେ ଯେଉଁ ବୃହତ ଗଣବିକ୍ଷୋଭର ଆୟୋଜନ କରାଯାଇଥିଲା ସେଥିରେ ଯୋଗ ଦେବା ପାଇଁ ବିଶିଷ୍ଟ ନେତା ସତ୍ୟପାଳ ଓ କିଚ୍ଲୁଙ୍କ ପ୍ରତି ନିଷେଧ ଆଦେଶ ଜାରି କରାଗଲା ଓ ସେମାନଙ୍କୁ ଗିରଫ କରି ଦ୍ୱୀପାନ୍ତର ଦଣ୍ଡାଦେଶ ହେଲା । ଏହି କଠୋର ଦଣ୍ଡାଦେଶ ବିରୁଦ୍ଧରେ ଏପ୍ରିଲ ୧୩ ତାରିଖରେ ଜାଲିଆନାୱାଲା-ବାଗଠାରେ ପ୍ରତିବାଦ ସଭା ଅନୁଷ୍ଠିତ ହେଲା । ଏହି ବିକ୍ଷୋଭରେ ଭୟଭୀତ ହୋଇ ବ୍ରିଟିଶ ସରକାର ଅମୃତସରକୁ ସୈନ୍ୟବାହିନୀ ହାତରୁ ଦେଇଦେଲେ ଏବଂ ଜାଲିଆନାବାଗ ସଭାକୁ ଛିନ୍ନଛତ୍ର କରିଦେବା ଦାୟିତ୍ୱ ଜେନେରାଲ ଡାୟାରଙ୍କୁ ଦିଆଗଲା । ଜାଲିଆନାବାଗର ସଭାସ୍ଥଳରେ ଗୋଟିଏ ମାତ୍ର ପ୍ରଧାନ ଯାତାୟତ ରାସ୍ତା ଥିଲା ଓ ୩ଟି ଗଳିଥିଲା । ଡାୟାର ଓ ସଶସ୍ତ୍ର ସୈନ୍ୟ ପ୍ରଧାନ ଫାଟକରେ ରହି ଗୁଳି ଚଳେଇଥିଲେ । ...ଠାରେ ଲୋକେ ବାହାରକୁ ଯାଇ ନପାରି ନିର୍ମମ ଭାବରେ ଜୀବନ ...ଲେ । ଏପରି ନିର୍ମମ ହତ୍ୟାର ପଟାନ୍ତର ନାହିଁ । ଏହି ନିର୍ମମ ହତ୍ୟାସ୍ଥଳ ଭାରତରେ ବ୍ରିଟିଶ ଶାସନର ନଗ୍ନ ରୂପ ଖୋଲି ଦେଲା । ଏହି ନଗ୍ନ ରୂପ ଅତ୍ୟାଚାର ହିଁ ଭାରତରେ ବ୍ରିଟିଶ ଶାସନ ବିରୁଦ୍ଧରେ ଜାତୀୟ ସଂଗ୍ରାମ ପାଇଁ କ୍ଷେତ୍ର ପ୍ରସ୍ତୁତ କରି ଦେଇଥିଲା । ଏହି ପରିପ୍ରେକ୍ଷୀରେ ଦେଶର ସର୍ବସମ୍ମତ ନେତା ମହାତ୍ମାଗାନ୍ଧୀ ଭାରତରେ ବ୍ରିଟିଶ ଶାସନ ବିରୁଦ୍ଧରେ ଅହିଂସା ଅସହଯୋଗ ସଂଗ୍ରାମ ପାଇଁ ପରିକଳ୍ପନା ପ୍ରସ୍ତୁତ କଲେ । ୧୯୨୦ ସେପ୍ଟେମ୍ବର ମାସରେ ଗାନ୍ଧୀଜୀ କଲିକତାଠାରେ ଜାତୀୟ କଂଗ୍ରେସର ଏକ ସ୍ୱତନ୍ତ୍ର ଅଧିବେଶନରେ ଅହିଂସ ଅସହଯୋଗ ପରିକଳ୍ପନା ଘୋଷଣା କଲେ ଏବଂ ତାହା ବହୁ ମତରେ ଗୃହୀତ ହେଲା । ଶେଷରେ ୧୯୨୦ ଡିସେମ୍ବର ମାସରେ ଜାତୀୟ କଂଗ୍ରେସର ନାଗପୁର ଅଧିବେଶନରେ ବିପୁଳ ଉତ୍ସାହରେ ସର୍ବସମ୍ମତି କ୍ରମେ ଅସହଯୋଗ ପ୍ରସ୍ତାବ ଗୃହୀତ ହେଲା । ଅସହଯୋଗ କାର୍ଯ୍ୟକ୍ରମ ଭିତରେ ବିଲାତି ବସ୍ତ୍ର ବର୍ଜ୍ଜନ, ମଦ୍ୟ ଓ ଅନ୍ୟାନ୍ୟ ମାଦକ ଦ୍ରବ୍ୟ ବର୍ଜନ, ଶିକ୍ଷାନୁଷ୍ଠାନ ତ୍ୟାଗ ଓ ଚାକିରିରୁ ଇସ୍ତଫା ପ୍ରଭୃତି ଅନ୍ତର୍ଭୁକ୍ତ ଥିଲା ।

## ଓଡ଼ିଶାରେ ଅସହଯୋଗ ସଂଗ୍ରାମ ପାଇଁ ପ୍ରସ୍ତୁତ

ଉତ୍କଳ ଗୌରବ ମଧୁସୂଦନ ଦାସଙ୍କ ନେତୃତ୍ୱରେ ପରିଚାଳିତ ଉତ୍କଳ ସମ୍ମିଳନୀ ସହିତ ସଂପୃକ୍ତ ଥିବା ଯୁବକ କର୍ମୀମାନେ ମହାତ୍ମାଗାନ୍ଧୀଙ୍କ ଅସହଯୋଗ ଆହ୍ୱାନରେ ବହୁ ପରିମାଣରେ ପ୍ରଭାବିତ ହୋଇଥିଲେ । ସେତେବେଳେ ସମଗ୍ର ଦେଶରେ ଯେଉଁ ଜାତୀୟ ଚେତନା ଜାଗ୍ରତ ହୋଇଥିଲା ତାହା ଓଡ଼ିଆ ଯୁବକମାନଙ୍କୁ ମଧ୍ୟ ଉଦ୍ଦୀପିତ କରିଥିଲା । ଆଞ୍ଚଳିକ ଦାବୀ ଯେତେ ଜରୁରୀ ଓ ଗୁରୁତ୍ୱ ପୂର୍ଣ୍ଣ ହେଲେ ମଧ୍ୟ ଜାତୀୟ ସ୍ରୋତରୁ ସେମାନେ ଅଲଗା ରହିବାକୁ ଚାହୁଁନଥିଲେ । ମହାତ୍ମାଗାନ୍ଧୀ ଭାରତରେ ବିଭିନ୍ନ ଅଞ୍ଚଳରେ ଅସହଯୋଗ ଓ ସତ୍ୟାଗ୍ରହ ଆନ୍ଦୋଳନ ଚଳେଇବା ପରଠାରୁ ଉତ୍କଳମଣି ଗୋପବନ୍ଧୁ ଜାତୀୟ କଂଗ୍ରେସ ପ୍ରତି ଅଧିକ ଆକୃଷ୍ଟ ହୋଇ ଏହାର ବାର୍ଷିକ ଅଧିବେଶନରେ ନିୟମିତ ଭାବରେ ଯୋଗ ଦେଉଥିଲେ । ସତ୍ୟବାଦୀ ବନ ବିଦ୍ୟାଳୟର ସ୍ଥାୟିତ୍ୱ ଓ ପରିଚାଳନା ତାଙ୍କ ପକ୍ଷରେ ଯେତେ ଗୁରୁତ୍ୱପୂର୍ଣ୍ଣ ହେଲେ ମଧ୍ୟ ଏବଂ ବିଚ୍ଛିନ୍ନାଞ୍ଚଳ ମିଶ୍ରଣ ଯେତେ ଜରୁରୀ ହେଲେ ମଧ୍ୟ ଜାତୀୟ ସଂଗ୍ରାମର ପ୍ରସାରକୁ ଅଗ୍ରାଧିକାର ଦେବେ ବୋଲି ସେ ମନସ୍ଥ କରିଥିଲେ ଏବଂ ତାଙ୍କ ସହଯୋଗୀ ପଣ୍ଡିତ ନୀଳକଣ୍ଠ, ପଣ୍ଡିତ ଗୋଦାବରୀଶ, ପଣ୍ଡିତ କୃପାସିନ୍ଧୁ ଓ ଆଚାର୍ଯ୍ୟ ହରିହରଙ୍କୁ ପ୍ରସ୍ତୁତ କରିଥିଲେ । ରାଉଲାଟ ଆଇନ ବିରୁଦ୍ଧରେ ଆନ୍ଦୋଳନ ଆରମ୍ଭ ହେବା ସମୟରେ ଓଡ଼ିଶାରେ ଜାତୀୟ ଜାଗରଣର ଏକ କେନ୍ଦ୍ର କଟକଠାରେ ସ୍ଥାପିତ ହୋଇଥିଲା । ତାର ନାମ ଦିଆ ହୋଇଥିଲା 'ଭାରତୀ ମନ୍ଦିର' । ସେତେବେଳେ ଡେପୁଟି ମାଜିଷ୍ଟ୍ରେଟ ଭାବରେ ସରକାରୀ ଚାକିରୀ କରିଥିବା ଗୋପବନ୍ଧୁ ଚୌଧୁରୀ ବାଖରାବାଦଠାରେ ଏହି ଅନୁଷ୍ଠାନ ସ୍ଥାପନ କରିଥିଲେ । ସେ ଜାତୀୟତା ବହୁ ପ୍ରକାର ପୁସ୍ତକ ଏବଂ ସବୁ ପ୍ରଦେଶରୁ ଖବର କାଗଜମାନ ଆଣି 'ଭାରତୀ ମନ୍ଦିର'ରେ ରଖିଥିଲେ ଏବଂ କଟକରେ ରହୁଥିବା ବହୁ ଛାତ୍ର, ଓକିଲ ଏବଂ ଅନ୍ୟ ଯୁବକମାନେ ଏହି ଅନୁଷ୍ଠାନର ସଭ୍ୟ ହୋଇଥିଲେ । ଅନ୍ୟମାନଙ୍କ ଭିତରେ ହରେକୃଷ୍ଣ ମହତାବ, ନବକୃଷ୍ଣ ଚୌଧୁରୀ, ଜାନକୀ ମହାପାତ୍ର, ଯଦୁମଣି ମଙ୍ଗରାଜ, ମୁକୁନ୍ଦ ପ୍ରସାଦ ଦାସ, ରାଜକୃଷ୍ଣ ବୋଷ ପ୍ରମୁଖ ଏହି ଭାରତୀ ମନ୍ଦିର ସହିତ ସଂପୃକ୍ତ ଥିଲେ । 'ରାଉଲାଟ ଆଇନ' ଏବଂ ଏହାର ପ୍ରତିବାଦରେ ସଭା ଓ ବିକ୍ଷୋଭ ଏହି ଅନୁଷ୍ଠାନର ସଭ୍ୟ ବିଶେଷ ଭାବରେ ବିଚଳିତ କରିଥିଲା ଏବଂ ଜାତୀୟ ସମସ୍ୟା ପ୍ରତି ସେମାନଙ୍କୁ ଆକୃଷ୍ଟ କରିଥିଲା । ଡକ୍ଟର ହରେକୃଷ୍ଣ ମହତାବଙ୍କ ଭାଷାରେ, ୧୯୨୧ରେ ସାବରମତୀରେ ଯେଉଁ ବିଦ୍ୟୁତ୍ ପ୍ରବାହ ଖେଳିଗଲା, ସେ ବିଦ୍ୟୁତକୁ ଧରିରଖି ଓଡ଼ିଶାରେ ବିସ୍ତାର କରିଦେବା ପାଇଁ 'ଭାରତୀ ମନ୍ଦିର' ଗୋଟିଏ ବଳଶାଳୀ ଯନ୍ତ୍ର ପରି କାର୍ଯ୍ୟ କରିଥିଲା । ଯାହାହେଉ ସତ୍ୟବାଦୀ ବନ ବିଦ୍ୟାଳୟର ଉତ୍କଳମଣି ଗୋପବନ୍ଧୁ ଓ ତାଙ୍କ ସହକର୍ମୀ ଓ ଭାରତୀ ମନ୍ଦିରର କର୍ମୀମାନେ ହିଁ ଓଡ଼ିଶାରେ ଅସହଯୋଗ ଆନ୍ଦୋଳନର କର୍ଣ୍ଣଧାର ହୋଇଥିଲେ ।

ଉତ୍କଳମଣି ଗୋପବନ୍ଧୁ ଓ 'ଭାରତୀ ମନ୍ଦିର' ପକ୍ଷରୁ ଡକ୍ଟର ହରେକୃଷ୍ଣ ମହତାବ ପ୍ରମୁଖ ୧୯୨୦ ମସିହାରେ କଲିକତାଠାରେ ଅନୁଷ୍ଠିତ ଜାତୀୟ

କଂଗ୍ରେସ ସ୍ବତନ୍ତ୍ର ଅଧିବେଶନରେ ଯୋଗ ଦେଇଥିଲେ ଏବଂ ନାଗପୁର କଂଗ୍ରେସ ଅଧିବେଶନରେ ଗୋପବନ୍ଧୁଙ୍କ ନେତୃତ୍ୱରେ ଓଡ଼ିଶାରୁ ୪୫ ଜଣ ପ୍ରତିନିଧି ଯୋଗ ଦେଇଥିଲେ । ସେମାନଙ୍କ ଭିତରୁ ଗୋପବନ୍ଧୁ, ନିରଞ୍ଜନ ପଟ୍ଟନାୟକ, ଜଗବନ୍ଧୁ ସିଂହ, ଦାଶରଥି ମିଶ୍ର ଓ ମୁକୁନ୍ଦ ପ୍ରସାଦ ଦାସ କଂଗ୍ରେସର ବିଷୟ ନିର୍ବାଚନୀ ସଭାକୁ ନିର୍ବାଚିତ ହୋଇଥିଲେ । ନାଗପୁର ଅଧିବେଶନରେ ମହାତ୍ମା ଗାନ୍ଧୀଙ୍କ ନେତୃତ୍ୱରେ ଅହିଂସ ଅସହଯୋଗ ଆନ୍ଦୋଳନ ଆରମ୍ଭ କରାଯିବ ବୋଲି ଯେଉଁ ପ୍ରସ୍ତାବ ଗୃହୀତ ହୋଇଥିଲା ତାକୁ ଓଡ଼ିଶାରେ କାର୍ଯ୍ୟକାରୀ କରିବା ପାଇଁ ଉତ୍କଳମଣି ଗୋପବନ୍ଧୁ ଓ ଅନ୍ୟାନ୍ୟ ପ୍ରତିନିଧିମାନେ ପ୍ରତିଜ୍ଞାବଦ୍ଧ ହୋଇ ଆସିଥିଲେ । ଏହି ଅଧିବେଶନରୁ ଫେରି ଗୋପବନ୍ଧୁ, ଜଗବନ୍ଧୁ ସିଂହ ଓ ମୁକୁନ୍ଦ ପ୍ରସାଦ ଦାସ ଚକ୍ରଧରପୁରଠାରେ ଅନୁଷ୍ଠିତ ଉତ୍କଳ ସମ୍ମିଳନୀ ଅଧିବେଶନରେ ଯୋଗ ଦେଇଥିଲେ । ସେତେବେଳେ ଓଡ଼ିଆଭାଷୀ ବିଚ୍ଛିନ୍ନାଞ୍ଚଳର ମିଶ୍ରଣ ଯେତେ ଗୁରୁତ୍ୱପୂର୍ଣ୍ଣ ହେଲେ ମଧ୍ୟ ସ୍ୱାଧୀନତା ସଂଗ୍ରାମର ସଫଳତା ତା ଅପେକ୍ଷା ବଳୁଆ ତେଣୁ ଏହି ସଂଗ୍ରାମକୁ ଓଡ଼ିଶାରେ ସଫଳ କରିବାକୁ ଗ୍ରାଧିକାର ଦେବାପାଇଁ ଉତ୍କଳମଣୀ ଗୋପବନ୍ଧୁ ପ୍ରତିଜ୍ଞାବଦ୍ଧ ହୋଇଥିଲେ ଏବଂ ଉତ୍କଳସମ୍ମିଳନୀର ଦେଶପ୍ରେମୀ ଯୁବକମାନଙ୍କୁ ସ୍ୱାଧିନତା ସଂଗ୍ରାମ ସହିତ ସଂପୃକ୍ତ କରିବାକୁ ଚାହିଁଥିଲେ । ସେଥିପାଇଁ ବିଚ୍ଛିନ୍ନାଞ୍ଚଳ ମିଶ୍ରଣ ଓ ସ୍ବତନ୍ତ୍ର ପ୍ରଦେଶ ଗଠନ ସହିତ କଂଗ୍ରେସର ଲକ୍ଷ୍ୟ ଓ ଉଦ୍ଦେଶ୍ୟ ମଧ୍ୟ ଉତ୍କଳ ସମ୍ମିଳନୀର ଲକ୍ଷ୍ୟ ହେଉ ବୋଲି ଗୋପବନ୍ଧୁ ଚକ୍ରଧରପୁର ଅଧିବେଶନରେ ପ୍ରସ୍ତାବ ଆଗତ କରିଥିଲେ । ଏହି ପ୍ରସ୍ତାବ ସମ୍ମିଳନୀରେ ବହୁ ଅଧିକ ମତରେ ଉତ୍ସାହର ସହିତ ଗୃହୀତ ହୋଇଥିଲା । ଏହାପରେ ଉତ୍କଳ ସମ୍ମିଳନୀର ବହୁ ଯୁବକ କର୍ମୀ ଅସହଯୋଗ ସଂଗ୍ରାମର ମୁଖ୍ୟ କର୍ମୀ ଭାବରେ କାର୍ଯ୍ୟ କରିଥିଲେ ।

### ଓଡ଼ିଶାରେ ଅସହଯୋଗ ସଂଗ୍ରାମ ପାଇଁ ସଂଗଠନ

୧୯୨୦ ଡିସେମ୍ବର ମାସରେ ଅନୁଷ୍ଠିତ ଜାତୀୟ କଂଗ୍ରେସର ନାଗପୁର ଅଧିବେଶନ ଯେଉଁଠି ଅସହଯୋଗ ସଂଗ୍ରାମ ପାଇଁ ଘୋଷଣା କରାଯାଇଥିଲା ସେଠାରେ ଜାତୀୟ କଂଗ୍ରେସ ପରିଚାଳନା ପାଇଁ ବିଧିବଦ୍ଧ ନିୟମାବଳୀ ପ୍ରସ୍ତୁତ ହେଲା ଏବଂ ଭାଷା ଭିତ୍ତିରେ ପ୍ରାଦେଶିକ କଂଗ୍ରେସ କମିଟି ଗଠନ ପାଇଁ ପ୍ରସ୍ତାବ କରାଯାଇଥିଲା । ସେହି ଅନୁସାରେ ଓଡ଼ିଶା ସେତେବେଳେ ଏକ ସ୍ୱତନ୍ତ୍ର ପ୍ରଦେଶ ହୋଇ ନଥିଲେ ମଧ୍ୟ ଓଡ଼ିଆ ଭାଷୀ ଅଞ୍ଚଳଗୁଡ଼ିକୁ ନେଇ ଉତ୍କଳ ପ୍ରଦେଶ କଂଗ୍ରେସ କମିଟି ଗଠନ କରାଗଲା ଏବଂ ଉତ୍କଳମଣୀ ପଣ୍ଡିତ ଗୋପବନ୍ଧୁ ଦାସ ଏହାର ସଭାପତି, ଏକରାମ ରସୁଲ ଉପସଭାପତି ଓ ଭାଗୀରଥି ମହାପାତ୍ର ସଂପାଦକ ନିର୍ବାଚିତ ହୋଇଥିଲେ । ପ୍ରଦେଶ କଂଗ୍ରେସ: ମୁଖ୍ୟ କର୍ମୀମାନଙ୍କୁ ବିଭିନ୍ନ ଜିଲ୍ଲାର କଂଗ୍ରେସକାର୍ଯ୍ୟ ପରିଚାଳନା ଦାୟିତ୍ୱ ଦିଆଯାଇଥିଲା । ଏମାନଙ୍କ ଭିତରୁ ହରେକୃଷ୍ଣ ମହତାବ ବାଲେଶ୍ୱର ଜିଲ୍ଲା, ଜଗବନ୍ଧୁ ସିଂହ ପୁରୀ ଜିଲ୍ଲା, ନିରଞ୍ଜନ ପଟ୍ଟନାୟକ ଗଞ୍ଜାମ ଜିଲ୍ଲା, ଚନ୍ଦ୍ରଶେଖର ବେହେରା ସମ୍ବଲପୁର ଜିଲ୍ଲା ଓ ପଣ୍ଡିତ ଗୋଦାବରୀଶ ମିଶ୍ର ସିଂହଭୂମି ଜିଲ୍ଲା ସଂଗଠନ ଦାୟିତ୍ୱରେ ରହିଥିଲେ । ଏମାନଙ୍କ ଛଡ଼ା ବାଲେଶ୍ୱର ଜିଲ୍ଲାର ବିଭିନ୍ନ ଅଞ୍ଚଳର ସଂଗଠନ ଦାୟିତ୍ୱରେ କରୁଣାକର ପାଣିଗ୍ରାହୀ, ନିଳାମ୍ବର ଦାସ, ଘନଶ୍ୟାମ ସାହୁ, କଟକ ଜିଲ୍ଲାରେ ବ୍ରଜବନ୍ଧୁ ଦାସ, ରାଜକୃଷ୍ଣ ବୋଷ, ଯଦୁମଣି ମଙ୍ଗରାଜ ଏବଂ ସମ୍ବଲପୁର ଜିଲ୍ଲାରେ ଚନ୍ଦ୍ରଶେଖର ବେହେରା, ଭାଗୀରଥି ପଟ୍ଟନାୟକ, ନୃସିଂହ ଗୁରୁ, ଘନଶ୍ୟାମ ପାଣିଗ୍ରାହୀ, ଯଶୋବନ୍ତ ଭୋଇ, ବିହାରୀ ରାମ ତନ୍ତୀ ଓ ଲକ୍ଷ୍ମୀ ନାରାୟଣ ମିଶ୍ର ଓ ଜଗନ୍ନାଥ ମିଶ୍ର: ପୁରୀ ଜିଲ୍ଲାରେ ଉତ୍କଳମଣି ଗୋପବନ୍ଧୁଙ୍କ ଛଡ଼ା ପଣ୍ଡିତ ନୀଳକଣ୍ଠ, ପଣ୍ଡିତ ଗୋଦାବରୀଶ, ପଣ୍ଡିତ କୃପାସିନ୍ଧୁ ଓ ଆଚାର୍ଯ୍ୟ ହରିହର ଏବଂ ଗଞ୍ଜାମ ଜିଲ୍ଲାରେ ବିଶ୍ୱନାଥ ଦାସ ନିରଞ୍ଜନ ପଟ୍ଟନାୟକ, ଦିବାକର ପଟ୍ଟନାୟକ, ଶରତ ଚନ୍ଦ୍ର ମହାପାତ୍ର, ମହେନ୍ଦ୍ର ପଟ୍ଟନାୟକ, ଭାଗୀରଥି ପଟ୍ଟନାୟକ ଓ ଜୟ ମଙ୍ଗଳ ରଥ ପ୍ରମୁଖ ଅସହଯୋଗ ସଂଗ୍ରାମରେ ମୁଖ୍ୟ ପରିଚାଳକ ଥିଲେ ।

ଅସହଯୋଗ ସଂଗ୍ରାମର ପରିଚାଳନା ଓ ପ୍ରାଥମିକ ତାଲିମ ପାଇଁ ସେତେବେଳେ ଓଡ଼ିଶାର ବିଭିନ୍ନ ସ୍ଥାନରେ କେତେଗୁଡ଼ିଏ ସ୍ୱରାଜାଶ୍ରମ ପ୍ରତିଷ୍ଠିତ ହୋଇଥିଲା । ଏଥି ଭିତରେ କଟକ ଜିଲ୍ଲାର ସ୍ୱରାଜାଶ୍ରମ, ଅଳକାଶ୍ରମ (ଜଗତସିଂହପୁର), ପୁରୀ ଜିଲ୍ଲାରେ ସାକ୍ଷୀ ଗୋପାଳ, ପୁରୀ, ବାଲେଶ୍ୱର ଜିଲ୍ଲାରେ ବାଲେଶ୍ୱର, ସୋରୋ ଓ ଭଦ୍ରକ ଆଶ୍ରମ ଉଲ୍ଲେଖଯୋଗ୍ୟ । ଏହି ଆଶ୍ରମ ଭିତରୁ କଟକର ସ୍ୱରାଜାଶ୍ରମ ଓ ଅଳକାଶ୍ରମ କେନ୍ଦ୍ରୀୟ ଆଶ୍ରମ ଭଳି କାର୍ଯ୍ୟ କରୁଥିଲା ଏବଂ ଏଠାକୁ ଓଡ଼ିଶାର ଚାରିଆଡୁ କର୍ମୀମାନେ ଆସି ରହୁଥିଲେ ଏବଂ କଂଗ୍ରେସର ଗଠନ ମୂଳକ କାର୍ଯ୍ୟକ୍ରମ ତଥା ଅସହଯୋଗ ସଂଗ୍ରାମ ବିଷୟରେ ଶିକ୍ଷା ଲାଭ କରୁଥିଲେ । ଏହାଛଡ଼ା ଅସହଯୋଗ ସଂଗ୍ରାମ ଆହ୍ୱାନରେ ଯେଉଁମାନେ ସ୍କୁଲ କଲେଜ ପଢ଼ା ଛାଡ଼ି ବାହାରି ଆସିଥିଲେ, ସେମାନଙ୍କ ପାଇଁ ତଥା ଅନ୍ୟ ଛାତ୍ରମାନଙ୍କ ପାଇଁ କେତେକ ଜାତୀୟ ବିଦ୍ୟାଳୟ ଏହି ସମୟରେ ସ୍ଥାପିତ ହୋଇଥିଲା । ଏଥି ଭିତରେ ସତ୍ୟବାଦୀ ବନ ବିଦ୍ୟାଳୟକୁ ଜାତୀୟ ବିଦ୍ୟାଳୟରେ ପରିଣତ କରାଯାଇଥିଲା ଏବଂ ଏହା ପଣ୍ଡିତ କୃପାସିନ୍ଧୁ ମିଶ୍ରଙ୍କ ତତ୍ତ୍ୱାବଧାନରେ ପରିଚାଳିତ ହେଉଥିଲା । ସେହିପରି ଚକ୍ରଧରପୁର ହାଇସ୍କୁଲକୁ ଜାତୀୟ ବିଦ୍ୟାଳୟରେ ପରିଣତ କରାଯାଇ ପଣ୍ଡିତ ଗୋଦାବରୀଶ ମିଶ୍ରଙ୍କ ପରିଚାଳନାରେ ରଖାଯାଇଥିଲା । ସମ୍ବଲପୁରରେ ପଣ୍ଡିତ ନିଳକଣ୍ଠ ଦାସଙ୍କ ନେତୃତ୍ୱରେ ଏକ ଜାତୀୟ ବିଦ୍ୟାଳୟ ସ୍ଥାପିତ ହୋଇଥିଲା । ଗୋପବନ୍ଧୁ ଚୌଧୁରୀ, ଶ୍ରୀମତୀ ରମା ଦେବୀ ଓ ପଣ୍ଡିତ ପ୍ରାଣକୃଷ୍ଣ ପଢ଼ିଆରୀଙ୍କ ନେତୃତ୍ୱରେ ପ୍ରତିଷ୍ଠିତ କଟକ ଜିଲ୍ଲାର ଅଳକାଶ୍ରମଠାରେ ମଧ୍ୟ ଏକ ଜାତୀୟ ବିଦ୍ୟାଳୟ ସ୍ଥାପିତ ହୋଇଥିଲା । ଏଥିରେ ନବକୃଷ୍ଣ ଚୌଧୁରୀ ଓ ଗୋକୁଳାନନ୍ଦ ମହାନ୍ତି ପ୍ରମୁଖ ଶିକ୍ଷାଦାନ କରୁଥିଲେ । ଉତ୍କଳ ଶିକ୍ଷା ପରିଷଦ ନାମରେ ଏକ କେନ୍ଦ୍ରୀୟ ଶିକ୍ଷାନୁଷ୍ଠାନ ଉତ୍କଳମଣୀ ଗୋପବନ୍ଧୁଙ୍କ ନେତୃତ୍ୱରେ ପ୍ରତିଷ୍ଠିତ ହୋଇଥିଲା । ନନ୍ଦ କିଶୋର ଦାସ ଏହାର ସେକ୍ରେଟେରୀ ଭାବରେ କାର୍ଯ୍ୟ କରୁଥିଲେ । ଅସହଯୋଗ ଆନ୍ଦୋଳନ ବେଳେ ଯେଉଁମାନେ ପଢ଼ା ଛାଡ଼ି ଦେଇଥିଲେ ତଥା ଅନ୍ୟ ଯୁବକମାନଙ୍କ ପାଇଁ କି ପ୍ରକାର ଶିକ୍ଷାଦାନ ପଦ୍ଧତି ଅନୁସରଣ କରାଯିବ ତାହା ନିର୍ଦ୍ଧାରଣ କରିବା ଥିଲା ଏହାର ପ୍ରଧାନ କାର୍ଯ୍ୟ ।

### ମହାତ୍ମାଗାନ୍ଧୀଙ୍କ ପ୍ରଥମ ଓଡ଼ିଶା ପରିଦର୍ଶନ

୧୯୨୧ ଫେବୃୟାରୀ ମାସରେ ଉତ୍କଳ ପ୍ରଦେଶ କଂଗ୍ରେସ କମିଟି ଉତ୍କଳମଣୀ ପଣ୍ଡିତ ଗୋପବନ୍ଧୁ ଦାସଙ୍କ ନେତୃତ୍ୱରେ ଅହିଂସ ଯୋଗର ବାର୍ତ୍ତା ଓଡ଼ିଶାରେ ପ୍ରଚାର କରି ସଂଗ୍ରାମ ପାଇଁ କ୍ଷେତ୍ର ପ୍ରସ୍ତୁତ କରିଥିଲେ । ଏହାର ମାସକ ପରେ ମାର୍ଚ୍ଚ ମାସରେ ମହାତ୍ମା ଗାନ୍ଧୀ ଓଡ଼ିଶା ପରିଦର୍ଶନରେ ଆସିଲେ । ଏହାଥିଲା ତାଙ୍କର ପ୍ରଥମ ଓଡ଼ିଶା ଗସ୍ତ । ଓଡ଼ିଶାରେ ତାଙ୍କର ପାଞ୍ଚ ଦିନ ରହଣି ଭିତରେ ଗାନ୍ଧୀଜୀ କଟକ, ପୁରୀ, ସତ୍ୟବାଦୀ, ଭଦ୍ରକ ଓ ବ୍ରହ୍ମପୁର ପରିଦର୍ଶନ କରି ସାଧାରଣ ସଭାମାନଙ୍କରେ ଭାଷଣ ଦେଇ ଅସହଯୋଗ ସଂଗ୍ରାମରେ ବହୁ ସଂଖ୍ୟାରେ ଯୋଗ ଦେବା ପାଇଁ ଓଡ଼ିଶାବାସୀଙ୍କୁ ନିବେଦନ କରିଥିଲେ ଓ ପୁରୀର କେତେକ ବନ୍ୟା ବିଧ୍ୱସ୍ତ ଅଞ୍ଚଳ ବୁଲି ଦେଖିଥିଲେ । ତାଙ୍କ ସହିତ ଉତ୍କଳମଣୀ ଗୋପବନ୍ଧୁ ରହିଥିଲେ । ମହାତ୍ମା ଗାନ୍ଧୀଙ୍କ ପରିଦର୍ଶନ ଓଡ଼ିଶାବାସୀଙ୍କ ଭିତରେ ଅସହଯୋଗ ସଂଗ୍ରାମ ପାଇଁ ଅପୂର୍ବ ଉତ୍ସାହ ଓ ଉନ୍ମାଦନା ସୃଷ୍ଟି କରିଥିଲା । ୧୯୨୧ ପରେ କଂଗ୍ରେସ କର୍ମୀମାନେ ଗାଁ ଗହଳରେ ଗାନ୍ଧୀଜୀଙ୍କ ବାର୍ତ୍ତା ଓ ଅସହଯୋଗର କାର୍ଯ୍ୟକ୍ରମ ପ୍ରଚାର କରିବାରେ ଲାଗିପଡ଼ିଥିଲେ ।

### ଗାନ୍ଧୀଜୀଙ୍କ ଆହ୍ୱାନରେ ଯେଉଁମାନେ ପଢ଼ା ଚାକିରି ଛାଡ଼ିଲେ

ଗାନ୍ଧୀଜୀଙ୍କ ନେତୃତ୍ୱରେ ପରିଚାଳିତ ଅସହଯୋଗ ସଂଗ୍ରାମରେ "ପଢ଼ା ଛାଡ଼, ଚାକିରି ଛାଡ଼, ବିଲାତିଦ୍ରବ୍ୟ ଛାଡ଼" ପାଇଁ ଆହ୍ୱାନ ଦିଆଯାଇଥିଲା । ଏହି ଆହ୍ୱାନରେ ୬୦ ଜଣ ପର୍ଯ୍ୟନ୍ତ ଛାତ୍ର ପଢ଼ାପଢ଼ି ଛାଡ଼ିଥିଲେ ଏବଂ ସେମାନଙ୍କ ଭିତରୁ ୩୦ ଜଣ ଛାତ୍ର ଜାତୀୟ କଂଗ୍ରେସର ଅସହଯୋଗ ଆନ୍ଦୋଳନରେ କର୍ମୀ ହୋଇଥିଲେ । ଅସହଯୋଗ ଆରମ୍ଭ

ହେବା ପରେ ପରେ ଯେଉଁମାନେ ପଢ଼ା ଛାଡ଼ିଥିଲେ ସେମାନଙ୍କ ମଧ୍ୟରେ କଟକରୁ ହରେକୃଷ୍ଣ ମହତାବ, ନବକୃଷ୍ଣ ଚୌଧୁରୀ, ଯଦୁମଣି ମଙ୍ଗରାଜ, ରାଜକୃଷ୍ଣ ବୋଷ, ବ୍ରଜବନ୍ଧୁ ଦାସ, ନାରାୟଣ ବୀରବର ସାମନ୍ତ, କଲିକତା ଆଇନ କଲେଜ ଛାତ୍ର ଚରଣ ଦାସ ବଂଶୀଧର ମିଶ୍ର, ବାଲେଶ୍ୱରରୁ କରୁଣାକର ପାଣିଗ୍ରାହୀ, ନୀଳାମ୍ବର ଦାସ; ସମ୍ବଲପୁର ଜିଲ୍ଲାରୁ ନୃସିଂହ ଗୁରୁ, ଲକ୍ଷ୍ମୀ ନାରାୟଣ ମିଶ୍ର ଓ ଜଗନ୍ନାଥ ମିଶ୍ର; ଗଞ୍ଜାମ ଜିଲ୍ଲାରୁ ନିରଞ୍ଜନ ପଟ୍ଟନାୟକ, ଶରତ ଚନ୍ଦ୍ର ମହାପାତ୍ର, ଶ୍ୟାମସୁନ୍ଦର ପଟ୍ଟନାୟକ ଓ ବୈକୁଣ୍ଠ ନାଏକ ପ୍ରମୁଖ ଛାତ୍ରମାନେ ପଢ଼ା ଛାଡ଼ି ଦେଇଥିଲେ । ପରେ ଜଣାଗଲା ଯେ ବର୍ତ୍ତମାନ ଆନ୍ଧ୍ର ପ୍ରଦେଶରେ ଥିବା ପାରଳାଖେମୁଣ୍ଡି ନିକଟବର୍ତ୍ତୀ ଟୁଣ୍ଡୁଡି ଶାସନର ଅର୍ଜୁନ ପାଣିଗ୍ରାହୀ ଓ ନନ୍ଦ କିଶୋର ମିଶ୍ର ମାନ୍ଦ୍ରାଜର ପାଚିଆପା କଲେଜରେ ଅଧ୍ୟୟନ କରୁଥିବାବେଳେ ପଢ଼ାଛାଡ଼ି ଦେଇ ସ୍ୱାଧୀନତା ସଂଗ୍ରାମରେ ଝାସ ଦେଇଥିଲେ । ସେ ଦୁଇ ଜଣ ଓଡ଼ିଆ ଛାତ୍ର ଭାରତରେ ସର୍ବ ପ୍ରଥମେ ପଢ଼ାଛାଡ଼ି ଥିଲେ । ଏମାନଙ୍କ ଛଡା ସେତେବେଳେ ଗୋପବନ୍ଧୁ ଚୌଧୁରୀ, ପଣ୍ଡିତ ଲିଙ୍ଗରାଜ ମିଶ୍ର, ପଣ୍ଡିତ ନୀଳକଣ୍ଠ ଦାସ, ବାଲେଶ୍ୱରର ମହମ୍ମଦ ହନିଫ, ସୁରେନ୍ଦ୍ରନାଥ ଦାସ; ଗଞ୍ଜାମ ଜିଲ୍ଲାର ଶୀବନ ପଣ୍ଡା ପ୍ରମୁଖ ସରକାରୀ ଚାକିରୀରୁ ଇସ୍ତଫା ଦେଇଥିଲେ । ଭାଗୀରଥି ମହାପାତ୍ର, ଧର୍ମାନନ୍ଦ ପଟ୍ଟନାୟକ, ନିଶାମଣି ଦାସ, ଜଗବନ୍ଧୁ ସିଂହ, ସମ୍ବଲପୁରର ମହେନ୍ଦ୍ରନାଥ ବର୍ମା ଓ ଅଚ୍ୟୁତାନନ୍ଦ ପୁରୋହିତ ପ୍ରମୁଖ ଓକିଲାତି ଛାଡ଼ି ଦେଇଥିଲେ । ପରବର୍ତ୍ତୀ ସଂଗ୍ରାମରେ ମୁଖ୍ୟ ଅଂଶ ଗ୍ରହଣ କରି ନେତୃତ୍ୱ ନେଇଥିଲେ ।

**ଅସହଯୋଗ ସଂଗ୍ରାମରେ ଓଡ଼ିଶାବାସୀଙ୍କ ଅବଦାନ**

୧୯୨୧ ମସିହା ଜାନୁଆରୀ ମାସଠାରୁ ଜୁନମାସ ପର୍ଯ୍ୟନ୍ତ ଅସହଯୋଗ ସଂଗ୍ରାମର ପ୍ରଥମ ପର୍ଯ୍ୟାୟରେ ଓଡ଼ିଶାରେ କଂଗ୍ରେସ ସଭ୍ୟ ଓ ତିଳକ ପାଣ୍ଠି ସଂଗ୍ରହ କାର୍ଯ୍ୟ ଚାଲିଥିଲା । ଏହି ସମୟ ଭିତରେ ମହାତ୍ମାଗାନ୍ଧୀଙ୍କର ଓଡ଼ିଶା ପରିଦର୍ଶନ ଓ ପାଞ୍ଚଦିନ ପର୍ଯ୍ୟନ୍ତ ଓଡ଼ିଶାରେ ଭିନ୍ନ ଭିନ୍ନ ସ୍ଥାନରେ ସାଧାରଣ ସଭାମାନଙ୍କରେ ଓଡ଼ିଶାବାସୀଙ୍କୁ ଉଦ୍‌ବୋଧନ ଦେବା ଫଳରେ ସମଗ୍ର ଓଡ଼ିଶାରେ ଅସହଯୋଗ ସଂଗ୍ରାମର ବାର୍ତ୍ତା ପ୍ରଚାର ପାଇଁ ବିଶେଷ ସହାୟକ ହୋଇଥିଲା । ଏହାପରେ ଉତ୍କଳମଣି ଗୋପବନ୍ଧୁଙ୍କ ନେତୃତ୍ୱରେ ଉତ୍ସାହୀ ଯୁବକ କଂଗ୍ରେସ କର୍ମୀମାନେ ପୁରପଲ୍ଲୀ ବୁଲି ସଂଗ୍ରାମର ବାର୍ତ୍ତା ପ୍ରଚାର ସଙ୍ଗେ ସଙ୍ଗେ କଂଗ୍ରେସ ସଭ୍ୟ ସଂଗ୍ରହ ଓ ତିଳକ ପାଣ୍ଠି ପାଇଁ ଅର୍ଥ ସଂଗ୍ରହରେ ଲାଗି ପଡ଼ିଥିଲେ । ୧୯୨୧ ମସିହା ଜୁନ ଶେଷ ବେଳକୁ ୪୦ ହଜାର କଂଗ୍ରେସ ସଭ୍ୟ ହୋଇସାରିଥିଲେ, ତିଳକ ପାଣ୍ଠି ପାଇଁ ୨୨ ହଜାର ଟଙ୍କା ସଂଗୃହୀତ ହୋଇଥିଲା ଓ ୧୫ ହଜାର ପର୍ଯ୍ୟନ୍ତ ଚରଖା ଚାଲିଥିଲା । ସଙ୍ଗେ ସଙ୍ଗେ ବିଲାତି ଲୁଗା ବର୍ଜନ, ବିଲାତି ଲୁଗା ଦୋକାନ ଆଗରେ ପିକେଟିଂ, ମଦ ଓ ଗଞ୍ଜେଇ ଅଫିମ ଦୋକାନ ଆଗରେ ପିକେଟିଂ ଜୋରସୋରରେ ଚାଲିଥିଲା । ସେତେବେଳେ ଭାରତର ଅନ୍ୟାନ୍ୟ ଅଞ୍ଚଳରେ ଯେପରି ଉତ୍ସାହ ଓ ଉଦ୍ଦୀପନାରେ ଅସହଯୋଗର କାର୍ଯ୍ୟକ୍ରମ ଚାଲିଥିଲା, ଓଡ଼ିଶାରେ ସେହିପରି ଚାଲିଥିଲା । ଲୁଗା ଦୋକାନ ଆଗରେ ପିକେଟିଂ ଫଳରେ ବହୁ ବଜାରରେ ବିଲାତି ଲୁଗା ବିକ୍ରି ବନ୍ଦ ହୋଇ ଯାଇଥିଲା । ଡକ୍ଟର ମହତାବଙ୍କ ବର୍ଣ୍ଣନା ଅନୁସାରେ ବାଲେଶ୍ୱରରେ ବର୍ଷେରୁ ଅଧିକ କାଳ ବିଦେଶୀ ଲୁଗା ମୋଟେ ଆସି ନଥିଲା । କର୍ମୀମାନେ କୁଲି ଓ ବଳଦ ଗାଡ଼ିବାଲାଙ୍କୁ ବିଲାତି ଲୁଗା ନବୁହିବା ପାଇଁ ପ୍ରବର୍ତ୍ତାଇ ଥିଲେ ତଥା ବିଲାତି ଲୁଗା ନେଇ ଯାଉଥିବା ଗାଡ଼ି ଆଗରେ ସେମାନେ ଶୋଇ ଯାଇ ସେମାନଙ୍କୁ ବାଟ ଓଗାଳି ରଖୁଥିଲେ । ଏମିତିକି ବାଲେଶ୍ୱରର ଯେଉଁ ବିଲାତି ଲୁଗା ବେପାରିଙ୍କ କଳ ଥିଲା, ସେହି କଳରେ କୁଲିମାନେ କଳରେ କାମ କରିନଥିଲେ । ଅନେକ ସ୍ଥାନରେ ଏହି ସତ୍ୟାଗ୍ରହ ଏପରି ଆକାର ଧାରଣ କଲା ଯେ ଲୁଗା ବ୍ୟବସାୟୀମାନେ ଜୋରିମାନା ଦେଇ କଲିକତାକୁ ଲୁଗା ଫେରାଇ ଦେଇଥିଲେ । ଉତ୍କଳମଣି ଗୋପବନ୍ଧୁଙ୍କ ସଂଗଠନ ଫଳରେ କଲିକତାର ୨୦ ହଜାର ସୁତା ପଟିରେ କାମ କରୁଥିବା ସମସ୍ତ ଓଡ଼ିଆ ଶ୍ରମିକ ଅସହଯୋଗ କରିବାରୁ ଲୁଗା ବ୍ୟବସାୟୀମାନେ ବାଧ୍ୟ ହୋଇ ଲୁଗା କାରବାର ନ କରିବା ପାଇଁ ଚୁକ୍ତି କରିଥିଲେ । ଏହା ସଙ୍ଗେ ସଙ୍ଗେ କଟକର ଅଲକାଶ୍ରମ, ସମ୍ବଲପୁରର ଜାତୀୟ ବିଦ୍ୟାଳୟ, ଭଦ୍ରକ ଓ ଗଞ୍ଜାମ ଏବଂ ପୁରୀ ଆଶ୍ରମରେ ସୂତାକଟା ଓ ଲୁଗା ବୁଣା ଶିକ୍ଷା ଦିଆ ହେଉଥିଲା । ବିଲାତି ଲୁଗା ପ୍ରତି ମୋହ ଛାଡ଼ି ଆସିଥିଲା ଏବଂ ଖଦଡ ଲୁଗା ନହେଲେ ମଧ୍ୟ ତନ୍ତ ଲୁଗା ପିନ୍ଧିବା ପାଇଁ ଆଗ୍ରହ ବୃଦ୍ଧି ପାଇଥିଲା । ଫଳରେ ଓଡ଼ିଶାର ବିଖ୍ୟାତ ତନ୍ତ ଲୁଗା କେନ୍ଦ୍ରମାନ ପୁନର୍ଜୀବିତ ହୋଇ ଉଠିଥିଲା ।

ବିଲାତି ବସ୍ତ୍ର ବର୍ଜନ ପରି ମଦ, ଗଞ୍ଜେଇ ଓ ଅଫିମ ପ୍ରଭୃତି ନିଶାଦ୍ରବ୍ୟ ବର୍ଜନ ପାଇଁ ଅସହଯୋଗ ସଂଗ୍ରାମ ବେଳେ ଯେଉଁ ଆହ୍ୱାନ ଦିଆଯାଇଥିଲା ଓ ମଦ ଗଞ୍ଜେଇ ଦୋକାନ ଆଗରେ ଯେଉଁ ପିକେଟିଂ ହୋଇଥିଲା ତାହା ବହୁ ପରିମାଣରେ ଫଳପ୍ରଦ ହୋଇଥିଲା । ମଦ ଓ ଗଞ୍ଜେଇ ଦୋକାନକୁ ଯିବା ପାଇଁ ନିଶାଖୋରମାନେ ମଧ୍ୟ ସଂକୋଚ ବୋଧ କରିଥିଲେ । ଅନେକ ଲୋକ ମଦ ଗଞ୍ଜେଇ ଛାଡ଼ି ଦେଇଥିଲେ । ଯେଉଁମାନେ ଖାଉଥିଲେ ସେମାନେ ଲୁଚେଇ କରି ତାହା କରୁଥିଲେ କାରଣ ଏଭଳି ନିଶା ଦ୍ରବ୍ୟ ଖାଇବା ଘୃଣ୍ୟ କଥା ବୋଲି ଲୋକେ ବିଶ୍ୱାସ କରିଥିଲେ । ଅଫିସ ଅସହଯୋଗ ଫଳରେ ଲୋକେ ମାଲିମକଦମା ବିଚାର ପାଇଁ କୋର୍ଟକୁ ନଯାଇ ଅନେକ ସ୍ଥାନରେ ଗ୍ରାମ ପଞ୍ଚାୟତରେ ତାହା ନିଷ୍ପତ୍ତି କରି ନେବାକୁ ଚାହିଁଥିଲେ । ଏହିପରି ବିବାଦ ନିଷ୍ପତ୍ତି ପାଇଁ ଅନେକ ଗ୍ରାମ ପଞ୍ଚାୟତମାନ ଗଠିତ ହୋଇଥିଲା । ସେତେବେଳେ ବାଲେଶ୍ୱର ଜିଲ୍ଲାର ଇଞ୍ଚୁଡ଼ି ନିକଟବର୍ତ୍ତୀ ଗୋଟିଏ ପଞ୍ଚାୟତରେ ଲୋକେ ଆସି ଜମି ବିକ୍ରି ରେଜିଷ୍ଟ୍ରି କରୁଥିବା ମଧ୍ୟ ଜଣା ପଡ଼ିଥିଲା । ସେତେବେଳେ ଲୋକଙ୍କର ପୋଲିସ ପ୍ରତି ଯେଉଁ ଭୟ ଥିଲା ତାହା ତୁଟି ଯାଇଥିଲା ।

**ଅସହଯୋଗ ସଂଗ୍ରାମ ଫଳରେ ନାରୀ ଜାଗରଣ**

ଓଡ଼ିଶାରେ ଅସହଯୋଗ ସଂଗ୍ରାମବେଳେ ଯେଉଭଳି ନାରୀ ଜାଗରଣ ହୋଇଥିଲା ତାହା ଅଭୂତପୂର୍ବ । ବିଚ୍ଛିନ୍ନାଞ୍ଚଳ ମିଶ୍ରଣ ଓ ସ୍ୱତନ୍ତ୍ର ପ୍ରଦେଶ ଗଠନ ପାଇଁ ପ୍ରାୟ ଅର୍ଦ୍ଧ ଶତାବ୍ଦୀ ଧରି ଆନ୍ଦୋଳନ ହୋଇଥିଲେ ମଧ୍ୟ ସେଥିରେ କୌଣସି ନାରୀ କର୍ମୀ ମୁଖ୍ୟ ଭାଗ ନେଇଥିବାର ଜଣାଯାଇ ନଥିଲା/ମାତ୍ର ଓଡ଼ିଶାରେ ଅସହଯୋଗ ସଂଗ୍ରାମ ବାର୍ତ୍ତା ପହଞ୍ଚିବା ସଙ୍ଗେ ସଙ୍ଗେ ବହୁ ନାରୀ କର୍ମୀ ସଂଗ୍ରାମରେ ସକ୍ରୀୟ ଭାଗ ଗ୍ରହଣ କରିବା ପାଇଁ ବାହାରି ପଡ଼ିଥିଲେ । ପ୍ରଥମେ ବାହାରିଥିଲେ ଶ୍ରୀମତୀ ସରଳା ଦେବୀ । ସେ ଜଣେ କଟକ ଜିଲ୍ଲାର ଆଭିଜାତ୍ୟ ପରିବାରର ଝିଅ ଓ ବୋହୂ ହୋଇଥିବାରୁ ଅସହଯୋଗ ଆନ୍ଦୋଳନରେ ତାଙ୍କର ସକ୍ରିୟ ଅଂଶ ଗ୍ରହଣ ଝିଅ ବୋହୂଙ୍କ ଭିତରେ ଅପୂର୍ବ ଜାଗରଣ ଆଣି ଦେଇଥିଲା । ତାଙ୍କ ପରେ ଶ୍ରୀମତୀ ରମାଦେବୀ, ଶ୍ରୀମତୀ କାଦମ୍ବିନୀ ଦେବୀ, ଶ୍ରୀମତୀ ମାଳତୀ ଦେବୀ ପ୍ରମୁଖ ସ୍ୱାଧୀନତା ସଂଗ୍ରାମରେ ନେତୃତ୍ୱ ନେଇଥିଲେ । ଉତ୍କଳ ଗୌରବ ମଧୁସୂଦନଙ୍କ ଦାସଙ୍କ ଝିଆରୀ ଓ ଗୋପବନ୍ଧୁଙ୍କ ସହଧର୍ମିଣୀ ଭାବରେ ପରିଚିତା ଶ୍ରୀମତୀ ରମା ଦେବୀ ଏବଂ ନବକୃଷ୍ଣ ଚୌଧୁରୀଙ୍କ ସହଧର୍ମିଣୀ ଉଚ୍ଚ ଶିକ୍ଷିତା ତଥା ବଙ୍ଗ ଦେଶୀୟ ସମ୍ଭ୍ରାନ୍ତ ପରିବାରର କନ୍ୟା ଶ୍ରୀମତୀ ମାଳତୀ ଦେବୀଙ୍କ ନେତୃତ୍ୱରେ ଅସହଯୋଗ ସଂଗ୍ରାମ ବେଳେ ନାରୀ ଜାଗରଣ ତଥା ଜନ ଜାଗରଣ ଘଟିଥିଲା ଏବଂ ଓଡ଼ିଶାର ବହୁ ଶିକ୍ଷିତା ଝିଅ ବୋହୂ ଘର ଛାଡ଼ି ଆସି ସ୍ୱାଧୀନତା ସଂଗ୍ରାମ ତଥା ଗାନ୍ଧିଜୀଙ୍କ ପ୍ରଦର୍ଶିତ ଗଠନମୂଳକ କାର୍ଯ୍ୟରେ ଆତ୍ମନିୟୋଗ କରିଥିଲେ । ଓଡ଼ିଶାରେ ସ୍ୱାଧୀନତା ସଂଗ୍ରାମରେ ଯେପରି ନାରୀ ଜାଗରଣ ଦେଖା ଦେଇଥିଲା, ବିହାର ପ୍ରଭୃତି ପଡୋଶୀ ରାଜ୍ୟରେ ମଧ୍ୟ ତାହା ହୋଇ ନଥିଲା । ବସ୍ତୁତଃ ଓଡ଼ିଶାର ଅପୂର୍ବ ନାରୀ ଜାଗରଣ ସ୍ୱାଧୀନତା ସଂଗ୍ରାମର ଓଡ଼ିଶାକୁ ଏକ ଉଲ୍ଲେଖଯୋଗ୍ୟ ଅବଦାନ । ଡକ୍ଟର ମହତାବ ଯଥାର୍ଥରେ ମନ୍ତବ୍ୟ କରିଛନ୍ତି ଯେ ଶତବର୍ଷ ଚେଷ୍ଟାରେ ମଧ୍ୟ ଏପରି ଜାଗରଣ ସମ୍ଭବ ହୋଇ ନଥାନ୍ତା

**ଅସହଯୋଗ ସଂଗ୍ରାମ ଫଳରେ ଓଡ଼ିଶାରେ ସାଂସ୍କୃତିକ ଜାଗରଣ**

ଅସହଯୋଗ ସଂଗ୍ରାମ ଫଳରେ କେବଳ ନାରୀ ଜାଗରଣ ନୁହେଁ ସାଂସ୍କୃତିକ କ୍ଷେତ୍ରରେ ଉଲ୍ଲେଖଯୋଗ୍ୟ ଜାଗରଣ ଦେଖାଦେଇଥିଲା ।

ସେତେବେଳକୁ ଶଶୀଭୂଷଣ ରଥଙ୍କ ଦ୍ୱାରା ପ୍ରତିଷ୍ଠିତ ସାପ୍ତାହିକ ଆଶା ଓଡ଼ିଶାର ଏକମାତ୍ର ସାପ୍ତାହିକ ପତ୍ରିକା ଥିଲା ଏବଂ ଏହି ପତ୍ରିକା ବିଚ୍ଛିନ୍ନାତ୍ମକ ମିତ୍ରଙ୍କୁ ମୁଖ୍ୟତଃ ସମର୍ଥନ କରୁଥିଲା । ଅସହଯୋଗ ସଂଗ୍ରାମ ପୂର୍ବରୁ ୧୯୧୯ରେ ଉତ୍କଳମଣୀ ଗୋପବନ୍ଧୁ ସାପ୍ତାହିକ ସମାଜ ପ୍ରକାଶ କରିଥିଲେ ଏବଂ ତାପରେ ୧୯୨୩ରେ ଡକ୍ଟର ହରେକୃଷ୍ଣ ମହତାବ ସାପ୍ତାହିକ ପ୍ରଜାତନ୍ତ୍ର ପ୍ରକାଶ କଲେ । ସ୍ୱାଧୀନତା ସଂଗ୍ରାମର ବାର୍ତ୍ତା ପ୍ରତିପକ୍ଷରେ ପହଞ୍ଚାଇବା ଉଦ୍ଦେଶ୍ୟରେ ହି ଏହି ଦୁଇଟି ପତ୍ରିକାର ମୁଖ୍ୟ ଉଦ୍ଦେଶ୍ୟ ଥିଲା । ଏହି ସମୟରେ 'ସମାଜରେ' ପୋଲିସର ଅତ୍ୟାଚାର ବିରୁଦ୍ଧରେ ଗୋଟିଏ ଘଟଣା ପ୍ରକାଶ ପାଇବାରୁ ପତ୍ରିକାର ସଂପାଦକ ଭାବରେ ଗୋପବନ୍ଧୁଙ୍କ ନାମରେ ଏକ ମାନହାନୀ ମକଦ୍ଦମା ହୋଇଥିଲା । ନେତାଜୀ ସୁଭାଷ ଚନ୍ଦ୍ର ବୋଷଙ୍କ ଭାଇ ସୁରେଶ ଚନ୍ଦ୍ର ବୋଷଙ୍କ କୋର୍ଟରେ ଏହି ମକଦ୍ଦମା ବିଚାର ହେଲା । ଗୋପବନ୍ଧୁ ଆତ୍ମପକ୍ଷ ସମର୍ଥନ କରିନଥିଲେ । ବିଚାରକ ସୁରେଶ ଚନ୍ଦ୍ର ବୋଷ ଗୋପବନ୍ଧୁଙ୍କୁ ନିର୍ଦ୍ଦୋଷରେ ଖଲାସ କରି ଦେଇଥିଲେ ଓ ନିଜେ ଇସ୍ତଫା ଦେଇଥିଲେ । ସମ୍ବାଦପତ୍ର ଛଡା ବହୁ କବି ଓ ଲେଖକଙ୍କ ଦେଶପ୍ରେମମୂଳକ କବିତା ଓ ଉପନ୍ୟାସ ଓଡ଼ିଶାରେ ସ୍ୱାଧୀନତା ସଂଗ୍ରାମର ପ୍ରଚାର ଓ ପ୍ରସାର ପାଇଁ ଉତ୍ସାହ ଓ ଉନ୍ମାଦନା ସୃଷ୍ଟି କରିଥିଲା । ଅସହଯୋଗ ସଂଗ୍ରାମର ସର୍ବମାନ୍ୟ ନେତା ଉତ୍କଳମଣୀ ଗୋପବନ୍ଧୁ, ସଂଗ୍ରାମୀ କବି ବୀର କିଶୋର ଦାସ, କବି ବାଞ୍ଛାନିଧି ମହାନ୍ତିଙ୍କ ଛଡା କାନ୍ତକବି ଲକ୍ଷ୍ମୀକାନ୍ତ ମହାପାତ୍ର, ଡାକ୍ତର କୁନ୍ତଳା କୁମାରୀ ସାବତଙ୍କ ଦେଶପ୍ରେମମୂଳକ କବିତା ଥିଲା ସେତେବେଳେ ଅସହଯୋଗୀ ସଂଗ୍ରାମୀମାନଙ୍କର ଅମୂଲ୍ୟ ସଂପଦ । ସ୍ୱାଧୀନତା ସଂଗ୍ରାମକୁ ଶକ୍ତିଶାଳୀ କରିବାରେ ଏହି ଦେଶପ୍ରେମୀ କବିମାନଙ୍କର ଅବଦାନ ଅତୁଳନୀୟ । ପଦ୍ୟ ସାହିତ୍ୟକୁ ପରିପୁଷ୍ଟ କରିବାରେ ଏହି କବିତାଗୁଡ଼ିକର ଅବଦାନ ମଧ୍ୟ ରହିଥିଲା । ଏହି ସମୟରେ ଜଗବନ୍ଧୁ ସିଂହଙ୍କ ପ୍ରଣୀତ 'ଗାନ୍ଧୀ ମହାତ୍ମ୍ୟ' ଓ କୃତ୍ତିବାସ ନନ୍ଦଙ୍କ ଦ୍ୱାରା ମହାତ୍ମା ଗାନ୍ଧୀଙ୍କ 'ଇଣ୍ଡିଆନ ହୋମ ରୁଲ୍' ପୁସ୍ତକର ଓଡ଼ିଆ ଅନୁବାଦ 'ଭାରତୀୟ ସ୍ୱରାଜ୍ୟ' ବିଶେଷ ଆଦୃତ ହୋଇଥିଲା । 'ସମାଚାର ଦର୍ପଣ' ନାମରେ ଏକ ସାଇକ୍ଲୋ ଷ୍ଟାଇଲ ପତ୍ରିକା ମଧ୍ୟ ପ୍ରକାଶ ପାଉଥିଲା ।

### ସଂଗ୍ରାମ ଦମନ ପାଇଁ ଅପ କୌଶଳ

ଅସହଯୋଗ ଆନ୍ଦୋଳନ ଚାଲିଥିଲା ବେଳେ ପ୍ରତ୍ୟକ୍ଷ ଭାବରେ ଦମନ କରିବାର ପ୍ରଚେଷ୍ଟା ବିଫଳ ହେବାରୁ ବ୍ରିଟିଶ ଶାସକମାନେ ଅସହଯୋଗୀ ସଂଗ୍ରାମୀମାନଙ୍କୁ ବଦନାମ କରିବା ପାଇଁ କେତେକ ଅପକୌଶଳ କରିଥିଲେ । ଏହି ସମୟରେ କଟକ ଓ ବାଲେଶ୍ୱର ଜିଲ୍ଲାର ଗାଁ ଗହଳରେ ଘରେ ନିଆଁ ଲଗାଇ ଦିଆ ହୋଇ ୨୦ ହଜାର ପର୍ଯ୍ୟନ୍ତ ଘରପୋଡ଼ି ଦିଆ ହୋଇଥିଲା । ସ୍ୱାଧୀନତା ସଂଗ୍ରାମୀମାନେ ଏହି ଘର ପୋଡିଛନ୍ତି ବୋଲି ଲୋକଙ୍କର ବିଶ୍ୱାସ ହୋଇଯିବ ବୋଲି ଏହା କରାଯାଇଥିଲା ମାତ୍ର କିଏ ଏହା କରିଛନ୍ତି ତାହା ଲୋକେ ଠିକ୍ ଜାଣି ପାରିଲେ ନାହିଁ ପ୍ରଥମେ ଏଥିପାଇଁ ଲୋକଙ୍କ ଭିତରେ ଆତଙ୍କ ଖେଳି ଯାଇଥିଲା ଏବଂ ଲୋକେ ରାତି ଅନିଦ୍ରା ହୋଇ କଟୁଥିଲେ । ଲୋକେ ବିଶ୍ୱାସ କରୁଥିଲେ ଯେ ପୋଲିସ କର୍ମଚାରୀମାନେ ଏଭଳି ହୀନ କାର୍ଯ୍ୟ କରୁଥିଲେ । ଲୋକେ ଜଗି ରହି ସହର ଓ ମଫସଲରେ ପୋଲିସ କନେଷ୍ଟବଳ ଓ ଚୌକିଦାରମାନଙ୍କୁ ଘରପୋଡ଼ି ଅଭିଯୋଗରେ ଧରି ମାଡ଼ ଦେଉଥିଲେ । ସେତେବେଳେ ପୋଲିସ ପ୍ରତି ଲୋକଙ୍କର ଭୟ ଛୁଟି ଯାଇଥିଲା । ଅସହଯୋଗ ସଂଗ୍ରାମ ଲୋକଙ୍କ ହୃଦୟରେ ଶକ୍ତି ଓ ସାହସ ଦେଇଥିଲା ।

### କନିକା ପ୍ରଜାଙ୍କ ଉପରେ ଅତ୍ୟାଚାର

ଅସହଯୋଗ ସଂଗ୍ରାମ ଚାଲିଥିଲାବେଳେ କନିକା ପ୍ରଜାଙ୍କ ଉପରେ ଯେଉଁ ଅତ୍ୟାଚାର ହେଲା ତାହା ସମଗ୍ର ଦେଶବାସୀଙ୍କ ଦୃଷ୍ଟି ଆକର୍ଷଣ କରିଥିଲା । ପ୍ରତ୍ୟକ୍ଷ ଭାବରେ ଏହା ଅସହଯୋଗ ଆନ୍ଦୋଳନର ଅଙ୍ଗ ନ ହେଲେ ମଧ୍ୟ ଅସହଯୋଗ ସଂଗ୍ରାମ ଯୋଗୁଁ ହି କନିକା ପ୍ରଜାମାନେ ସାହସର ସହିତ ଏହିଭଳି ଆନ୍ଦୋଳନ କରି ଅତ୍ୟାଚାର ଭୋଗିଥିଲେ । ସେତେବେଳେ କନିକା ରାଜା ତାଙ୍କ ଜମିଦାରୀ ଇଲାକାରେ ବନ୍ଦୋବସ୍ତ କରାଇବାକୁ ଚାହିଁଥିଲେ ମାତ୍ର ପ୍ରଜାମାନେ ଦାବୀ କଲେ ଯେ ବନ୍ଦୋବସ୍ତ ରାଜା ନ କରି ସରକାର ନିଜେ କରନ୍ତୁ । ସେଥିପାଇଁ ଛାମୁକା ଅଞ୍ଚଳର ପ୍ରଜାମାନେ କମିଶନରଙ୍କୁ ଦେଖା କରିବାକୁ ସ୍ଥିର କରିଥିଲେ । ଏହି ଲୋକମାନେ କମିଶନରଙ୍କୁ ଆକ୍ରମଣ କରିବାକୁ ଆସୁଛନ୍ତି ବୋଲି ତାଙ୍କ ଧାରଣା ଦିଆହେଲା । ତେଣୁ ଲୋକଙ୍କ ଉପରେ ଅକଥନୀୟ ଅତ୍ୟାଚାର କରାଗଲା । ଅସହଯୋଗ ଆନ୍ଦୋଳନ ସହିତ ଏହାକୁ ଯୋଡ଼ି ଦେଇ ଏହିଭଳି ଦମନ କରାଗଲା । ବହୁ ଲୋକଙ୍କୁ ଗିରଫ କରି ସଙ୍ଗେ ସଙ୍ଗେ ବିଚାର ହୋଇ ଦଣ୍ଡ ଦିଆ ହେଲା । ଉତ୍କଳମଣି ଗୋପବନ୍ଧୁ ଓ ଭାଗୀରଥି ମହାପାତ୍ର ଏହି ଘଟଣା ସଂପର୍କରେ ବୁଝିବାକୁ ଉଦ୍ୟମ ଯାଇଥିବାବେଳେ ତାଙ୍କୁ ଗିରଫ କରି ଛ'ମାସ ଜେଲ ଦଣ୍ଡ ଦିଆ ଯାଇଥିଲା । ଡକ୍ଟର ମହତାବଙ୍କ ହିସାବ ଅନୁଯାୟୀ କନିକା ଜମିଦାରୀ ଅଞ୍ଚଳର ୨୦ ଲକ୍ଷ ଟଙ୍କାର ସମ୍ପତ୍ତି ଲୁଟ ହୋଇଥିଲା ଓ ୧୫୦ ଲୋକଙ୍କୁ ମାରପିଟ ଅପରାଧରେ ଗିରଫ କରାଯାଇଥିଲା । ବହୁ ଧନୀ ଲୋକ ସେତେବେଳେ କନିକା ଛାଡ଼ି ଚାଲିଆସି ଶେଷ ଜୀବନ ପର୍ଯ୍ୟନ୍ତ ଦୁଃଖ ଅବସ୍ଥାରେ ରହିଥିଲେ । କନିକାଠାରେ ଏହି ଆନ୍ଦୋଳନ ଚାଲିଥିଲାବେଳେ ଓ ଭାରତର ଅନ୍ୟାନ୍ୟ ପ୍ରଦେଶ ପରି ଓଡ଼ିଶାର ନେତାମାନେ ଜେଲରେ ଥିଲାବେଳେ ୧୯୨୨ରେ ଚଉରୀଚଉରାଠାରେ ଏକ ହିଂସାକାଣ୍ଡ ଯୋଗୁଁ ମହାତ୍ମା ହଠାତ୍ ଅସହଯୋଗ ଆନ୍ଦୋଳନ ସ୍ଥଗିତ ରଖିଦେଲେ ।

୧୧୩, ବାପୁଜୀ ନଗର
ଭୁବନେଶ୍ୱର



# ଅମୃତ ଅନୁଭବ

ଶ୍ରୀମତୀ ଅନ୍ନପୂର୍ଣ୍ଣା ମହାରଣା

୧୯୩୨ ମସିହାର ସତ୍ୟାଗ୍ରହ ଆନ୍ଦୋଳନ ବେଳର କଥା । ଦିନେ ସକାଳେ ଆମେ ଚଉଧୁରୀଘରର ଦାଣ୍ଡ କବାଟ ଫିଟାଇ ଦେଖିଲୁ ଯେ ଜଣେ ଅପରିଚିତା ଯୁବତୀ ଦାଣ୍ଡ ବାରଣ୍ଡାରେ ବସିଛନ୍ତି । ତାଙ୍କ ମଥାଟି ଜଟାବୃତ । ସେ ସମୟରେ ସତ୍ୟାଗ୍ରହ ଆନ୍ଦୋଳନରେ ଯୋଗ ଦେବାକୁ ଅନେକ ମହିଳା ଏହିପରି ଆକସ୍ମିକ ଭାବରେ ଚୌଧୁରୀ ଘରକୁ ଆସୁଥିବାରୁ ଆମେ ତାଙ୍କୁ ଦେଖି ବିସ୍ମିତ ନ ହୋଇ ରମାଦେବୀ ଓ ମାଳତୀ ଚୌଧୁରୀଙ୍କୁ ତାଙ୍କ ଆଗମନର ବାର୍ତ୍ତା ଶୁଣାଇ ଦେଲୁ । ସେ ଦୁହେଁ ଦାଣ୍ଡକୁ ଆସି ସେହି ଯୁବତୀଙ୍କ ସଙ୍ଗେ କଥାବାର୍ତ୍ତା ହୋଇ ଜାଣିଲେ ଯେ ତାଙ୍କ ବାପଘର ନିକିରାଇରେ, ତାଙ୍କ ବାପା କୃଷ୍ଣ ସିଂହ ଜଣେ ସ୍କୁଲ ସବ୍ ଇନ୍ସପେକ୍ଟର । ତାଙ୍କ ଶାଶୁଘର ବିଂଝାରପୁର ଥାନାର ରାମପୁର ଗାଁରେ । ପତି-ବିୟୋଗ ହେବାରୁ ସେ କେଶ ପ୍ରସାଧନ କରୁ ନ ଥିବାରୁ ମୁଣ୍ଡରେ ଜଟା ହୋଇ ଯାଇଛି । ତାଙ୍କ ନାମ ସୁଶୀଳା । ସେ ଲୋକଙ୍କ ମୁହଁରୁ ଶୁଣିଲେ ଯେ ମହାତ୍ମା ଗାନ୍ଧୀଙ୍କ କଂଗ୍ରେସରେ ମିଶି ଅନେକ ସ୍ତ୍ରୀଲୋକ ଘରଦ୍ୱାର ଛାଡ଼ି ଜେଲ ଯାଉଛନ୍ତି । ଆନନ୍ଦପୁର ଗାଁର ଭଗୀରଥ ଦାସଙ୍କ ସ୍ତ୍ରୀ ପ୍ରିୟମ୍ବଦା ଦେବୀ ଓ ଆହୁରି କେତେ ସ୍ତ୍ରୀଲୋକ ଜଣ ସେପରି ଗାଁମାନଙ୍କରୁ ଜେଲ ଗଲେଣି । ଏକଥା ଶୁଣି ସୁଶୀଳାଙ୍କର ମଧ୍ୟ କଂଗ୍ରେସରେ ମିଶିବାକୁ ମନ ହେଲା । ଏ କଥା ସେ ତାଙ୍କ ଖୁଡ଼ୀଶାଶୁଙ୍କୁ କହିବାରୁ ଖୁଡ଼ୀଶାଶୁ ଥଟା ପ୍ରକଟ କରିଦେଲେ । ଭଦ୍ର ଘର ବୋହୂଟା ଘରୁ ପଳେଇଲେ ହିବଦ୍ଧିଆ ପାଣି ପାଇବେ ନାହିଁ, ସାହି ଭାଇ ଜାତିରୁ ଅଟକ କରିବେ ଆଦି କଥା କହି କାଳେ ସୁଶୀଳା ଲୁଚିକରି ପଳେଇବେ, ଏହି ଆଶଙ୍କାରେ ତାଙ୍କୁ ସବୁ ବେଳେ ଘରର ସ୍ତ୍ରୀଲୋକମାନେ ନଜର ଉପରେ ରଖିଲେ ।

ସୁଶୀଳାଙ୍କ ମନ ଦିନକୁ ଦିନ କଂଗ୍ରେସରେ ମିଶିବାକୁ ଅଧିକ ଉଚ୍ଛନ୍ନ ହେବାକୁ ଲାଗିଲା । ଦିନେ ସଂକଳ୍ପ କଲେ– ଆଜି ମୁଁ ଏ ଘରୁ ଯିବି । ସଞ୍ଜ ବୁଡ଼ିଗଲା । ଖୁଡ଼ୀଶାଶୁଙ୍କୁ ସାଙ୍ଗରେ ନେଇ ସେ ନିତ୍ୟକର୍ମ ସାରିବାକୁ ନଈକୁ ଗଲେ । ଖରାଦିନ, ପଣା ନଈ, ଅନ୍ଧାର ରାତି । ସୁଶୀଳା ଅଣ୍ଠାପାଣି କରିବା ବାହାନାରେ ନଈ ଭିତରକୁ ପଶିଯାଇ ନଈ ପାରି ହୋଇ ଆର ପାରି ନଈ ଅତଡ଼ିରେ ଖରିବୁଦା ମୂଳେ ଲୁଚିଲେ । ତାଙ୍କର ବିଳମ୍ବ ଦେଖି ଖୁଡ଼ୀଶାଶୁ ବାରମ୍ବାର ଡାକି ଡାକି କିଛି ଉତ୍ତର ନ ପାଇ ପାଟି ତୁରି କଲେ । ଗାଁଲୋକେ ତାଙ୍କ ପାଟି ଶୁଣି ଠେଙ୍ଗା ଲଣ୍ଠନ ଧରି ଆସି ଘଟଣା ବୁଝି ସୁରିଥାରେ ଖୋଜାଖୋଜି କଲେ କିନ୍ତୁ ସୁଶୀଳାଙ୍କୁ ପାଇଲେ ନାହିଁ । ନଈରେ ବୁଡ଼ିଗଲା ଭଳି ପାଣି ତ ନାହିଁ, ତେଣୁ ବୋହୂଟା ନିଶ୍ଚୟ ପଳେଇଛି ବୋଲି ସମସ୍ତେ ଏକମତ ହୋଇ ରାତି ପାହିଲେ ଆବଶ୍ୟକ ପ୍ରତିବିଧାନ କରିବା ପାଇଁ ସଂକଳ୍ପବଦ୍ଧ ହୋଇ ସମସ୍ତେ ଯେଝା ଘରକୁ ଗଲେ । ଗହଳି ଭାଙ୍ଗିଗଲାରୁ ସୁଶୀଳା ଖରିବୁଦା ମୂଳରୁ ବାହାରି ସେହି ଅନ୍ଧାର ରାତିରେ ଆନନ୍ଦପୁର ଆସି ପ୍ରିୟମ୍ବଦା ଦେବୀଙ୍କୁ ଦେଖା କଲେ ଏବଂ ତାଙ୍କଠାରୁ ସବୁକଥା ବୁଝି ରାତି ନ ପାହୁଣୁ ସେଠାରୁ ପଳେଇ ଆସି କଟକରେ ପହଞ୍ଚିଛନ୍ତି ।

ସେ ସମୟରେ ଚୌଧୁରୀ ଘର ଉପରେ ପୁଲିସଙ୍କର କଡ଼ା ନଜର ଥାଏ । ଗୋଇନ୍ଦା ପୁଲିସ ଜଗି ବସିଥାନ୍ତି, ତାହା ଛଡ଼ା ପ୍ରାୟ ପ୍ରତି ସପ୍ତାହରେ ଘର ଖାନତଲାସ ହେଉଥାଏ । ତେଣୁ, ମହିଳା ସତ୍ୟାଗ୍ରହୀମାନେ ଚୌଧୁରୀ ଘରେ ରହିଲେ ପିକେଟିଂ କରିବା, ପ୍ରଚାରପତ୍ର ବାଣ୍ଟିବା ବା ଶୋଭାଯାତ୍ରାରେ

ଯୋଗ ଦେବା ପୂର୍ବରୁ ଜାଣେ ପୁଲିସ ଘର ଖାନତଲାସ କରି ସେମାନଙ୍କୁ ଗିରଫ କରିନେବେ, ସେଥିପାଇଁ ଆଲମଗଞ୍ଜ ବଜାରର ଡକ୍ଟର ରଜନୀକାନ୍ତ ଘୋଷ, ତେଲେଙ୍ଗା ବଜାରର ଲକ୍ଷ୍ମୀବାବୁ, ଓସପୁରର କୃଷ୍ଣ ପ୍ରଧାନ ଆଦିଙ୍କ ଘରକୁ ସେମାନଙ୍କୁ ସତର୍କତାର ସହିତ ପଠାଇ ଦିଆଯାଏ । ସେଠାରୁ ସେମାନେ ବେଳକୁଣ୍ଡି ବାହାରି ଆସି ଯଥା ସମୟରେ ପ୍ରସ୍ତରପତ୍ର ବାଣ୍ଟିବା ଆଦି କାମ କରି ଗିରଫ ହୋଇ ଜେଲକୁ ଯାଆନ୍ତି । ସୁଶୀଳା ଏହିପରି ଆତ୍ମଗୋପନ କରି ରହି ଯଥା ସମୟରେ କାର୍ଯ୍ୟକ୍ରମରେ ଯୋଗ ଦେଇ ଗିରଫ ହୋଇ ଜେଲ ଗଲେ । ଜେଲରେ ଏକାଧିକ ମହିଳା ସତ୍ୟାଗ୍ରହୀଙ୍କ ନାମ ସୁଶୀଳା ଥିବାରୁ ତାଙ୍କର ନାମ ହେଲା "ଜଟାଧାରୀ ସୁଶୀଳା" ।

ଜେଲ ଭିତରେ ଥିବା ମହିଳା ସତ୍ୟାଗ୍ରହୀମାନଙ୍କ ମଧ୍ୟରୁ ଅନେକ ସୁଶୀଳାଙ୍କ ପରି ଭାବପ୍ରବଣ ହୋଇ ଘର ଛାଡି ଚାଲି ଆସିଥାନ୍ତି । ଆଉ ଅନେକଙ୍କୁ ସତ୍ୟାଗ୍ରହରେ ଯୋଗ ଦେବା ପାଇଁ ପ୍ରରୋଚିତ କରି ଅଣାଯାଇଥାଏ । ସେମାନଙ୍କୁ ଆନ୍ଦୋଳନ ବିଷୟରେ ଗୋଟିଏ ଧାରଣା ଦେବାକୁ ଏବଂ ସେମାନଙ୍କର ସାଧାରଣ ଜ୍ଞାନର ବିକାଶ ଘଟାଇବାକୁ ଜେଲ ଭିତରେ ସବୁବେଳେ ଜଣେ ନା ଜଣେ ପ୍ରବୀଣା ମହିଳା ସତ୍ୟାଗ୍ରହୀ ଥାଆନ୍ତି । ନୂଆ ଭଉଣୀମାନଙ୍କୁ କଂଗ୍ରେସ-ଇତିହାସ, ହିନ୍ଦି, ଜାତୀୟ ସଙ୍ଗୀତ, ଜାତୀୟ ପତାକାର ମହନୀୟତା ଆଦି ବିଭିନ୍ନ ବିଷୟରେ ସେମାନେ ଶିକ୍ଷା ଦିଅନ୍ତି । ମୁଖ୍ୟତଃ କିରଣବାଳା ସେନ୍, ଜାହ୍ନବୀ ଦେବୀ, କୋକିଳ ଦେବୀ, ମାଳତୀ ଦେବୀ, ରମା ଦେବୀ, ପ୍ରିୟମ୍ବଦା ଦେବୀ ପ୍ରଭୃତିଙ୍କର ଏହି ଧନ୍ଦା ଥିଲା ।

ସୁଶୀଳା ଜେଲରୁ ଖଲାସ ହୋଇ ପୁଣି ପ୍ରସ୍ତରପତ୍ର ବାଣ୍ଟି ଗିରଫ ହେଲେ । ଏହିପରି ଏକାଧିକ ଥର ଜେଲ-ଯାତ୍ରା କରି ଥରେ ସୁଶୀଳା ଜେଲରୁ ଖଲାସ ହୋଇ ଶାଶୁଘର ଗାଁକୁ ଯିବାକୁ ମନ ବଳାଇଲେ । ସେ ଗାଁରେ ପହଞ୍ଚିବା ମାତ୍ରେ ତାଙ୍କୁ ଘରକୁ ଡାକିବା ତ ଦୂରର କଥା ସମସ୍ତେ ଏପରି ଦୂରଦୂର ଗୋଡ଼ିଆ କଲେ ଯେ ସେ ଗାଁ ଛାଡ଼ି ବାପଘର ଗାଁକୁ ଚାଲିଗଲେ । ବାପ ଘରେ ମଧ୍ୟ ତାଙ୍କୁ 'ଦୁହିତା ଦୁଇକୁଳକୁ ହିତା, ନୋହିଲେ ଦୁଇ କୁଳକୁ ପିତା'ର ଭାଷ୍ୟ ଶୁଣିବାକୁ ପଡ଼ିଲା । ଘର ବାରଣ୍ଡାରେ କଂସା ବାସନରେ ଖାଇବା ତାଙ୍କ ପାଇଁ ବାରଣ ହେଲା, ଯେଉଁ ହାଣ୍ଡିଶାଳରେ ଦିନେ ତାଙ୍କର ଅଖଣ୍ଡ ଏକାଧିପତ୍ୟ ଥିଲା, ତାହାର ଦୁଆର ମୁହଁ ମାଡ଼ିଲେ ଗୋବର ପାଣି ସିଞ୍ଚା ହେଲା । ସୁଶୀଳା କଟକ ଫେରି ଆସି ପୁଣି କାମରେ ଲଗିଲେ ।

୧୯୩୪ ମସିହାରେ ମହାତ୍ମା ଗାନ୍ଧୀ ପୁରୀରୁ ଭଦ୍ରଖ ପର୍ଯ୍ୟନ୍ତ ପଦଯାତ୍ରା କଲେ । ସେତେବେଳେ ସୁଶୀଳା କଟକ ସହରର ଝାଞ୍ଜିରୀ ମଙ୍ଗଳା ମେହେନ୍ତର ସାହିରେ ମେହେନ୍ତର ପିଲାଙ୍କୁ ପାଠ ପଢ଼ାଇବା, ହାତକାମ ଶିଖାଇବା, ଡାକ୍ତରଖାନାରୁ ଔଷଧ ଆଣି ଯୋଗାଇଦେବା ଆଦି କାମ କରୁଥିଲେ । ସେ ଜଣେ ହରିଜନ ସେବକ ସଂଘର କର୍ମୀ ଭାବରେ ଗାନ୍ଧିଜୀଙ୍କ ପଦଯାତ୍ରାରେ ଯୋଗ ଦେଲେ । ସେ ରହଣୀରେ ପହଞ୍ଚିବା ମାତ୍ରେ ଗାଁ ହରିଜନ ସାହିକୁ ଯାଇ ହରିଜନ ପିଲାଙ୍କୁ ଡାକିଆଣି ଗାଧୁଆଇ ଦେଇ ରାମଧୁନ ଶିଖାନ୍ତି ଏବଂ ପିଲାଙ୍କୁ ଧାଡ଼ିରେ ବସାଇ ଖୁଆନ୍ତି । ଗାନ୍ଧିଜୀ ତାଙ୍କର ଏ କାମ ଦେଖି ଖୁସି ହେଉଥାନ୍ତି । ଗାନ୍ଧିଜୀ ତ ବାଟ ଚାଲିଲା ବେଳେ ସହଯାତ୍ରୀମାନଙ୍କ କାନ୍ଧରେ ହାତ ପକାଇ ଚାଲୁଥିଲେ ଏବଂ ସେତିକିବେଳେ ସେମାନଙ୍କ ସହିତ ଦୁଃଖସୁଖ ହେଉଥିଲେ । ସୁଶୀଳାଙ୍କ ପାଳି ପଡ଼ିଲାରୁ ଗାନ୍ଧିଜୀ ତାଙ୍କୁ ତାଙ୍କ ଇତିବୃତ୍ତ ପଚାରିଲେ । ଆଖିରୁ ଗଙ୍ଗା ଯମୁନାର ଧାରା ବୁହାଇ ସୁଶୀଳା କିପରି ଦେଶମୁକ୍ତି ପାଇଁ ଦୁଇ କୂଳ ହରାଇଛନ୍ତି ତାହା ବର୍ଣ୍ଣନା କଲେ । ଗାନ୍ଧିଜୀ ତାଙ୍କ ଆଖିରୁ ଲୁହ ପୋଛିଦେଇ ନିଜ ସଂକଳ୍ପରେ ଦୃଢ଼ ରହିବା ପାଇଁ ଉପଦେଶ ଦେଲେ ।

ଭଦ୍ରଖରେ ଗାନ୍ଧିଜୀଙ୍କ ଉପସ୍ଥିତିରେ ଗୋଟିଏ କର୍ମୀ ସଭା ହେଲା । ସେତେବେଳକୁ ସତ୍ୟାଗ୍ରହ ଆନ୍ଦୋଳନ ମାନ୍ଦ ପଡିଯାଇଥିବାରୁ ସତ୍ୟାଗ୍ରହୀମାନଙ୍କ ମଧ୍ୟରେ ଅବସାଦ ଦେଖା ଦେଇଥାଏ । ସଭାରେ ସେ ବିଷୟରେ ଆଲୋଚନା ହେବାରୁ ଗାନ୍ଧିଜୀ ସତ୍ୟାଗ୍ରହୀମାନଙ୍କୁ ଗାଁ ଗଣ୍ଡାକୁ ଚାଲିଯିବାକୁ ନିର୍ଦ୍ଦେଶ ଦେଲେ । କେହି ଜଣେ ଗାନ୍ଧିଜୀଙ୍କୁ ପଚାରିଲେ ଗାଁକୁ ଯାଇ ଆମେ କରିବୁ କ'ଣ ? ଉତ୍ତରରେ ଗାନ୍ଧିଜୀ ଗୋଟିଏ କାହାଣୀ ଶୁଣାଇଲେ । "ଥରେ ଗୋଟିଏ ଆସନ୍ନ ପ୍ରସବା ସିଂହୀ ଶିକାର ଉଦ୍ଦେଶ୍ୟରେ ଗୋଟିଏ ମେଣ୍ଢାପଲ ଉପରକୁ କୁଦା ମାରିଲାବେଳେ ଗୋଟିଏ ଛୁଆ ପ୍ରସବ କରି ପକାଇଲା । ସିଂହୀ ତା ଶିକାର ନେଇ ଚାଲିଗଲା । ତା ଛୁଆଟି ମେଣ୍ଢାପଲରେ ରହି ବଢିଲା ଏବଂ ମେଣ୍ଢାଙ୍କ ପ ଆଚରଣ କଲା, ବାଘ ସିଂହକୁ ଦେଖିଲେ ଡ଼ରିଲା ।

"ଦିନେ ଆଉ ଗୋଟିଏ ସିଂହ ସେହି ମେଣ୍ଢାପଲ ଆକ୍ରମଣ କରିବାକୁ ଯାଇ ଦେଖିଲା ଯେ ମେଣ୍ଢାପଲ ସାଙ୍ଗରେ ଗୋଟିଏ ସିଂହଛୁଆ ମଧ୍ୟ ଉଭିଛାଡି ଡ଼ରି ପଳାଉଛି । ଏହା ଦେଖି ସିଂହ ଶିକାର ଛାଡି ସେ ସିଂହ ଛୁଆକୁ ଧରି ତା ଗୋଟିଏ ଝରଣା ପାଖକୁ ନେଇଯାଇ କହିଲା, ତୁ ଏହି ପାଣି ଚାହାଁ । ତୁ ଯେପରି ଦିଶୁଛୁ, ମୁଁ ସେହିପରି ଦିଶୁଛି । ତୁ ମେଣ୍ଢା ନୋହୁଁ, ତୁ ସିଂହ । ତୁ କାହିଁକି ମୋତେ ଡ଼ରିଲୁ ? ସିଂହଛୁଆ ନିଜର ସ୍ୱରୂପ ଦେଖି ଆଉ ମେଣ୍ଢା ପଲକୁ ଫେରିଲାନାହିଁ । ଏହି କାହାଣୀଟି ଶୁଣାଇ ଗାନ୍ଧିଜୀ କହିଲେ, "ଗାଁ ଲୋକଙ୍କ ଭିତରେ ଯେଉଁ ସିଂହ ଶୋଇ ରହିଛି ତାର ନିଦ ଭଙ୍ଗାଇବା ତୁମର କାମ ହେବ ।"

ଫଳରେ ୧୯୩୪ ମସିହାରେ ଓଡ଼ିଶାର ବହୁ ସତ୍ୟାଗ୍ର ଗାଁ ଗହଳରେ ରହି କାମ କରିବାକୁ ବାହାରିଲେ । ସୁଶୀଳ ମଧ୍ୟ ରମା ଦେବୀ, ଗୋପବନ୍ଧୁ ଚୌଧୁରୀଙ୍କ ସାଙ୍ଗରେ ବ ଅଞ୍ଚଳରେ ରହି ଖଦୀ, ନିରକ୍ଷରତା ଦୂରୀକରଣ, ନିଶା ନିବାର ଆଦି ଗଠନମୂଳକ କାମରେ ଲଗିଲେ । ତାଙ୍କ ଶାଶୁଘ ଗାଁ ରାମପୁର ହେଲା ତାଙ୍କର କର୍ମକ୍ଷେତ୍ର । ରାମପୁର ଲୋକେ ଯେତେବେଳେ ଅରଟ ତିଆରି, ତନ୍ତବୁଣା, ସୂତାକଟା, ମୌଳି ଶିକ୍ଷାଆଦି ଗଠନମୂଳକ କାମ ଦ୍ୱାରା ଉପକୃତ ହେଲେ ସେତେବେଳେ ସୁଶୀଳାଙ୍କ ପ୍ରଶଂସାରେ ସେମାନେ ପଞ୍ଚମୁ ହେଲେ । ତାଙ୍କୁ ଏକଘରକିଆ କରି ନିଆଁ ପାଣି, ଧୋବ ଭଣ୍ଡାରୀ ବନ୍ଦ କରାଯିବା କଟକଣା ଛାଏଁ ଛାଏଁ ଉଠିଗଲା । ୧୯୪୨ ମସିହାର ଅଗଷ୍ଟ ଆନ୍ଦୋଳନ ବେଳେ ସୁଶୀଳାଙ୍କ ଦ୍ୱା

ପ୍ରଭାବିତ ହୋଇ ସେ ସଂଗ୍ରାମର ବହୁସଂଖ୍ୟକ ଆନ୍ଦୋଳନରେ ଯୋଗ ଦେଇ ସୁଣୀତାଙ୍କ ସାଙ୍ଗରେ ଜେଲଗଲେ । ଗାନ୍ଧିଜୀଙ୍କ ଉପଦେଶକୁ ସାର୍ଥକ କରି ସିଂହ ଝିଅ ସୁଣୀତା ସୁପ୍ତ ସିଂହଙ୍କ ନିଦ ଭାଙ୍ଗେଇଲେ । ଦେଶ ସ୍ୱାଧୀନ ହେବା ପର୍ଯ୍ୟନ୍ତ ସେ ସତ୍ୟାଗ୍ରହ ଆନ୍ଦୋଳନ ଓ ରଚନାତ୍ମକ କାମରେ ନିଜକୁ ନିଯୋଜିତ କରି ସ୍ୱରାଜ୍ୟ—ସାଧନାରତ ରହିଲେ ।

ପ୍ରାୟ ପାଞ୍ଚଶହ ବର୍ଷ ପୂର୍ବେ ଜଣେ ଭାରତୀୟ ମହିଳା ଗିରିଧର ଗୋପାଳଙ୍କୁ ପତିରୂପେ ବରଣ କରିବା ଅପରାଧରେ ବହୁ ଭର୍ତ୍ସନା, ଉତ୍ପୀଡ଼ନ ସହି ଶେଷରେ କୁଳନାଶୀ ବୋଲାଇ ଘରୁ ବିତାଡିତ ହୋଇଥିଲେ । ଆଜି ଭାରତର ବହୁ ଭକ୍ତଜନ ହରି ଭକ୍ତିରେ ବିହ୍ୱଳ ହୋଇ ତାଙ୍କର ସେହି କରୁଣ ଉକ୍ତିକୁ ବୋଲୁଥିବାର ଶୁଣାଯାଏ :—

" ବାପ କହେ ମୀରା ବାବରୀ ଭଇ,
ଶାଶୁ କହେ, କୁଲନାଶୀ ରେ "

( ବାପ କହେ ମୀରା ବାୟାଣୀ, ଶାଶୁ କହେ କୁଳନାଶୀ )

ଭାରତମାତାର ପ୍ରେମରେ ବିହ୍ୱଳ ହୋଇ ଭାରତର ଶତ ଶତ ମହିଳା ଯେ ଭାରତ - ମୁକ୍ତିପାଇଁ ପିତୃକୁଳ, ମାତୃକୁଳର ବିରୋଧର ସମ୍ମୁଖୀନ ହୋଇ ଘରକୁ ଫେରିବା ଆଶା ଛାଡ଼ି, ଘରି ଦଉଡ଼ି କାଟିଲେ, They burnt their boat, ସେହି ଉକ୍ତିକୁ ଆଚରଣରେ ଯାହାକୁ କହନ୍ତି ଦର୍ଶାଇ କୁଳ କଳଙ୍କିନୀ ବୋଲାଇ ସ୍ୱାଧୀନତା ଆନ୍ଦୋଳନରେ ଯୋଗ ଦେଇଥିଲେ, ସେମାନଙ୍କର ଦେଶ ପ୍ରେମ, ତ୍ୟାଗ ଓ ନିଷ୍ଠା ଲିପିବଦ୍ଧ ହେଲେ ସେହି ଜୀବନ କଥା ଦେଶର ଭବିଷ୍ୟ ପୁରୁଷକୁ ଦେଶ ପ୍ରେମରେ ଉଦ୍‌ବୁଦ୍ଧ କରନ୍ତା ନାହିଁ କି ?

କବି କହିଛନ୍ତି ପରା—

"ଜାତି ଇତିହାସ ଜାତିର ନିର୍ଝର,
ତହୁଁ ବହେ ସଦା ଜାତି ପ୍ରାଣଧାର ॥
ସେ ଧାରରୁ ନୀର ପିଉଛି ଯେ ନର,
ନିଶ୍ଚୟ ହେବ ସେ ଜାତି କର୍ମବୀର ॥
କଳ କଳ ରବେ ଛୁଟିଛି ସେ ଧାର
ଅତୀତ କୀରତ୍ତି ଗାଇ ନିରନ୍ତର ॥
ଭାବୀ କୀରତିର ଉଦୟେ ନାଚୁଛି,
ଯଥା ଚନ୍ଦ୍ରୋଦୟେ ନାଚେ ରତ୍ନାକର ॥

ଗୁଣନିଧି ଭବନ
ଯୋଗିଆ ସାହି, କଟକ ।



# ...ଭାରତ-ଛାଡ଼ରେ ରେଭେନ୍ସା କଲେଜର ଭୂମିକା



**ଶ୍ରୀ ଚନ୍ଦ୍ରଶେଖର ନାୟକ**

ଭାଇମାନେ !

ଗାନ୍ଧୀ କହିଛନ୍ତି ସମସ୍ତେ ଏହି ଶେଷ ସ୍ୱାଧୀନତା ସଂଗ୍ରାମରେ ଭାଗ ନିଅ । ମୁଁ ଖଣ୍ଡିଏ ଲେଖା ପଢ଼ିବି ବୋଲି ଆଣିଥିଲି । ବାଟରେ ପଡ଼ିଗଲା ।

ଏହାହିଁ ଥିଲା "ଭାରତଛାଡ଼" ଆନ୍ଦୋଳନର ପ୍ରଥମ ସତ୍ୟାଗ୍ରହୀଙ୍କ ରାଜ୍ୟବାସୀଙ୍କୁ ସଂକ୍ଷିପ୍ତ ଉଦ୍‌ବୋଧନ । ସେଦିନ ସେହି ଐତିହାସିକ........୧୯୪୨ ଅଗଷ୍ଟ ୯ । ଅପ୍ରତ୍ୟାଶିତ ଭାବରେ କଟକର ଗଳିକନ୍ଦି ଓ କାନ୍ଥବାଡ଼ ଅନ୍ତିମ ସ୍ୱାଧୀନତା ସଂଗ୍ରାମ "ଭାରତଛାଡ଼" ବିପ୍ଳବର ନିର୍ଦ୍ଦେଶ ବହନକାରୀ ପ୍ରାଚୀରପତ୍ରରେ ମଣ୍ଡିତ ହୋଇ ଉଠିଛି । କାହା ନିର୍ଦ୍ଦେଶରେ କିଏ ଏପରି କରିଛି, କଟକ ସହରବାସୀଙ୍କ ପକ୍ଷରେ ବିରାଟ ପ୍ରଶ୍ନବାଚୀ । ପାରସ୍ପରିକ ଆଲୋଚନା । ପୋଲିସ୍ ବାହିନୀ ପଇଁତରା ମାରୁଛନ୍ତି । କୌଣସି ଏକ ଅଭିଯାନକୁ ପ୍ରତିହତ କରିବା ଲକ୍ଷ୍ୟରେ ସେମାନେ ଜାଗ୍ରତ ।

ହଠାତ୍ ଦେଖାଗଲା ଜଣେ ଶ୍ମଶ୍ରୁଧାରୀ ବୃଦ୍ଧ ଖଣ୍ଡେ ଧଳା ଖଦଡ଼ ଧୋତି ଓ ଚଦର ପରିହିତ ହୋଇ କଟକ ସ୍ୱରାଜ ଆଶ୍ରମରୁ ବାହାରି ଶୁଦ୍ଧ ଗମ୍ଭୀର ପରିବେଶ ମଧ୍ୟରେ ଆଗେଇ ଚାଲିଛନ୍ତି । ନାମ ତାଙ୍କର ଦାଶରଥି ବେହେରା । ସ୍ୱାଧୀନତା ସଂଗ୍ରାମର ସାଧନାପୀଠ ସ୍ୱରାଜ୍ୟ ଆଶ୍ରମର ସେ ଅନ୍ୟତମ ଅନ୍ତେବାସୀ । ତାଙ୍କ ଗହଣରେ ଚାଲିଛନ୍ତି କଟକର ଛାତ୍ର, ବୁଦ୍ଧିଜୀବୀ, ବ୍ୟବସାୟୀ, ନବଯୁବକ, ପଢ଼ୁଆ ଅପଢ଼ୁଆ ବହୁବ୍ୟକ୍ତି । ଏହି ନୀରବ ଶୋଭାଯାତ୍ରାଟି ନିମିଚଉଡ଼ି ଛକରେ ଅଟକି ଗଲା । ସମସ୍ତେ ଦେଖିପାରିବା ଭଳି ଏକ ଦୋକାନ ପିଣ୍ଡା ଉପରକୁ ଦାଶରଥି ଉଠିଗଲେ । ଉଦ୍‌ଗ୍ରୀବ ଜନତା । କାହାରି ପାଟିରେ ପ୍ରଶ୍ନ ନାହିଁ । ସମସ୍ତେ ନୀରବ ନିସ୍ତବ୍ଧ । ଦାଶରଥିଙ୍କ ମୁହଁକୁ ସମସ୍ତେ ଅନାଇଛନ୍ତି । ସେ ବକ୍ତା ନୁହନ୍ତି କି ନେତା ନୁହନ୍ତି । ଜଣେ ଗାନ୍ଧିବାଦୀ ନୀରବ କର୍ମୀ । ତାଙ୍କ ତୁଣ୍ଡରୁ ବାହାରିଲା ମାତ୍ର ଦୁଇପଦ କଥା—"ଭାଇମାନେ ! ଗାନ୍ଧୀ କହିଛନ୍ତି ସମସ୍ତେ ଏହି ଶେଷ ସ୍ୱାଧୀନତା ସଂଗ୍ରାମରେ ଭାଗ ନିଅ । ମୁଁ ଖଣ୍ଡିଏ ଲେଖା ପଢ଼ିବି ବୋଲି ଆଣିଥିଲି । ବାଟରେ ପଡ଼ିଗଲା ।"

ଏତିକିରେ ଶ୍ରୀ ବେହେରାଙ୍କ ଉଦ୍‌ବୋଧନ ସରିଗଲା । ପୋଲିସ୍ ତାଙ୍କୁ ସେହିଠାରେ ଗିରଫ କଲେ । ଶ୍ରୀ ଦାଶରଥି ବେହେରା ହେଲେ ଭାରତଛାଡ଼ ଆନ୍ଦୋଳନର ଓଡ଼ିଶାରେ ପ୍ରଥମ ବନ୍ଦୀ । ବିରାଟ ଜନତା ପୋଲିସ୍ ପ୍ରତି କୌଣସି ଆକ୍ରମଣାତ୍ମକ ମନୋଭାବ ପ୍ରଦର୍ଶନ ନକରି ଯେପରି ଶୋକାପ୍ଳୁତ ଭାବରେ ବୟୋଜ୍ୟେଷ୍ଠ କର୍ମୀ ଶ୍ରୀ ଦାଶରଥି ବେହେରାଙ୍କୁ ବିଦାୟ ସମ୍ବର୍ଦ୍ଧନା ଜଣାଇଥିଲେ ତାହା ଅଭୂତପୂର୍ବ । ସ୍ୱାଧୀନତା ସଂଗ୍ରାମର ଯଜ୍ଞ ବେଦୀରେ କଟକ ସହରବାସୀଙ୍କ ଅବଦାନ ଇତିହାସରେ ସ୍ୱର୍ଣ୍ଣାକ୍ଷରରେ ନିଶ୍ଚୟ ଲିପିବଦ୍ଧ ରହିବ ।

ଏତିକିରେ ଘଟଣାର ଅନ୍ତ ହେଲାନାହିଁ । ଗଣ ଆନ୍ଦୋଳନକୁ ଚଳାଇ ରଖିବାର ଦାୟିତ୍ୱ ଓଡ଼ିଶାର ଏକମାତ୍ର ମହାବିଦ୍ୟାଳୟ ରେଭେନ୍‌ସା କଲେଜ ପିଲାଙ୍କ ଉପରେ ପଡ଼ିଲା । ମୁଁ ସେତେବେଳେ ସେହି ମହାବିଦ୍ୟାଳୟର ପ୍ରଥମ ବାର୍ଷିକ ଶ୍ରେଣୀର ଛାତ୍ର । କଲେଜରେ ଆନ୍ଦୋଳନର ଐତିହାସିକ ଗୁରୁତ୍ୱ ନାନାଭାବରେ ଚର୍ଚ୍ଚା କରାଗଲା ।

୧୯୪୨ ଅଗଷ୍ଟ ୮ ତାରିଖରେ ଭାରତରୁ ଇଂରେଜ ଶାସନର ତୁରନ୍ତ ଚୂଡ଼ାନ୍ତ ଅପସାରଣ ଦାବୀ କରି ଅଖିଳ ଭାରତ ଜାତୀୟ କଂଗ୍ରେସ ବମ୍ବେ ଗୋଆଲିୟା ଟ୍ୟାଙ୍କ ମଇଦାନରେ ଐତିହାସିକ "ଭାରତଛାଡ଼" ପ୍ରସ୍ତାବରେ ଆହ୍ୱାନ ଦେଇଥିଲେ । ୧୯୩୦ ଲବଣ ସତ୍ୟାଗ୍ରହ ପରେ ଦେଶରେ ବଡ଼ଧରଣର ଆନ୍ଦୋଳନ ହୋଇନଥିବା ଦୃଷ୍ଟେ "ଭାରତଛାଡ଼" ବିପ୍ଳବର ଗତି ଓ ରୀତି ସର୍ବସାଧାରଣରେ ଜଣାନଥିଲା । "ଭାରତଛାଡ଼" ପ୍ରସ୍ତାବରେ ଭାରତରୁ ଇଂରେଜ ଶାସନର ତୁରନ୍ତ ଅବସାନ ଓ ତହିଁର ପରବର୍ତ୍ତୀ ବ୍ୟବସ୍ଥା ସମ୍ବନ୍ଧରେ

ବୁଝାଇ ହୁଡ଼ାଯିବା ପରେ ଗୋଟିଏ ଧାଡ଼ି ଅତ୍ୟନ୍ତ ଚତୁରତାର ସହିତ ଯୋଡ଼ି ଦିଆଯାଇଥିଲା । ସେହିକଥାଟି ହେଉଛି—"ମହାତ୍ମା-ଗାନ୍ଧୀଙ୍କୁ ଏହି ଚୂଡ଼ାନ୍ତ ବିପ୍ଳବର ପରିଚାଳନା ପାଇଁ ସେନାପତି ରୂପେ ବରଣ କରିବା ସଙ୍ଗେ ସଙ୍ଗେ ଅଖିଳ ଭାରତ କଂଗ୍ରେସ ଆଶା ଓ ଅନୁରୋଧ କରନ୍ତି ଯେ ଗାନ୍ଧୀଜୀ ଯେଉଁଦିନ ଯେପରି ଭାବରେ ଜାତିକୁ ନିର୍ଦ୍ଦେଶ ଦେବେ "ଭାରତଛାଡ଼" ଆନ୍ଦୋଳନ ସେହିଦିନ ତଦନୁଯାୟୀ ସୁରୁହେବ । ସେତେବେଳେ ଏହି କଥାଟିର ଆଇନଗତ ଦିଗ ବୁଝି ହେଉନଥିଲେ ମଧ୍ୟ ଦୀର୍ଘ ଦୂରଦର୍ଶୀର ଆନ୍ଦୋଳନ ଭିତରେ ଦେଶରେ ଯେଉଁସବୁ ନିର୍ମମ କାଣ୍ଡ ଘଟିଗଲା ସେଥିରେ ଇଂରେଜ ଶାସନ କଂଗ୍ରେସକୁ ଦାୟୀ କରିବାକୁ ଯାଇ ନିଜେ ଅଠାକାଣ୍ଡିଆରେ ପଡ଼ିଗଲେ ।

"ଭାରତଛାଡ" ପ୍ରସ୍ତାବର ସେହି ଗୁରୁତ୍ୱପୂର୍ଣ୍ଣ ଅନୁଚ୍ଛେଦଟିକୁ ଆଦୌ ବିଚାରକୁ ନନେଇ ୯ ତାରିଖର ପୂର୍ଣ୍ଣ ପ୍ରାକ୍‌କାଳରୁ ସେନାପତି ମହାତ୍ମାଗାନ୍ଧୀ ପ୍ରମୁଖ ନେତୃତ୍ୱବୃନ୍ଦ ତଥା ବହୁ ପୂର୍ବରୁ ତାଲିକାଭୁକ୍ତ ଆତ୍ମମାରୀ ହିମାଚଳ ନେତା କର୍ମୀ ସମସ୍ତଙ୍କୁ ବିଦେଶୀ ସରକାର ତୋଫାନୀ ଆକ୍ରମଣରେ ଗିରଫ କରିନେଲେ । ଏକ ବିରାଟ ଗଣବିପ୍ଳବ ନେତା ଓ ନିର୍ଦ୍ଦେଶକଙ୍କ ଅଭାବରେ କାଣ୍ଡାରିବିହୀନ ନୌକାପରି ବିପର୍ଯ୍ୟସ୍ତ ହେବାର ଆଶଙ୍କା କରି ବାପୁଜୀଙ୍କ ଖାସ୍ ସହାୟକ ଶ୍ରୀ ପ୍ୟାରେଲାଲ ଘୋଷଣା କଲେଯେ ଏଣିକି ଲୋକେ ନିଜନିଜର ନେତା । ନିଜନିଜର କର୍ମପନ୍ଥା ସେମାନେ ବାଛି ନିଅନ୍ତୁ ।

## ଶ୍ରୀ ଦ୍ୱିବେଦୀଙ୍କ ଗୋପନ ସଂଗ୍ଠନ ।

କଂଗ୍ରେସ ସମାଜବାଦୀ ଦଳର ସ୍ୱନାମଧନ୍ୟ ନେତୃମଣ୍ଡଳୀ ଆତ୍ମଗୋପନକରି "ଭାରତଛାଡ" ବିପ୍ଳବର ବହ୍ନି ପ୍ରଜ୍ୱଳନ କଲେ । ଭାରତର ଏକ ସମାନ୍ତରାଳ ସରକାର ଗଠିତ ହୋଇଥିବା ସୂଚାଇ ଗେଜେଟ୍, ମୁଦ୍ରା ଓ ବିବିଧ ପ୍ରଚାର-ପତ୍ର ପର୍ଯ୍ୟାପ୍ତ ସଂଖ୍ୟାରେ ଆତ୍ମପ୍ରକାଶ କରିବାକୁ ଲାଗିଲା । ବିଶିଷ୍ଟ ସ୍ୱାଧୀନତା ସଂଗ୍ରାମୀ ଶ୍ରୀ ସୁରେନ୍ଦ୍ରନାଥ ଦ୍ୱିବେଦୀ ଆତ୍ମଗୋପନକରି ଓଡ଼ିଶାରେ "ଭାରତଛାଡ" ଆନ୍ଦୋଳନକୁ ସଂଗଠନ କରିବାକୁ ଲାଗିଲେ ।

## କଲେଜରେ ଆନ୍ଦୋଳନ

ଏହି ସବୁ ପାରିପାର୍ଶ୍ୱିକ ଘଟଣା ରେଭେନ୍‌ସା କଲେଜରେ ବିପୁଳ ଆଲୋଡନ ସୃଷ୍ଟି କଲା । ୧୦ ତାରିଖ ଦିନ କଲେଜର ଆମ ବଡ଼ଭାଇମାନେ ନେତୃତ୍ୱ ନେବାକୁ ଆଗେଇ ଆସିଲେ । ପୁରୀର ମଙ୍ଗୁମଠକୁ ବିପ୍ଳବୀ ପ୍ରସୂତାଗାର କହିଲେ ଅତ୍ୟୁକ୍ତି ହେବ ନାହିଁ ।

ସର୍ବ ଶ୍ରୀ ଜଗନ୍ନାଥ ମହାନ୍ତି, ୰ଧ୍ରୁବଚରଣ ଦାସ, ଗୋବିନ୍ଦ ତ୍ରିପାଠୀ, ଫକୀର ମିଶ୍ର ୰କୃଷ୍ଣଚନ୍ଦ୍ର ରଥ, ନରସିଂହ ତ୍ରିପାଠୀ, ଉପେନ୍ଦ୍ର .ମହାନ୍ତି, ଯଦୁମଣି ଜେନା ପ୍ରମୁଖ ଆମ୍ଭ ଛାତ୍ରଙ୍କୁ ମଙ୍ଗୁମଠ ବିଦ୍ୟାର୍ଥୀରୂପେ ଗ୍ରହଣ କରିଥିଲେ । ସେମାନେ ପାଠ ପଢ଼ାରେ ଯେପରି ଧୁରନ୍ଧରଥିଲେ, ଜାତୀୟତା ସ୍ରୋତରେ ନିଜକୁ ଭସାଇ ଦେବାରେ ଆଦୌ ବିମୁଖତା ଅନୁଭବ କରୁନଥିଲେ । ସେତେବେଳେ ପୁରୀ ସ୍ୱର୍ଗଦ୍ୱାରରେ ଜଣେ ନିର୍ବାସିତ ବଙ୍ଗୀୟ ବିପ୍ଳବୀ ରହୁଥାନ୍ତି । ନାମ ତାଙ୍କର ସତ୍ୟେନ୍ଦ୍ରନାଥ ଗୁହ । ଆନ୍ଦୋଳନ ପାଇଁ ବର୍ଷବର୍ଷ ଧରି ମଙ୍ଗୁମଠ ଗୋଷ୍ଠୀକୁ ଅନୁପ୍ରେରଣା ଯୋଗାଇ ସେ କ୍ଷେତ୍ର ପ୍ରସ୍ତୁତ କରୁଥିଲେ । ପୁରୀ ଜିଲ୍ଲା ସ୍କୁଲର ପୂର୍ବତନ ଛାତ୍ର ଓ ମଙ୍ଗୁମଠ ଗୋଷ୍ଠୀର ସଦସ୍ୟ ଶ୍ରୀ ଉପେନ୍ଦ୍ର ମହାନ୍ତି ଓ ଗଞ୍ଜାମ-ଜିଲ୍ଲାବାସୀ ଶ୍ରୀ ଭାଗିରଥୀ ମିଶ୍ର ରେଭେନ୍‌ସା କଲେଜ ଛାତ୍ର ଆନ୍ଦୋଳନର ପ୍ରଥମ ନେତୃତ୍ୱ ଗ୍ରହଣ କଲେ । ଭାରତସାରା ନେତୃବୃନ୍ଦଙ୍କ ଗିରଫଦାରୀର ପ୍ରତିବାଦ ଜଣାଇ କଲେଜ ହତାରେ ସଭାଟିଏ କରିବାପାଇଁ ସେମାନେ ଅଧ୍ୟକ୍ଷଙ୍କ ଅନୁମତି ଲୋଡ଼ିଲେ । ଆନ୍ଦୋଳନ ନାମରେ ଯଦୃଚ୍ଛାଚରଣ ସେତେବେଳେ ନଥିଲା । ସତ୍ୟ, ଅହିଂସା ଗାନ୍ଧୀଙ୍କ ସଂଘଟିତ ସ୍ୱାଧୀନତା ସଂଗ୍ରାମର ମୂଳ ମନ୍ତ୍ର ଥିବାରୁ ଗାନ୍ଧୀ ବିଚାରଧାରାରେ ଅନୁପ୍ରାଣିତ ହେବାପାଇଁ ଗାନ୍ଧୀ ସାହିତ୍ୟପାଠ ଓ ବିଚାର ସହିତ ଆଚାରର ସମନ୍ୱୟ ରକ୍ଷା କରିବାକୁ ନେତା ଓ କର୍ମୀମାନେ କେବଳ ଯେ ସୁଖ ପାଉଥିଲେ ତାହା ନୁହେଁ, ତାଲିମ ମଧ୍ୟ ପାଉଥିଲେ । ଛାତ୍ର ସମାଜ ପ୍ରତି ଗାନ୍ଧୀଜୀଙ୍କ ଉପଦେଶ ଥିଲା—

> "ବୀରମାନେ କାରାରୁଦ୍ଧ ହେଲେ, ମୃତ୍ୟୁ ବରଣ କଲେ ବା ଫାଶୀ ପାଇଲେ ଧର୍ମଘଟ ଦ୍ୱାରା ସେମାନଙ୍କ ପ୍ରତି ଭକ୍ତି ପ୍ରଦର୍ଶିତ ହୁଏ ନାହିଁ । ଏହି ସବୁ ଘଟଣାରେ ଛାତ୍ର ସମାଜର ଦୁଃଖ ଅସହ୍ୟ ହେଲେ ଓ ସମସ୍ତେ ସମାନ ଭାବରେ ତାହା ଅନୁଭବ କଲେ ଅଧ୍ୟକ୍ଷଙ୍କ ଅନୁମତିରେ ସ୍କୁଲ କଲେଜ ବନ୍ଦ ହୋଇପାରେ । ଯଦି ଅଧ୍ୟକ୍ଷ ଛାତ୍ରମାନଙ୍କ ଅନୁରୋଧ ଏଡ଼ି ଦିଅନ୍ତି ତେବେ ଛାତ୍ରମାନେ ମନକଲେ ସେମାନଙ୍କ ଶିକ୍ଷାନୁଷ୍ଠାନ ଉଦ୍ବେଳିତ ଭାବରେ ବର୍ଜନ କରିପାରନ୍ତି । ଅନୁଷ୍ଠାନର ପରିଚାଳକମାନେ ଅନୁତାପ କରି ସେମାନଙ୍କୁ ଫେରାଇ ନଆଣିବାଯାଏ ପିଲାମାନେ ଅନୁଷ୍ଠାନ ବର୍ଜନ ଜାରୁରଖିବେ ।"

ତେଣୁ ଆମ ବଡ଼ ଭାଇମାନେ ସର୍ବାଦୌ ଅଧ୍ୟକ୍ଷଙ୍କ ଅନୁମତି ଲୋଡ଼ିବା ଯଥାର୍ଥ ଥିଲା । ୰ସ୍ୱନାମଧନ୍ୟ ଡକ୍ଟର ପ୍ରାଣକୃଷ୍ଣ ପରିଜା ସେତେବେଳେ କଲେଜର ଅଧ୍ୟକ୍ଷ । ଛାତ୍ର ବତ୍ସଳତା ଓ ପଢ଼ିପାରୁ ନଥିବା ଗରିବ ଛାତ୍ରମାନଙ୍କୁ ପଢ଼ାଇବାପାଇଁ ତାଙ୍କର ସ୍ନେହ, ଶ୍ରଦ୍ଧା, ସାହାଯ୍ୟ ସବୁ ଅତୁଳନୀୟ ଥିଲା । ତଥାପି ସରକାରୀ ବିରୋଧୀ ସଭାପାଇଁ ଏକମାତ୍ର ସରକାରୀ କଲେଜର ଅଧ୍ୟକ୍ଷ ଅନୁମତି ଦିଅନ୍ତେବା କିପରି ? ଅନୁମତି ମିଳିଲା ନାହିଁ । ତେଣୁ ବାପୁଜୀଙ୍କ ଦ୍ୱିତୀୟ ପର୍ଯ୍ୟାୟ ଉପଦେଶମାନି ପିଲାଏ କଲେଜ ହତା ବାହାରେ ସଭା କଲେ । ଉଦ୍‌ବୋଧନ ଦେଲେ ସେହି ଉପେନ୍ଦ୍ର ଓ ଭାଗୀରଥୀ । ଏକ ବିରାଟ ଛାତ୍ର ସମାବେଶରେ ନେତୃବର୍ଗଙ୍କ ଗିରଫଦାରୀର ପ୍ରତିବାଦରେ ଆସନ୍ତା କାଲି ହରତାଳ ପାଳିବା ମର୍ମରେ ନିଷ୍ପତ୍ତି ଗୃହୀତ ହେଲା । ମୁଁ ସଭାରେ ଯୋଗ ଦେଇଥିଲି । ପଶ୍ଚିମ ଛାତ୍ରାବାସରେ ମୁଁ ରହୁଥାଏ । ହରତାଳରେ ଯୋଗ ଦେବାପାଇଁ ଛାତ୍ରାବାସ ସଂପାଦକ ଆମ ମତ ଲୋଡ଼ିଲେ । ଆମେ ସମ୍ମତି ଦେଲୁ । ୧୧ ତାରିଖ ମଙ୍ଗଳବାର । ସୁରୁଖୁରୁରେ ହରତାଳ ପ୍ରତିପାଳିତ ହେଲା । ପିକେଟିଂର ଆବଶ୍ୟକତା ଉପୁଜିଲାନାହିଁ । ସେତେବେଳେ ସ୍ୱଳ୍ପ ମୁଷ୍ଟିମେୟ ଝିଅ କଲେଜରେ ପଢୁଥାନ୍ତି । ସମସ୍ତେ ହରତାଳରେ ଭାଗନେଇଥିଲେ ।

ଛାତ୍ରମାନଙ୍କୁ ଗାନ୍ଧିଜୀଙ୍କର ପୁଣି ଉପଦେଶ ଥିଲା–

"ଯେଉଁ ଛାତ୍ରମାନେ ସହଯୋଗ ନକରିବେ ସେମାନଙ୍କ ପ୍ରତି ବା କର୍ତ୍ତୃପକ୍ଷଙ୍କ ପ୍ରତି ବଳ ପ୍ରୟୋଗ କରିବା ଉଚିତ ନୁହେଁ । ଛାତ୍ରମାନେ ବଦ୍ଧମୂଳ ହେବା ଉଚିତ ଯେ ଯଦି ସେମାନେ ଏକତାବଦ୍ଧ ଓ ଭଦ୍ର ହୁଅନ୍ତି, ନିଶ୍ଚୟ ଜିତିବେ ।"

ମୁଁ ଅନୁଭବ କରିଛି, ଯେଉଁ ଛାତ୍ରମାନେ ଆନ୍ଦୋଳନର ପୁରୋଭାଗରେ ରହୁଥିଲେ ଅସହଯୋଗୀ ଅଧ୍ୟକ୍ଷ, ଅଧ୍ୟାପକ ବା ସହପାଠୀମାନଙ୍କ ପ୍ରତି ସେମାନଙ୍କ ଆଚରଣରେ କୌଣସି ଘୃଣା, ବିରକ୍ତି ବା ଅଭଦ୍ରତାର ସୂଚନା ନଥିଲା । ନମନୀୟତା ମାଧ୍ୟମରେ ଅସହଯୋଗୀମାନଙ୍କୁ ସହଯୋଗୀ ଶ୍ରେଣୀଭୁକ୍ତ କରାଇ ପାରୁଥିଲେ ।

## ଜାତୀୟ କଲେଜ ଘୋଷଣା

ଦେଶସାରା ବିପ୍ଳବର ଚମକପ୍ରଦ ସଂବାଦ ପତ୍ରପତ୍ରିକାରୁ ପଢ଼ି ଆମେ ଉତ୍ତେଜିତ ହୋଇ ପଡ଼ିଥାଉଁ । ୧୫ ତାରିଖ ଦିନ ପ୍ରଚାରିତ ହେଲାଯେ ସେଦିନ ମଧ୍ୟାହ୍ନରେ ବିରାଟ ଛାତ୍ରସଭା ଅନୁଷ୍ଠିତ ହୋଇ ରେଭେନ୍ସା କଲେଜକୁ ଜାତୀୟ କଲେଜରେ ପରିଣତ କରାଯିବା ଘୋଷିତ ହେବ । ସତକୁ ସତ ସେଦିନ ନିରୂପିତ ସମୟରେ ଅନୁଷ୍ଠିତ ହେଲା ଏକ ବିରାଟ ଛାତ୍ରସଭା । ଉଦ୍‌ବୋଧନ ଦେଲେ ଶ୍ରୀମାନ ମାୟାଧର ମହାନ୍ତି ଓ ଶ୍ରୀ ଦେବେନ୍ଦ୍ର ନାଥ ମହାନ୍ତି । ଶ୍ରୀମାନ ମାୟାଧର ଅଖିଳ ଭାରତ କଂଗ୍ରେସ କାର୍ଯ୍ୟକାରୀ କମିଟିର ତଦାନିନ୍ତନ ସ୍ୱନାମଧନ୍ୟ ସଦସ୍ୟ ଶ୍ରୀଯୁକ୍ତ ହରେକୃଷ୍ଣ ମହତାବଙ୍କର ତାଲିମ ପ୍ରାପ୍ତ କର୍ମୀ ଥିଲେ । ଶ୍ରୀମାନ ଦେବେନ୍ଦ୍ର ହେଉଛନ୍ତି ତଦାନିନ୍ତନ ଏମ୍.ପି. ଶ୍ରୀ ବୈଷ୍ଣବ ମହାନ୍ତିଙ୍କ ପୁତ୍ର । ସେ କଲେଜର ୨ୟ ବାର୍ଷିକ ଶ୍ରେଣୀର ଛାତ୍ର ଥିଲେ । ବକ୍ତାମାନେ ଭାରତରୁ ଇଂରେଜ ଶାସନର ତୁରନ୍ତ ଅପସାରଣ ଓ ନେତୃବର୍ଗଙ୍କ ମୁକ୍ତି ଦାବୀ କରିବା ସଙ୍ଗେ ସଙ୍ଗେ କଲେଜର ଅଧ୍ୟକ୍ଷ ଓ ଅଧ୍ୟାପକ ମାନଙ୍କୁ ଇସ୍ତଫା ଦେବାପାଇଁ ଅନୁରୋଧ ଜଣାଇଥିଲେ । ଆମମାନଙ୍କୁ ସେମାନଙ୍କର ବିଶେଷ ଅନୁରୋଧ ଥିଲା–"କଲେଜ ଛାଡ଼ି ଗାଁ ଗହଳକୁ ଯାଇ ବିପ୍ଳବର ବହ୍ନି ପ୍ରଜ୍ୱଳନ କରିଦିଅ ।"

ସଭା ସରିଲା । ସିଧାସଳଖ ସମସ୍ତେ ଘୁଞ୍ଚିଲେ କଲେଜ ଅଫିସ ଅଭିମୁଖେ । ଅଫିସ ଟେଲିଫୋନ ଓ କାଗଜପତ୍ରକୁ ବିପର୍ଯ୍ୟସ୍ତ କରିଦିଆଗଲା । ନୌକର ସାହି ଶିକ୍ଷାନୀତିକୁ ବହନ କରିଥିବା କଲେଜ ଅଫିସ୍‌ର କାଗଜପତ୍ର ହଠାତ୍ ଜଳିଉଠିଲା । କଲେଜରେ ବିରାଟ ହଟ୍‌ଗୋଳ । ଅଧ୍ୟାପକବର୍ଗଙ୍କୁ ଫୁଲମାଳ ପିନ୍ଧାଇ ଜାତୀୟ କଲେଜର ଦାୟିତ୍ୱ ନେବାକୁ ପିଲାମାନେ ଅନୁରୋଧ ଜଣାଇଲେ । ଦେଖାଗଲାଯେ ଅଧ୍ୟାପକମାନେ ସହାନୁଭୂତି ଦେଖାଇ ଦେହରୁ କୋଟ ଓ ମୁଣ୍ଡରୁ ହ୍ୟାଟ କାଢ଼ି କଲେଜ ଅଫିସ କକ୍ଷରେ ପ୍ରଜ୍ୱଳିତ ଅଗ୍ନିରେ ପକାଇ ଦେଉଛନ୍ତି ।

ଖବର ପାଇ ପୋଲିସ ଆସିଲେ । ଦେଖିଲେ ଘଟଣା ସ୍ଥଳରେ ଜଣେ ହେଲେ କେହି ନାହାନ୍ତି । ତଦନ୍ତ ଆରମ୍ଭ ହେଲା । ଅଧ୍ୟୟନ ଛାତ୍ର ଶ୍ରୀ ବିଭୁଧେନ୍ଦ୍ର ମିଶ୍ର ଓ ସ୍ୱର୍ଗତ ସୁରଜମଲ୍ଲ ଶାହାଙ୍କୁ ଆନ୍ଦୋଳନର ପ୍ରକୃତ ସଂଗ୍ରହକ ମନେକରି ପୋଲିସ ଗିରଫ କଲେ । ସଂପ୍ରତି ଲୋକସଭା ସଦସ୍ୟ ଶ୍ରୀ ଚିନ୍ତାମଣି ପାଣିଗ୍ରାହୀ ସେତେବେଳେ ରେଭେନ୍ସା କଲେଜର ଜଣେ ଜ୍ୟେଷ୍ଠ ଛାତ୍ର ଥିଲେ । ୧୫ ତାରିଖ ଅଭିଯାନରେ ସେ ଥିଲେ ପ୍ରକୃତ ସଂଗ୍ରହକ । ମାତ୍ର ପୋଲିସଙ୍କ ଦୃଷ୍ଟିକୁ ଏଡ଼ିଦେଇ ସେ ଆତ୍ମଗୋପନ କଲେ ।

ସଂଧ୍ୟାରେ ପୋଲିସ ଆସି ପହଞ୍ଚିଲେ ଆମ ପଶ୍ଚିମ ଛାତ୍ରାବାସରେ । ଶ୍ରୀମାନ ଦେବେନ୍ଦ୍ରଙ୍କୁ ଓ୍ୱାରେଣ୍ଟ ବଳରେ ଗିରଫ କଲେ । ଆମେ ସମସ୍ତେ ତାଙ୍କୁ ବିଦାୟ ସମ୍ବର୍ଦ୍ଧନା ଜଣାଇବା ପାଇଁ କଲେଜର ମୁଖ୍ୟ ପ୍ରବେଶ ଦ୍ୱାର ଯାଏ ଆସିଲୁ । ପୋଲିସ ଅତ୍ୟନ୍ତ ସଂଯତ ଓ ଭଦ୍ର ଆଚରଣ ଦେଖାଉଥାନ୍ତି । ଆମେ ଜୟଧ୍ୱନି ଦେଇ ଦେବେନ୍ଦ୍ରଙ୍କୁ ବିଦାୟ ଦେଉଥିଲାବେଳେ ବିଦାୟ-ବାର୍ତ୍ତାରେ ଉଦ୍‌ବୋଧନ ପ୍ରସଙ୍ଗରେ ଦେବେନ୍ଦ୍ର କହିଲେ–"ଭାଇ-ମାନେ! ଆମେ ବନ୍ଦୀଶାଳାକୁ ଯାଉଛୁ । ଆମେ ବନ୍ଦୀଜୀବନ ବିତାଉଥିବା ବେଳେ ତୁମେ ସୁଖ ମନରେ ଆଦୌ ପଢ଼ି ପାରିବ ନାହିଁ । କାଲିଠାରୁ କଲେଜ ବର୍ଜନ କର । ଗାଁକୁ ଯାଅ । ବିପ୍ଳବର ବାର୍ତ୍ତା ପ୍ରଚାର କର । ତାହାହିଁ ହେବ ଆମପ୍ରତି ଯଥାର୍ଥ ସହାନୁଭୂତି" ।

ଏତିକିରେ କଲେଜରେ ୧ମ ପର୍ଯ୍ୟାୟ ଆନ୍ଦୋଳନ ସାଙ୍ଗ ହେଲା ।

## ପିଲାମାନେ କଲେଜ ଛାଡ଼ିଲେ

୧୬ ତାରିଖ ସକାଳ । ପୋଲିସ ଆମ ପଶ୍ଚିମ ଛାତ୍ରାବାସକୁ ଆସି ଜଣ ଜଣ କରି ଜମାନବନ୍ଦୀ ନେଲେ । ଏହିସବୁ ଘଟଣାର ପ୍ରତିକ୍ରିୟାସ୍ୱରୂପ ଦେଖିଲି ପିଲାମାନେ କ୍ରମେ କଲେଜଛାଡ଼ି ବାହାରି ଯାଉଛନ୍ତି । ମୁଁ ନୂତନ କାର୍ଯ୍ୟକ୍ଷେତ୍ର ବାଛିବା ଲକ୍ଷ୍ୟରେ କଲେଜ ଛାଡ଼ିଲି । ପୁରୀ ଜିଲ୍ଲା ଟାଙ୍ଗିଥାନା କୁହୁଡ଼ି ଗ୍ରାମ ନିବାସୀ ଶ୍ରୀଯୁକ୍ତ ରାଧାମୋହନ ପାଣି ଜଣେ ପୁରୁଣା କଂଗ୍ରେସ କର୍ମୀ । ତାଙ୍କ ପୁଅ ସ୍ୱର୍ଗତ ବ୍ରଜମୋହନ ମୋର ସହପାଠୀ । ମୁଁ ସିଧା ତାଙ୍କ ଘରକୁ ଗଲି । ମାତ୍ର ମନଃପୂତ କିଛି କରିପାରିଲି ନାହିଁ । ପୁଣି କଲେଜ ଫେରିଲି ।

## ବର୍ବର ଶୋଭାଯାତ୍ରା

ପାକ୍ଷିକ ବିରତି ପରେ ପିଲାଏ ଦଳ ଦଳ ହୋଇ କଲେଜକୁ ଫେରୁଥାନ୍ତି । ଶ୍ରେଣୀକୁ ଯାଉଥାଉ; ମାତ୍ର ପଢ଼ାରେ ମନ ଲାଗୁନଥାଏ । କଲେଜ ବାତାବରଣ କ୍ରମେ ସରଗରମ ହୋଇଉଠୁଥାଏ । ପଶ୍ଚିମ ଛାତ୍ରାବାସରେ ଆମେ ଅଧିକ ସଂଗଠିତ ହୋଇଥାଉ । ସେପ୍ଟେମ୍ବର ୭ ତାରିଖ ସଂଧ୍ୟା । ଗିରଫ-ଦାରୀର ପ୍ରତିବାଦ ସ୍ୱରୂପ ଆସନ୍ତା କାଲିଠାରୁ ଅନଶନ ବ୍ରତ ପାଳିବା ପାଇଁ ସାଧାରଣ ସଂପାଦକ ଆମର ମତ ଲୋଡ଼ିଲେ । ଆମେ ସ୍ୱୀକୃତି ଦେଲୁ ।

ଆଠ ତାରିଖ । "ଭାରତଛାଡ଼" ଆନ୍ଦୋଳନର ଗୋଟିଏ ମାସ ପୂରିଯାଇଛି । ସେଦିନ ଆମେ ପୂର୍ବ ଓ ପଶ୍ଚିମ ଦୁଇ ଛାତ୍ରାବାସର ପିଲାଏ କେହି ଖାଇଲୁ ନାହିଁ । ବିବାଧ୍ୟାୟୀ ଓ ଅଧ୍ୟାପକମାନେ ଏଥିରେ ବିଚଳିତ ହୋଇଉଠିଲେ । ପ୍ରଥମ ପର୍ଯ୍ୟାୟ ଆନ୍ଦୋଳନ ପରେ କଲେଜରେ ମଧ୍ୟାହ୍ନର ବନ୍ଦ ରଖା-ଯାଇଥିଲା । ଆଜି ନୂଆକରି ରିସେସ ଆରମ୍ଭ ହେବା ମାତ୍ରେ

ସ୍ୱତଃସ୍ଫୂର୍ତ୍ତ ଭାବରେ ବାହାରି ପଡ଼ିଲା ଏକ ଛାତ୍ର ଶୋଭାଯାତ୍ରା । ପ୍ରଥମେ ଥିଲେ ମାତ୍ର ୩୦ ଜଣ ଛାତ୍ର । ଅତ୍ୟନ୍ତ ଶାନ୍ତିପୂର୍ଣ୍ଣ ଭାବରେ ବିଭିନ୍ନ ଧ୍ୱନି ସହ ଶୋଭାଯାତ୍ରା ଆଗେଇ ଚାଲିଥାଏ । ସ୍ୱଦେଶଭଣ୍ଡାର ବାଟ ଦେଇ କମନ୍‌ରୁମ୍ ପାଖକୁ ଆସିଲାବେଳେ ଶୋଭା ଯାତ୍ରାର କଳେବର ଅକଳ୍ପନୀୟ ଭାବରେ ବୃଦ୍ଧି ଲାଭ କରିବାକୁ ଲାଗିଲା । ଶୋଭାଯାତ୍ରାରେ ସହସ୍ରାଧିକ ଛାତ୍ରଛାତ୍ରୀ କଲେଜ ପରିକ୍ରମା କରି ମେଡିକାଲ ସ୍କୁଲ ଅଭିମୁଖେ ଆମ ଶୋଭାଯାତ୍ରା ଆଗେଇ ଚାଲିଥାଏ ।

ଇନ୍‌କ୍ଲାବ................. ଜିନ୍ଦାବାଦ

ବନ୍ଦେ............................ ମାତରମ୍

ଅଁ ଗ୍ରେଜୋଁ..........................ଭାରତ ଛୋଡୋ

ମହାତ୍ମାଗାନ୍ଧୀକି......ଜୟ..............ଇତ୍ୟାଦି

ଜୟଧ୍ୱନିରେ କଟକର ଗଗନ ପବନ ମୁଖରିତ ହୋଇଉଠୁଥାଏ । ଆମର ଏହି ବିରାଟ ଶୋଭାଯାତ୍ରା ମେଡିକାଲ ହତା ଭିତରକୁ ପ୍ରବେଶ କରିବା ପୂର୍ବରୁ ବହୁ ସ୍କୁଲ ଛାତ୍ର ଓ ଡାକ୍ତରୀ ଛାତ୍ରଛାତ୍ରୀ ଶୋଭାଯାତ୍ରାର କଳେବର ବଢ଼ାଇବାକୁ ଲାଗିଲେ ।

## ସକ୍ରିୟ ପ୍ରତିରୋଧ

ମେଡିକାଲ ହତା ଭିତରେ ଏହି ବିରାଟ ଶୋଭାଯାତ୍ରାକୁ ପୋଲିସ ଫୌଜ ପ୍ରତିରୋଧ କଲେ । ସେତେବେଳେ ଶ୍ରୀ ହର୍‌ଗ୍ରୀଭସ୍ ଥାନ୍ତି କଟକର ଏସ୍. ପି. । ସେ ନିଜେ ପୋଲିସ ଫୌଜର ନେତୃତ୍ୱ ନେଇଥାନ୍ତି । ଆମ୍ଭେମାନେ ଶାନ୍ତିପୂର୍ଣ୍ଣ ଭାବରେ ସହର ପରିକ୍ରମା କରିବୁ କହିବା ସତ୍ତ୍ୱେ ପୋଲିସ ବାଟ ଛାଡ଼ିଲେ ନାହିଁ । ଏତିକିବେଳେ ଛାତ୍ରନେତାଙ୍କ ହ୍ୱିସିଲ ବାଜି ଉଠିଲା । ପୋଲିସ ଘେର ଭାଙ୍ଗି ଆମେ ଆଗେଇବାକୁ ଲାଗିଲୁ । ଆମମାନଙ୍କୁ ଛତ୍ରଭଙ୍ଗ କରାଇବା ଲକ୍ଷ୍ୟରେ ଶୋଭାଯାତ୍ରାର ପୁରୋଭାଗରେ ଥିବା ଛାତ୍ରୀମାନଙ୍କୁ ପୋଲିସ ପୃଥକ କରିନେବାକୁ ବସିଲେ । ଏତିକିବେଳେ ଧ୍ୱନି ଉଠିଲା "Sisters return."

## ସ୍ୱଚ୍ଛନ୍ଦ ଲାଠିମାଡ଼

ଭଉଣୀମାନେ ଫେରି ଆସିଲେ । ବଦ୍ଧମନ୍ତ ହୋଇ ଶୋଭାଯାତ୍ରା ଅଗ୍ରସର ହେଲା । ପୋଲିସ ଆଉ ଧୈର୍ଯ୍ୟ ରଖି ପାରିଲେ ନାହିଁ । ଏବକାର ଛାତ୍ର ଆନ୍ଦୋଳନ ପରି ଟେକାପଥର ମାଡ଼, ଗାଡ଼ିଘୋଡ଼ା ପୋଡ଼ି ଇତ୍ୟାଦି ଧ୍ୱଂସାତ୍ମକ କାଣ୍ଡର କୌଣସି ସୂଚନା ସେତେବେଳେ ନଥିଲା । ତଥାପି ହର୍‌ଗ୍ରୀଭସ୍ ସାହେବଙ୍କ ନିର୍ମମ ନିର୍ଦ୍ଦେଶ—Allright charge । ଆଖି ପିଛୁଳାକେ ପୋଲିସ ଅଣ୍ଡିରୁଣ୍ଡା ଲାଠି ଚଳାଇବାକୁ ଲାଗିଲେ । ଅନନ୍ତର କଣ ଘଟିଲା ମୁଁ ଜାଣିପାରିଲି ନାହିଁ । ପ୍ରାୟ ଘଣ୍ଟାକ ପରେ ମୁଁ ଚକ୍ଷୁ ଖୋଲିଲେ ଦେଖିଲି ମେଡିକାଲ ଛାତ୍ରବାସର ଏକ କକ୍ଷରେ ଡାକ୍ତରୀ ପିଲାଏ ଲାଠିମାଡ଼ ଜନିତ ମୋ ମୁଣ୍ଡର ରକ୍ତାକ୍ତ କ୍ଷତ ସିଲାଇ କରୁଛନ୍ତି । ମୁଁ ସେତେବେଳେ ମୋର ସହାଧ୍ୟାୟୀ ଶ୍ରୀ ମନ୍ମଥ ନାଥ ଦାସଙ୍କୁ ଖୋଜିଲି । ଶୋଭାଯାତ୍ରାରେ ସେ ମୋ ଧାଡ଼ିରେ ଥିଲେ । ବୋଧହୁଏ ସେ ଟିକିଏ ଗେଡ଼ା ଥିବାରୁ ବଞ୍ଚିଗଲେ । ସେହି ରାତିକ ମୁଁ ମେଡିକାଲ ଛାତ୍ରାବାସରେ ରହିଲି ।

## କଟକ କଲେଜରେ ପ୍ରତିକ୍ରିୟା

ଛାତ୍ର ଶୋଭାଯାତ୍ରାକୁ ପ୍ରତିହତ କରାଇବା ଲକ୍ଷ୍ୟରେ ପୋଲିସର ନିର୍ମମ ଲାଠିମାଡ଼ ଘଟଣା ବିଜୁଳି ବେଗରେ ଓଡ଼ିଶା ସାରା ଖେଳିଗଲା । ବହୁ ଅଭିଭାବକ ପିଲାଙ୍କୁ ନେଇଯିବା ପାଇଁ କଟକରେ ପହଞ୍ଚିବାକୁ ଲାଗିଲେ । ଅଧ୍ୟକ୍ଷ ଶ୍ରୀଯୁକ୍ତ ପରିଜା ଓ ଅଧ୍ୟାପକଗଣ କେହି ଏହାକୁ ସୁଖକର ମଣିଲେ ନାହିଁ । ଜଣେ ଉଚ୍ଚପଦସ୍ଥ ପୋଲିସ ଅଫିସର ଅଧ୍ୟକ୍ଷ ଶ୍ରୀଯୁକ୍ତ ପରିଜାଙ୍କ ସହିତ ଆଲୋଚନା ପାଇଁ ଆସିବାରୁ ଶ୍ରୀଯୁକ୍ତ ପରିଜା ତାଙ୍କୁ ରୋକ୍‌ଠୋକ୍ ଜଣାଇ ଦେଲେ ଯେ—"Hargrives came to kill my students. I am not happy."

## ତୃତୀୟ ପର୍ଯ୍ୟାୟ

ଆମେ କିନ୍ତୁ ଏତିକିରେ ଦବିଗଲୁ ନାହିଁ । ପରବର୍ତ୍ତୀ ପର୍ଯ୍ୟାୟରେ ଲେଖାଲେଖି ଦ୍ୱାରା କଲେଜର ଜାତୀୟ ବାତାବରଣକୁ ସରଗରମ ରଖିବାର ବ୍ୟବସ୍ଥା କଲୁଁ । ସେତେବେଳେ ପର୍ଯ୍ୟାପ୍ତ ସଂଖ୍ୟାରେ ଗୋପନପତ୍ର ଓ ଇସ୍ତାହାର ଇତ୍ୟାଦି ପ୍ରଚାରିତ ହେଉଥାଏ । ସେଥିରୁ ଜଣା ପଡ଼ୁଥାଏ ଯେ ଆନ୍ଦୋଳନ ଆଦୌ ଥିମେଇ ଯାଇନାହିଁ । ଦ୍ରୁତ ଅଗ୍ରଗତି କରୁଛି । ମୁସଲମାନ ଭାଇମାନେ ତାଙ୍କ ଭାରତମାତାକୁ ବିଦେଶୀ ନିଗଡ଼ରୁ ମୁକ୍ତ କରିବା ପାଇଁ ଆନ୍ଦୋଳନରେ ସକ୍ରିୟ ସହଯୋଗ କରୁଛନ୍ତି । ସାମ୍ପ୍ରଦାୟିକ ବିଦ୍ୱେଷର କୌଣସି ସୂଚନା ନାହିଁ । ଏପରିକି ଚିତ୍ରତାରକାମାନେ ମଧ୍ୟ ଏହି ସ୍ୱାଧୀନତା ସଂଗ୍ରାମରେ ପ୍ରଭାବିତ ହୋଇ ପଡ଼ିଛନ୍ତି । ଏହିସବୁ ତଥ୍ୟକୁ ଭିତ୍ତିକରି ସ୍ୱତନ୍ତ୍ର ପ୍ରାଚୀରପତ୍ର ପ୍ରସ୍ତୁତ ଦାୟିତ୍ୱ ଆମ ସଞ୍ଚାଳକମାନେ ମୋ ଉପରେ ନ୍ୟସ୍ତ କରିଥାଆନ୍ତି । କଲେଜ ନୋଟିସ ବୋର୍ଡରେ ପ୍ରାଚୀରପତ୍ରଗୁଡ଼ିକ ରାତାରାତି ମାରିବାର ବ୍ୟବସ୍ଥା ମୁଁ କରିଥାଏ । ସକାଳେ ମୁଁ ନିଜେ ଯାଇ ଦେଖେ ଯେ ବହୁ ସଂଖ୍ୟାରେ ପିଲାଏ ନୋଟିସ ବୋର୍ଡ ପାଖରେ ଛିଡ଼ା ହୋଇ ବଡ଼ ଆଗ୍ରହ ଉତ୍ସାହରେ ପଢ଼ୁଥାଆନ୍ତି ଓ ଆନ୍ଦୋଳନ ପ୍ରତି ସଶ୍ରଦ୍ଧ ମନୋଭାବ ପ୍ରକଟ କରୁଥାଆନ୍ତି ।

## କଲେଜରୁ ବହିଷ୍କାର

ଏଣେ କଲେଜ ପରିଚାଳନା କର୍ତ୍ତୃପକ୍ଷଙ୍କ ଉପରେ ସରକାରୀ ଚାପ ପ୍ରବଳ ବେଗରେ ପଡ଼ିଲା । ଦୈନନ୍ଦିନ ବୈଠକ, ସଭା ସମିତି ଓ ଜୟଧ୍ୱନି ଭିତରେ କଲେଜ ଉଠୁଥାଏ ପଡ଼ୁଥାଏ । ଏଭଳି ଉତ୍ତେଜନାପୂର୍ଣ୍ଣ ପରିସ୍ଥିତି ଭିତରେ କଲେଜକୁ ଦୀର୍ଘଦିନ ଚଳାଇବା କର୍ତ୍ତୃପକ୍ଷଙ୍କ ପକ୍ଷରେ ଆଉ ସମ୍ଭବପର ହେଲାନାହିଁ । ଛାତ୍ରମାନଙ୍କ ପ୍ରତି ଦଣ୍ଡ ବିଧାନର ପ୍ରଶ୍ନ କର୍ତ୍ତୃପକ୍ଷ ବିଚାରକୁ ନେଲେ । ମୋପରି ଯେଉଁ ଛାତ୍ର ଭାଇମାନେ ଲାଠିମାଡ଼ରେ ଆହତ ହୋଇଛନ୍ତି, ସେମାନେ ଆନ୍ଦୋଳନର ପୁରୋଭାଗରେ ରହି ପରିଚାଳନାରେ ଅଂଶ ଗ୍ରହଣ କରିଛନ୍ତି ବୋଲି ସରକାର ସିଦ୍ଧାନ୍ତ ପୋଲିସ କରିନେଲେ । ତଦନୁଯାୟୀ ଏକ ରିପୋର୍ଟ କଲେଜକୁ ଆସିଲା । ନିର୍ଦ୍ଦିଷ୍ଟ ତାରିଖ ମୋର ମନେ ପଡ଼ୁ ନାହିଁ । ହଠାତ୍ ନୋଟିସ ବୋର୍ଡରେ ଦେଖିଲି କେତେଜଣ ଛାତ୍ରଙ୍କ ନାମ କଲେଜରୁ କାଟି ଦିଆଯାଇ ଅବିଳମ୍ବେ କଲେଜ ଛାତ୍ରାବାସ ଛାଡ଼ି ବାହାରି ଯିବାକୁ ନିର୍ଦ୍ଦେଶ ଦିଆଯାଇଛି ।

ଚାଳିଶାରେ ପ୍ରଥମ ବାର୍ଷିକ ଶ୍ରେଣୀରୁ ଆମେ ଦୁଇଜଣ ଥାଉ । ଜଣେ ମୁଁ ; ଆଉଜଣେ କୁମାର ଶ୍ରୀ ହରମୋହନ ସିଂ ସାମନ୍ତ । ହରମୋହନ ଏବେ ପୁରୀର ଜଣେ ଆଇନ୍‌ଜୀବୀ ।

## ମୋର ପରବର୍ତ୍ତୀ ଭୂମିକା

୯ ତାରିଖର ଘଟଣା ମୋ ଛାତ୍ର ଜୀବନରେ ଏକ ଯବନିକା କହିଲେ ଅତ୍ୟୁକ୍ତି ହେବନାହିଁ ! ଗାନ୍ଧିଜୀଙ୍କର ସେହି ଉପଦେଶ —" ଅନୁଷ୍ଠାନର ପରିଚାଳକମାନେ ଅନୁତାପ କରି (ବହିଷ୍କୃତ ଛାତ୍ରଙ୍କୁ) ସେମାନଙ୍କୁ ଫେରାଇ ନ ଆଣିବା ଯାଏ ପିଲମାନେ ଅନୁଷ୍ଠାନ ବର୍ଜନ କରିବେ ।" ପ୍ରତିଧ୍ୱନିତ ହେବାକୁ ଲାଗିଲା । ସମ୍ମାନକୁ ଜଗି ମୁଁ ଆଉ କଲେଜକୁ ଫେରିନାହିଁ । କଲେଜରୁ ଆସିଲି । ମୋର ଜନ୍ମସ୍ଥାନ ବ୍ରହ୍ମଗିରି ଅଞ୍ଚଳ ହେଲା ମୋର କର୍ମକ୍ଷେତ୍ର । ପୋଲିସ କିନ୍ତୁ ମୋ ପିଛା ଧରିଥାଆନ୍ତି । ପୁରୀ ଜିଲ୍ଲା ସ୍କୁଲରେ ପଢ଼ିବାବେଳେ ମେଡିକାଲ ସ୍କୁଲ ଧର୍ମଘଟ ପ୍ରତି ପୂର୍ଣ୍ଣ ସମର୍ଥନ ଜ୍ଞାପନ, ବଡ଼ଲାଟ ଲର୍ଡ ଲିନ୍‌ଲିଥଗୋଙ୍କୁ ପୁରୀ ପରିଦର୍ଶନରେ ବର୍ଜନ, ର୍‍ୟାଡିକାଲ ଡେମୋକ୍ରେଟିକ୍ ପାର୍ଟିର ସଞ୍ଚାଳକ ମାନବେନ୍ଦ୍ର ରାୟଙ୍କୁ ପୁରୀରେ ସଭା କରାଇ ନ ଦେବା, ଢେଙ୍କାନାଳ ପ୍ରଜା ଆନ୍ଦୋଳନ ପ୍ରତିହତ କରାଇବା ନେଇ ପୋଲିସର ନିର୍ମମ ଅତ୍ୟାଚାରର ପ୍ରତିବାଦ ସଭାରେ ପୁରୀ ଜିଲ୍ଲା ସ୍କୁଲ ଛାତ୍ରସଂଘର ଶ୍ରେଣୀ ସମ୍ପାଦକ ଭାବରେ ସହଯୋଗୀତା ପ୍ରଦାନ କରିବା ଓ ବିପନ୍ନ ସାହାଯ୍ୟ ସମିତିର ସଂପାଦକ ଭାବରେ ପ୍ରାକୃତିକ ଦୁର୍ବିପାକ ବେଳେ ଦିନ ଦୁର୍ଗତଙ୍କ ସେବା କରିବା ଇତ୍ୟାଦି ସଙ୍ଗକୁ ରେଭେନ୍‌ସା କଲେଜ ଘଟଣା ରାଜଯୋଟକ ପରି ପୋଲିସ ଗ୍ରହଣ କରିନେଲେ । ମୋ ନାମରେ ଗିରଫ ପରୱାନା ଜାରିହେଲା । ୧୯୪୨ ନଭେମ୍ବର ୩ ତାରିଖରେ ମୁଁ ବ୍ରହ୍ମଗିରିରୁ ପୁରୀ ଫେରିବା ମାତ୍ରେ ୪ ତାରିଖ ଦିନ ଗିରଫ ହେଲି । ଅଟକବନ୍ଦୀ ରୂପେ ପୁରୀ ଓ ବ୍ରହ୍ମପୁର ବନ୍ଦୀଶାଳାରେ ଦୀର୍ଘ ଦୁଇବର୍ଷ ମୋତେ ବିତାଇବାକୁ ପଡ଼ିଲା । ନୃସିଂହ ମଠ ଗୋଷ୍ଠୀର ସମସ୍ତ ଅନ୍ତେବାସୀ ଭାରତ ଛାଡ଼ ଆନ୍ଦୋଳନରେ ଯୋଗଦେଇ କରାବରଣ କରିଥିଲେ । ସ୍ୱର୍ଗତ ବ୍ରଜମୋହନ ପାଣି, ରାଧାଶ୍ୟାମ ଦାସ, ସୁବଳ ଚରଣ ଦାସ, ଚିରରଞ୍ଜନ ଦାସ, ଲୋକନାଥ ସେନାପତି ପ୍ରମୁଖ ରେଭେନ୍‌ସା କଲେଜର ବହୁ ଛାତ୍ର ଗିରଫ ହୋଇଥିଲେ ।

## ନେତୃତ୍ୱ ଅବିସ୍ମରଣୀୟ

ଭାରତର ଅନ୍ତିମ ସ୍ୱାଧୀନତା ସଂଗ୍ରାମରେ ରେଭେନସା କଲେଜର ନେତୃତ୍ୱ ଅବିସ୍ମରଣୀୟ । ମୋ ପରି ବହୁ ସ୍ୱାଧୀନତା ସଂଗ୍ରାମୀ "ଭାରତ ଛାଡ଼"ର ପ୍ରସୂତୀ । ଇଂରେଜ ଶାସନ ଭାରତ ଛାଡ଼ିଲା । ୧୯୪୭ ଅଗଷ୍ଟ ୧୫ରେ ଆମେ ସ୍ୱାଧୀନତାର ବିଜୟ ବୈଜୟନ୍ତୀ ଉତ୍ତୋଳନ କଲୁ । ଇତି ମଧ୍ୟରେ ସ୍ୱାଧୀନତାର ସୁବର୍ଣ୍ଣ ଜୟନ୍ତୀ ପୂରିବାକୁ ବସିଛି । ରଜତ ଜୟନ୍ତୀ ପ୍ରତିପାଳିତ ହୋଇସାରିଛି । ରେଭେନ୍‌ସା କଲେଜ ବର୍ଷକୁ ବର୍ଷ ଅଗଷ୍ଟ ୧୫ ପାଳୁଛନ୍ତି । କଲେଜର ଶତବାର୍ଷିକ ଉତ୍ସବ ଅନୁଷ୍ଠିତ ହୋଇଯାଇଛି । ନାନା ଘଟଣାରେ ପ୍ରାକ୍ତନ କୃତିବିଦ୍ୟ ଛାତ୍ରମାନଙ୍କୁ ରେଭେନସା କଲେଜ ସମ୍ମାନିତ କରାଉଛନ୍ତି । ତେବେ କଲେଜର ଇତିହାସରେ ମାୟାଧର, ଦେବେନ୍ଦ୍ର, ଭାଗିରଥୀ, ଉପେନ୍ଦ୍ର, ଚିନ୍ତାମଣି, ୰ସୁରଜମଲ୍ଲ, ଓ ବିବୁଧେନ୍ଦ୍ର ପ୍ରମୁଖ ଅନ୍ତିମ ସଂଗ୍ରାମ ବେଳର ବିପ୍ଳବୀ ଛାତ୍ରନେତାମାନଙ୍କୁ ସସମ୍ମାନ ସ୍ଥାନ ଦିଆଯାଇଛି କି ନାହିଁ, କଲେଜର ପ୍ରଚଳିତ ଅଧ୍ୟକ୍ଷ, ଅଧ୍ୟାପକ ତଥା ଛାତ୍ର ସମାଜ ଦେଖିବେ । ସର୍ବୋପରି ରେଭେନ୍‌ସା କଲେଜକୁ ଏକ ଜାତୀୟ ବିଦ୍ୟାପୀଠରେ ପରିଣତ କରିବା ନେଇ ସେମାନଙ୍କ ପୂର୍ବ ସୂରୀମାନେ ୧୯୪୨ ଅଗଷ୍ଟ ୧୫ ତାରିଖରେ ଯେଉଁ ସଙ୍କଳ୍ପ ଘୋଷଣା କରିଥିଲେ ତାହା କଳ୍ପନାରେ ହିଁ ରହିଯାଇଛି । ସେ ସ୍ୱପ୍ନ କେବେ ସଫଳ ହେବ ତାହା ସେହି ରେଭେନ୍‌ସା କଲେଜର ଛାତ୍ର ସମାଜ ବିଚାର କରନ୍ତୁ ।

---

ମାର୍କଣ୍ଡ ସାହି
ଯମୁନାରୋଡ଼, ପୁରୀ ।





ଠକ୍କୁର ଜଗନ୍ନାଥ ମହାନ୍ତି

ସୁଦୂର ସମୁଦ୍ର ମଧ୍ୟରେ ଆଣ୍ଡାମାନ-ନିକୋବର ଦ୍ୱୀପପୁଞ୍ଜ । ରାଜଧାନୀ ତାର ପୋର୍ଟବ୍ଲେୟାର ସହର । ସେଠାରେ କୁଖ୍ୟାତ ସେଲୁଲାର ଜେଲ୍‌ରେ ହଜାର ହଜାର ଭାରତୀୟ ବନ୍ଦୀ । ବହୁ ଦୁଃଖକଷ୍ଟ ଭିତରେ ସେମାନେ ସେଠାରେ ରହିଥିଲେ । ଘଣ୍ଟା ପିଟାପିଟାରୁ ଘଣା ପେଲା ଏବଂ କଠିନ କାମ କରୁଥିଲେ । ତାଙ୍କୁ ଝୁଲା ତଳିପାରେ ମାରି ସେମାନେ ଗଡ଼ୁଥିଲେ । ହାତରୁ ପାଦରୁ ଫିସ୍‌ଫିସ୍ ରକ୍ତ ଝରିଯାଏ । ଖାଇବାକୁ ପୁଣି ଶୁଖିଲା ରୁଟି କେଇଖଣ୍ଡ ବା ଭାତ ଦିମୁଠା । ଶୋଇବାକୁ ତଳ କଠିନ ମେଝିଆ ବା ମାଟି ଚଟାଣ ।

ଭାରତର ମୂଳଭୂଇଁଠାରୁ ଶହ ଶହ କିଲୋମିଟର ଦୂର । ଅଥଳ ସମୁଦ୍ର ପାରି ହୋଇ ସେଠାକୁ ଯିବାକୁ ହୁଏ ପାଣି ଜାହାଜରେ । ଦରିଆର କଳାକୁମର ପାଣି । ତେଣୁ ସେଇ ଜେଲ୍‌କୁ ଗଲେ କଳାପାଣି ଦଣ୍ଡ ମିଳିଲା ବୋଲି କୁହାଯାଏ । ଫିରିଙ୍ଗି ସରକାର ଏଇ ଦଣ୍ଡ ଦେଉଥିଲା ।

୧୯୨୦ ମସିହା । ଜେଲର ଗୋଟିଏ ଛୋଟ ବଖରାରେ ବସିଥିଲେ ଜଣେ ବନ୍ଦୀ । ସଞ୍ଜ ଲାଗି ଆସୁଥିଲା । ସେ ଭାବୁଥିଲେ ଅତୀତର କେତେକଥା– ଆକାଶପାତାଳ, ସୁଖଦୁଃଖ, ଆଶା ନିରାଶାର କଥା । ବୟସ ଗଡ଼ି ଚାଲାଣି । ବୁଢ଼ା ହେବାରୁ ଦେହର ବଳ ସିନା କମି ଗଲାଣି, ମନର ବଳ ଦବି ନାହିଁ । କାହିଁକି ତାଙ୍କୁ ଏ ଦଣ୍ଡ ? ତାଙ୍କ ନିଜର ସୁଖସୁବିଧା ପାଇଁ ସେ କ'ଣ ବେଆଇନ କାମ କରିଥିଲେ ? ସେଥିପାଇଁ ସେ କେତେ ଦୁଃଖକଷ୍ଟ ଭୋଗୁ ନାହାନ୍ତି ! ନିଜ ଦେଶକୁ ସ୍ୱାଧୀନ କରିବା ପାଇଁ ସେ ଲାଗିଥିଲେ । ନିଜ ଦେଶର ମାନ ସମ୍ମାନ ପାଇଁ ସେ ଲଢ଼େଇ କରିଥିଲେ । ସେ କହୁଥିଲେ– ସାତ ଦରିଆ ସେପାରିରୁ ଗୋରା ଦେପାଗ୍ରା ଆସି ଆମ ଦେଶରେ ରାଜୁତି କରିବେ ! ଆମ ଲୋକଙ୍କୁ ମାରିଲେ, ଅପମାନ ଦେଲେ, ହଇରାଣ ହରକତ କଲେ ! ଆମେ ଏ ସବୁ କ'ଣ ମୁଣ୍ଡ ପାତି ସହିଥାନ୍ତୁ ?

କଳାପାଣିର ଶାସକ ଆସି ତାଙ୍କୁ କହିଲେ– ପାଟଣାଣୀ, ତୁମର ଦଣ୍ଡକାଳ ସରିଆସିଲା । ତୁମ ଉପରେ ଖୁସି ହୋଇ ତୁମକୁ ଜେଲ୍‌ରୁ ମୁକୁଳାଇ ଦେବାକୁ ଆମେ ଚାହୁଁଛୁ । ତୁମେ ନିଜ ଦେଶକୁ ଫେରିଯିବାକୁ ଚାହୁଁ ?

ପାଟଣାଣୀ ଶୁଖିଲା ହସଟେ ହସିଦେଇ କହିଲେ– ସାହେବ, ଜନ୍ମମାଟି କୋଳକୁ ଯିବାକୁ କିଏ ନଚାହେଁ କିନ୍ତୁ ତୁମେ ଗୋଟିଏ ସର୍ତ୍ତରେ ରାଜିହେବ ? ତୁମେ ମୋ ଶ୍ୱଶୁରଙ୍କ ମୁଣ୍ଡ କାଟିବାକୁ ଅନୁମତି ଦେଇ ପାରିବ ? ତା'ହେଲେ ଯାଇ ମୁଁ ନିଜ ଦେଶକୁ ଫେରିଯିବି । ନହେଲେ, ଯିବି ନାହିଁ ।

ସାହେବ ଶାସକ ପାଟଣାଣୀଙ୍କ କଥା ଶୁଣି ଅବାକ୍ ହେଲେ । କହିଲେ– ପାଟଣାଣୀ, ତୁମର ସାହସ ତ କମ୍ ନୁହେଁ ? ତୁମେ ଅଭିମାନ କରି ନିଜ ଦେଶକୁ ନଯାଇ ପାର କିନ୍ତୁ ତୁମେ ଯେଉଁ ସର୍ତ୍ତ ରଖୁଛ, ତାକୁ କିଏ ମାନିନେବ ?

ଶେଷରେ ପାଟଣାଣୀଙ୍କ ଦାବି ପୂରଣ ହୋଇ ପାରିଲା ନାହିଁ । ସାରା ଜୀବନ ସେ କଳାପାଣିରେ କଟାଇଲେ । ନିଜର ମାଟି-ମାଆ କୋଳକୁ ଆଉ ସେ ଥରେ ଫେରି ପାରିଲେ ନାହିଁ ।

ଏଇ ଅଭିମାନୀ ପାଟଣାଣୀ କିଏ ? ନିଜ ଶ୍ୱଶୁରଙ୍କ ଉପରେ ତାଙ୍କର ଏତେ ରାଗ କାହିଁକି ? ମାଟି ମାଆର ମୁକ୍ତି ପାଇଁ ସେ କ'ଣ କରିଥିଲେ ?

ସବୁଜ ସୁନ୍ଦର ବାଣପୁର ଅଞ୍ଚଳର ଦେଓଗାଁ ଗ୍ରାମ । ଅଳ୍ପ ଦୂରରେ ଭାଲେରୀ ପାହାଡ଼ ମୁଣ୍ଡ ଟେକି ଠିଆ ହୋଇଛି କେଉଁ କାଳରୁ । ଅରାଙ୍ଗଠାରୁ ନୀଳାଦ୍ରିପ୍ରସାଦ, ବରବରା ଠାରୁ ବଙ୍କାଡ଼ଗଡ଼ ଧରି ଶହଶହ କିଲୋମିଟର ବ୍ୟାପୀ ଯାଇଛି ଖାଲି ଜଙ୍ଗଲ ଆଉ ଜଙ୍ଗଲ । ଏବେ ସିନା ଏହା ଉଜୁଡ଼ି ଗଲାଣି । ଆଗେ ତାହା ଘଞ୍ଚ ଅରଣ୍ୟ ଥିଲା । ଦିନ ଦ୍ୱିପହରରେ ବି ସୂର୍ଯ୍ୟ କିରଣ ତଳେ ପଡ଼ୁ ନଥିଲା । ବାଘ, ଭାଲୁ, ମିରିଗ, ଶମ୍ବର ଆଦି ବହୁ ପଶୁପକ୍ଷୀ ସେଠାରେ ଆତଯାତ ହେଉଥିଲେ ।

ଏଇ ବିରାଟ ଜଙ୍ଗଲ ଅଞ୍ଚଳର ଦଳବେହେରା ବା ଦଳ ବିଶୋଇ ଥିଲେ ଶ୍ୟାମସୁନ୍ଦର ପାଟଣାଣୀ । ତାଙ୍କ ପରେ ତାଙ୍କ ପୁଅ କୁବିଦାସ ପାଟଣାଣୀ ହେଲେ ବାଣପୁର ମାଳ ଅଞ୍ଚଳର ମଉଡ଼ମଣି । ପିଲାଦିନୁ ସେ କୁସ୍ତିକସରତ, ଧନୁଶର ଓ ଖଣ୍ଡା ଚଳୁଆର ଯୁଦ୍ଧ, ଘୋଡ଼ା ଚଢ଼ା ସବୁଥିରେ ସମସ୍ତଙ୍କୁ ଟପି ଯାଉଥିଲେ । ସେ ଯେମିତି ସୁସ୍ଥ, ସେମିତି ସୁନ୍ଦର ଥିଲେ । ବାଣପୁର ଅଞ୍ଚଳର ପାଇକମାନଙ୍କ ଠାରୁ ମାଳ ଅଞ୍ଚଳର ଆଦିବାସୀମାନେ ଯାଏ, ସମସ୍ତେ ତାଙ୍କୁ ରାଜି ମାନୁଥିଲେ ନେତା ଭାବରେ ।

ଯେତେବେଳେ ଫିରିଙ୍ଗି ଫଉଜ ଖୋର୍ଦ୍ଧା ମୁଲକର ରାଜା ହେଲେ, ପାଇକମାନେ ସେମାନଙ୍କର ବିରୋଧ କଲେ । ଇଂରେଜ ଜାତି ଜନେ ଜନେ ଆଉ କେତେଜଣେ ସମସ୍ତଙ୍କୁ ଅଙ୍ଗିଆରକୁ ଆଣିଲେ । ତାଙ୍କ ବିରୁଦ୍ଧରେ ଯେଉଁମାନେ ମୁଣ୍ଡଟେକିଲେ, ସେମାନଙ୍କୁ କଠିନ ଦଣ୍ଡ ଦିଆଗଲା । ଯେଉଁ ପାଇକମାନେ ରାଜାଙ୍କଠାରୁ ମାଗଣା ଜମି ପାଇ ଭୋଗ ଦଖଲ କରୁଥିଲେ, ସେମାନଙ୍କଠାରୁ ଫିରିଙ୍ଗି ସରକାର ବହୁ ଖଜଣା ଆଦାୟ କଲେ । ସେମାନଙ୍କର ଅଖଡ଼ାଘର ଭାଙ୍ଗିଦେଲେ । ସେମାନଙ୍କର ଦଳପତି ବା ଦଳବେହେରାଙ୍କଠାରୁ ଜାଗିରି ଜମି ଛଡାଇ ନେଲେ । ଇଂରେଜମାନେ ବୋଇକରାମାନଙ୍କୁ ଏଇ ସବୁ ଜମି ଦେଇ ନିଜ ଅଧୀନରେ ରଖିଲେ ।

ମହାଦେବଙ୍କଠାରୁ ନାଗସାପର କୋପ ଅଧିକ । ଇଂରେଜ ସରକାରଙ୍କଠାରୁ ତାଙ୍କ ବୋଇକରାମାନଙ୍କର ଅତ୍ୟାଚାର ବଳିଗଲା । ଯେଉଁମାନେ ଲୋକଙ୍କଠାରୁ ଖଜଣା ଅସୁଲ କଲେ, ସେମାନେ ନାନା ପ୍ରକାର ହଇରାଣ ହରକତ କଲେ । ଯେଉଁ ସିପେହୀ ଫଉଜ ଦେଶରେ ଶାନ୍ତି ଶୃଙ୍ଖଳା ରକ୍ଷା ପାଇଁ ମୁକରିର ହୋଇଥିଲେ, ସେମାନେ ଲୋକଙ୍କଠୁ ଧମକାଇ ଚମକାଇ ନାନା ପ୍ରକାର ଅତ୍ୟାଚାର କଲେ ।

ସବୁ ଅତ୍ୟାଚାରର ବୋଝ ଉପରେ ନଳିତା ବିଡ଼ା ହେଲା ପୁରୀ ଠାକୁର ରାଜାଙ୍କ ଅପମାନ । ତାଙ୍କୁ ଜେଲ୍‌ରେ ରଖାଗଲା । ବଡ଼ ଦେଉଳରେ ତାଙ୍କର ଅଧିକାର ରହିଲା ନାହିଁ । ପୂଜାପାର୍ବଣରେ ତାଙ୍କର ନାଁ ମଧ୍ୟ ପଡ଼ିଲା ନାହିଁ । ଓଡ଼ିଆ ଜାତି ପୁରୀ ରାଜାଙ୍କୁ ଶ୍ରୀ ଜଗନ୍ନାଥଙ୍କର ଚଳନ୍ତି ପ୍ରତିମା ଭାବରେ ପୂଜା କରି ଆସିଥିଲା । ତାଙ୍କୁ ଏପରି ଅପମାନ ଦେବା ଫଳରେ ଓଡ଼ିଆମାନଙ୍କ ମନରେ ଅସନ୍ତୋଷ ଖେଳିଗଲା । ପାଇକମାନେ ରାଗରେ ରକ୍ତ ସ୍ତରକ ଗ୍ରେବାଇଲେ । ସେମାନେ ବେଳକାଳ ରଣି, ଫିରିଙ୍ଗି ଫଉଜଙ୍କୁ ଧ୍ୱଂସ କରି ଦେବାକୁ ମସୁଧା କଲେ ।

୧୮୧୭ ମସିହାର କଥା । ବୁକ୍ସିବାସ ପାଟଣାଣୀ ଫିରିଙ୍ଗି ଫଉଜଙ୍କୁ ଦେଶରୁ ତଡ଼ିଦେବା ପାଇଁ ଅଣ୍ଟାଭିଡ଼ି ବାହାରିଲେ । ସାତ ଦରିଆ ସେପାରିରୁ ବେପାର କରିବାକୁ ଆସି ସେମାନେ ଏ ଦେଶରେ ହାକିମି କରିବେ, ସେ ଏହା ସହି ପାରିଲେ ନାହିଁ । ସେ ପାଇକମାନଙ୍କୁ ମତାଇଲେ ଆଉ ଚେତାଇଲେ । ସେ ନିଜର ସୁଖ ସୁବିଧା ଭୁଲିଯାଇ ମାଟିମାଆକୁ ଇଂରେଜମାନଙ୍କ ହାତରୁ ମୁକୁଳାଇବା ପାଇଁ ଲାଗିଗଲେ ।

ବୀରମାଟି ବାଣପୁରକୁ ସ୍ୱାଧୀନ କରିବା ପାଇଁ ତାଙ୍କ ମନ ବିଦ୍ରୋହ କରି ଉଠିଲା । ସେ ସାରା ଜାତିକୁ ଜଗାଇ ଦେଲେ । ସେ ପାଇକମାନଙ୍କୁ କହିଲେ— ମାଟିମାଆକୁ ବିଦେଶୀ ହାତରୁ ମୁକୁଳାଇବା କ୍ଷତ୍ରିୟର କର୍ତ୍ତବ୍ୟ । ଜାତିର ମାନସମ୍ମାନ ରକ୍ଷା କରିବା ତାର କର୍ତ୍ତବ୍ୟ । ଜୀବନ ଯାଉ, ଇଜ୍ଜତ ରହୁ । ଯୁଦ୍ଧ କରି ଜୀବନ ଦେବା ତା ପକ୍ଷେ ଗୌରବର କଥା । ପ୍ରାଣ ଭୟରେ ସେ କେବେ ଶତ୍ରୁର ଅଧୀନତା ସ୍ୱୀକାର କରି ନାହିଁ । ହସି ହସି ଦେଶ ପାଇଁ ପ୍ରାଣବଳି ଦେବା ପାଇକ ପୁଅର ପ୍ରଧାନ କାମ ।

ବୁକ୍ସିବାସଙ୍କର ନେତୃତ୍ୱରେ ସାରା ବାଣପୁର ଅଞ୍ଚଳ ମାତି ଉଠିଲା । ପାଇକମାନେ ଦଳବଳ ହୋଇ ପୁରୁଣା ହାତହତିଆର ଧରି ଧାଇଁଲେ । ଗାଁରୁ ଗାଁକୁ ବଣ ନିଆଁ ପରି ଆନ୍ଦୋଳନ ମାଡ଼ିଗଲା । "ମାର ବା ମର" ହେଲା ସେମାନଙ୍କର ନୀତି । ଫିରିଙ୍ଗି ସରକାରଙ୍କ କଚେରୀ ଆଉ ଖଜଣାଖାନା ଲୁଟ କଲେ । ସେଇ ଦଳର ଲୋକଙ୍କ ଉପରେ ଚଢ଼ାଉ କଲେ । ସେମାନଙ୍କ ବୋଇକରାମାନଙ୍କୁ ମଉକା ଦେଖି ମାରିଦେଲେ ବା କାବୁ କରିନେଲେ ।

ମାଳ ଅଞ୍ଚଳର ଆଦିବାସୀ ବିଶେଷତଃ କନ୍ଧମାନେ ପାଟଣାଣୀଙ୍କ କଥାରେ ଅଥୟ ହୋଇ ପଡ଼ିଲେ । ସେମାନଙ୍କର ନେତା ଥିଲେ ଲୋଚନା ଆଉ କନ୍ଧ ସର୍ଦ୍ଦାର ଭାବରେ ସବୁଠି ଜଣାଶୁଣା ହେଲେ । ସେ ତାଙ୍କର ଦଳବଳ ଧରି ପାଟଣାଣୀଙ୍କ ପାଖରେ ପହଞ୍ଚିଲେ । କେତେବେଳେ ଜଙ୍ଗଲ ଆଉ ପାହାଡ଼ଗୁମ୍ଫା ଭିତରେ ଛପି ରହିଲେ ତ କେତେବେଳେ ଜଙ୍ଗଲରୁ ବାହାରି ଆସି ଫିରିଙ୍ଗି ଫଉଜ ଆଉ ସରକାରୀ ଅଫିସ ଉପରେ ଚଢ଼ାଉ କଲେ ।

ମାତ୍ର ଫିରିଙ୍ଗି ଫଉଜ ଆଧୁନିକ ଅସ୍ତ୍ରଶସ୍ତ୍ର ଧରି ଲଢେଇ କଲେ । ସେମାନଙ୍କର ଗୁଳିଗୋଳା, ବନ୍ଧୁକ କମାଣ ପାଖରେ ପାଇକମାନଙ୍କର ଖଣ୍ଡା ତଲୁଆର ଓ କନ୍ଧସେନାଙ୍କର ଧନୁଶର କି ସମକକ୍ଷ ପଡ଼ିଥାନ୍ତା ? ଫଳରେ ପାଇକ ଆଉ କନ୍ଧ ସୈନ୍ୟମାନଙ୍କ ମଧ୍ୟରୁ ଅନେକ ଖଣ୍ଡିଆ ଖାବରା ହେଲେ ତ କେତେ ମରି ଉଡ଼ିଗଲେ । ତେଣୁ ଜଙ୍ଗଲରେ ଲୁଚି ଛପି ମଉକା ଉଣ୍ଡି ସରକାରୀ କର୍ମଚାରୀ ପୋଲିସ ଫଉଜଙ୍କୁ ମାରିଲେ ଆଉ ଖଜଣାଖାନା, ଥାନା ଆଦି ଲୁଟି କଲେ । ଇଂରେଜ ସରକାର ବହୁ ଅସୁବିଧାରେ ପଡ଼ିଲେ । କିପରି ଏହି ବିଦ୍ରୋହ ଦମନ କରିବେ, ତାର ଉପାୟ ଚିନ୍ତା କଲେ ।

ଫିରିଙ୍ଗି ସରକାର ବାଣପୁରଠାରେ ଗୋଟିଏ ନୂଆ ଥାନା ଖୋଲି ବହୁ ସଂଖ୍ୟାରେ ସିପେହୀ ଫଉଜ ରଖିଲେ । ଛକାଛକି ଦେଖି ଫିରିଙ୍ଗି ଫଉଜ ଛାଉଣି ପକାଇଲେ । ବିଦ୍ରୋହୀମାନଙ୍କର ଗତିବିଧି ଲକ୍ଷ୍ୟ କରିବା ସଙ୍ଗେ ସଙ୍ଗେ କେଉଁଠି କିଛି ଅଘଟଣ ଘଟିଲେ ତାର ମୁକାବିଲା କରିବାକୁ ସେମାନେ ଜଗି ରହିଲେ । ଲୋକମାନଙ୍କଠାରୁ ଜୋରଜବରଦସ୍ତ ଖଜଣା ଆଦାୟ କରି ବାଣପୁର ଥାନାରେ ଜମା ରଖନ୍ତି । ବେଳା ଦେଖି ଖୋରଧା ଖଜଣାଖାନାକୁ ପଠାନ୍ତି ।

ଥରେ ରାତି ଅଧ । ବିଦ୍ରୋହୀମାନେ ହଠାତ୍ ବାଣପୁର ଥାନା ଉପରେ ଚଢ଼ାଉ କଲେ । ଖୁବ୍ ଲଢେଇ ହେଲା । ବହୁ ସିପେହୀ ମଲେ । ଆଉ ଅନେକ ଖଣ୍ଡିଆ ଖାବରା ହେଲେ । ପାଇକ ଆଉ କନ୍ଧମାନେ ମିଶି ଥାନାରେ ନିଆଁ ଲଗାଇ ଦେଲେ । ସେଠାରେ ଜମାଥିବା ଖଜଣାତକ ଲୁଟ କରି ନେଲେ । ଗୋରା ପଲଟଣ ଏହି ଖବର ପାଇ ବାଣପୁର ଆସିଲେ । କିନ୍ତୁ ସେମାନେ ବିଦ୍ରୋହୀ ପାଇକ ଓ କନ୍ଧମାନଙ୍କୁ ପାରିଲେ ନାହିଁ । ସେମାନଙ୍କ ଭିତରୁ ବହୁତ ମଲେ ଆଉ କେତେ ଜୀବନ ବିକଳରେ ପଳାଇଲେ ।

ଶାଳିଆ ନଈକୂଳ ପଲଟଣ ପଡ଼ିଆରେ ଯେଉଁଠି ଆଜି ପଶୁମେଳା ଯାତ ଖୁବ୍ ଜାକଜମକରେ ହୁଏ, ସେଠି ଇଂରେଜ ସେନାପତି ବେଲ୍‌ସ ପରାସ୍ତ ହେଲେ । ବାଣପୁର ଅଞ୍ଚଳ ନିଜକୁ ସ୍ୱାଧୀନ ବୋଲି ଘୋଷଣା କଲେ । ଇଂରେଜ ସରକାରଙ୍କ ଅକଲ ଗୁଡ଼ୁମ ହୋଇଗଲା । କିମିତି ବିଦ୍ରୋହୀଙ୍କୁ ଦମନ କରିବେ, ଏହା ଭାବେଣି ପଡ଼ିଲା । ଖୋରଧା ମୁଲକରେ ବି ସେତିକିବେଳେ ପାଇକମାନେ ଫିରିଙ୍ଗି ଫଉଜଙ୍କ ସହିତ ପ୍ରବଳ ଯୁଦ୍ଧ କରୁଥିଲେ । ରୋଢ଼ଙ୍ଗ, ଛତ୍ରଗଡ଼, କୁହୁଡ଼ିଗଡ଼, ପାରିକୁଦଗଡ଼, ତମାଗଡ଼ ପ୍ରଭୃତି ବିଦ୍ରୋହରେ ଯୋଗ ଦେଲେ । ଜୟୀ ରାଜଗୁରୁ, ବକ୍‌ସି ଜଗବନ୍ଧୁ, ଟାପଙ୍ଗ ଦଳବେହେରା ପ୍ରଭୃତି ପାଇକ ନେତାମାନେ ସେମାନଙ୍କ ଉପରେ ଝଞ୍ଜାଆସି ଆକ୍ରମଣ କଲେ । ଇଂରେଜମାନେ ତଳିତଳାନ୍ତ ହେଲେ । ଆଧୁନିକ ଅସ୍ତ୍ରଶସ୍ତ୍ର ସଜ୍ଜିତ ଗୋରା ଫଉଜଙ୍କ ପାଖରେ ଖଣ୍ଡା ତଲୁଆର ଆଉ ଧନୁଶର କେତେକାଳ ବା ଟେକିବ ? ଶେଷରେ ସେ ହାର ମାନିଲା । ଇଂରେଜ ସରକାର ସେମାନଙ୍କ ଭିତରୁ କେତେଜଣଙ୍କୁ ଜେଲ୍ କୋରିମାନା ଦଣ୍ଡ ଦେଇ ଆଉ କେତେ ଜଣଙ୍କୁ ଫାଶୀ ଦେଲେ । ଖୋରଧା ମୁଲକରେ ମଶାଣିର ଶାନ୍ତି ବିରାଜିଲା । ହେଲେ ଲୋକମାନଙ୍କ ମନରେ ଭୟ ଆଉ ଅଶାନ୍ତି ଖେଳିଗଲା ! ଅନେକ ପାଇକ ବୀର ରାଗରେ ଜଳିବାକୁ ଲାଗିଲେ

ବୁକ୍ସିବାସ ପାଟଣାଣୀ ସେମିତି ଗଣ୍ଡଗୋଳ କରିବାରେ ଲାଗିଲେ । ଫିରିଙ୍ଗି ଫଉଜ ଆଉ ସିପେହୀ ତାଙ୍କ ପାଖରେ ହାର ମାନିଲେ । ଶେଷରେ ଇଂରେଜ ସରକାର ଘୋଷଣା କଲେ ଯେ ପାଟଣାଣୀଙ୍କୁ ଧରାଇ ଦେଲେ ବହୁ ଟଙ୍କା ପୁରସ୍କାର ମିଳିବ । କିନ୍ତୁ ନିଜ ଜାତିର ବୀର ପୁଅଙ୍କୁ ଧରାଇ ଦେବ କିଏ ? ପୁଣି ଧନ ଲୋଭରେ ତାଙ୍କୁ ଧରାଇଦେବା ଅର୍ଥ ଜାଣିଶୁଣି ମରଣକୁ ବରଣ କରିବା ।

ଫିରିଙ୍ଗି ସରକାର ଗୋଟିଏ ବଡ କୌଶଳ କଲେ । ପାଟଣାଣୀଙ୍କ ନିଜ ଶ୍ୱଶୁର ବାସୁଦେବ ନରେନ୍ଦ୍ର ସିଂହଙ୍କୁ ଜମି ଆଉ ଧନ ଲୋଭ ଦେଖାଇ ହତିଆର କଲେ । ତାଙ୍କ ଠାରୁ ଜ୍ୱାଇଁଙ୍କର ଗତିବିଧି ଠାବ କଲେ ।

ପାଟଣାଣୀ ଜଙ୍ଗଲରେ ଦିନରେ ଲୁଚି ରହନ୍ତି ସିନା ରାତିରେ ଗାଁ ଗାଁରେ ବୁଲି ଲୋକ ମାନଙ୍କୁ ମତାନ୍ତି । ପୁଣି ପ୍ରତିଦିନ ନିଜ ଗାଁ ଠାକୁରାଣୀ "ଲଙ୍କେଶ୍ୱରୀ"ଙ୍କୁ ଦର୍ଶନ କରି ତାଙ୍କର ଆଶୀର୍ବାଦ ଭିକ୍ଷା କରନ୍ତି । ଏ କଥା ତ ତାଙ୍କ ଶ୍ୱଶୁରଙ୍କୁ ଜଣାଥିଲା । ଦିନେ ସେ ବେଳକାଳ ଦେଖି ଠାକୁରାଣୀଙ୍କ ମନ୍ଦିର ପାଖରେ ଲୁଚି ରହିଲେ ।

ପାଟଣାଣୀ ଠାକୁରାଣୀଙ୍କ ଦର୍ଶନ ପାଇଁ ସେଠାରେ ପହଞ୍ଚିଲେ । ଶ୍ୱଶୁର ଝିଅବେକ ତାଙ୍କୁ ଅନୁରୋଧ କଲେ– ଝିଅ ଦେହ ଭାରି ଖରାପ । କେତେବେଳେ ଯେ ସେ ଆଖି ବୁଜିବେ, ତାର ଠିକଣା ନାହିଁ । ସ୍ୱାମୀଙ୍କୁ ଶେଷଥର ପାଇଁ ଦେଖିବାକୁ ତା' ମନ ବିକଳ ହେଉଛି ।

ପାଟଣାଣୀ ବୀର ହେଲେ ବି ତ ମଣିଷ । ବିଦ୍ରୋହୀ ହେଲେବି ତ ସେ ଜଣେ ସଂସାରୀ । ସ୍ତ୍ରୀଙ୍କୁ ଶେଷ ଦର୍ଶନ ଦେବାକୁ ସେ କିପରି ମନାକରିବେ ? ଜୀବନର ଅଧିକାଂଶ କାଳ ସେ ଫିରିଙ୍ଗି ଫଉଜଙ୍କ ସାଥୀରେ ଲଢେଇ କରି କଟାଇ ଦେଲେ । ସ୍ତ୍ରୀ ପିଲାଙ୍କର ଦୁଃଖ ସୁଖ ବୁଝିଲେ ନାହିଁ । ବିଶେଷକରି ତାଙ୍କ ସ୍ତ୍ରୀଙ୍କ ପ୍ରତି ଯେ ବହୁ ଅବହେଳା କରି ଆସିଛନ୍ତି । ଆଉ କେତେ ଦିନ ଏମିତି କରି ଚାଲିଥିବେ ? ମୃତ୍ୟୁ ପୂର୍ବରୁ ସ୍ତ୍ରୀଙ୍କୁ ଥରେ ଦେଖି ଆସିବାକୁ ଠିକ୍ କଲେ ।

ଶ୍ୱଶୁରଙ୍କ ଘରେ ପହଞ୍ଚିଲେ । ଖିଆପିଆ ଧୁମ୍‌ଧାମ୍ ଚାଲିଲା । ପାଟଣାଣୀ ତ ଖଣ୍ଡାଟିଏ ସର୍ବଦା ପାଖରେ ରଖିଥାନ୍ତି । ସେଇଠି ଥିଲେ ଯେତେ ଲୋକ ଲାଗିଲେ ବି ତାଙ୍କୁ ଧରି ପାରିବେ ନାହିଁ । ଏ କଥା ଶ୍ୱଶୁର ମଧ୍ୟ ଜାଣିଥାନ୍ତି । ସେ ତେଣୁ କହିଲେ– "ପୁଅ, ଖାଇଲା ପିଇଲା ବେଳେ ହତିଆରଟା କାହିଁକି ପାଖରେ ରଖୁଛ ? ନିଜ ଘରେ କ'ଣ ତୁମର ସନ୍ଦେହ ! ମୁଁ ଏଇଟା ଭିତରେ ରଖି ଦେଉଛି !" ଏହା କହି ସେ ତାଙ୍କ ପାଖରୁ ଖଣ୍ଡାଟି ନେଇଗଲେ ।

ଏହି ସମୟରେ ଫିରିଙ୍ଗି ଫଉଜ ତାଙ୍କୁ ଘେରିଗଲେ । ସେମାନେ ତାଙ୍କୁ ପହିଲେ କାବୁ କରିନେଲେ ! ତାଙ୍କ ଦୁଇ ହାତରେ ବେଡ଼ି ପିନ୍ଧାଇଦେଲେ ! ପାଟଣାଣୀ ଅନୁତାପ କଲେ । ଲଢେଇ କରି ସେ ମରିଥା'ନ୍ତେ ହେଲେ ! କିନ୍ତୁ ସେତେବେଳକୁ ନେଡ଼ିଗୁଡ ତ କହୁଣୀରେ । ନିଜ ଘର ଚିହ୍ନି କୁମ୍ଭୀର । ନିଜ ଶ୍ୱଶୁର ତାଙ୍କୁ ବିଶ୍ୱାସରେ ବିଷ ଦେବ, ଏକଥା ସିଏବା କାହିଁକି ଭାବିବେ ?

କନ୍ଧ ଯୁବକ ଲୋଚନା ସର୍ଦ୍ଦାର ପହଞ୍ଚିଗଲେ । ପର ହେଲେ ବି ସେ ନିଜକୁ ସମ୍ଭାଳି ପାରିଲେ ନାହିଁ । ସେ ସିପେହୀମାନଙ୍କର ପ୍ରତିରୋଧ କଲେ । ତାଙ୍କର ବନ୍ଧୁ, ତାଙ୍କର ନେତା ପାଟଣାଣୀଙ୍କୁ ମୁକୁଳାଇବାକୁ ସେ ବହୁ ଚେଷ୍ଟା କଲେ । ହେଲେ, ସେ ନିଜେ ମଧ୍ୟ ଫିରିଙ୍ଗି ଫଉଜଙ୍କ ହାତରେ ଧରା ପଡ଼ିଲେ ।

ପାଟଣାଣୀ ଆଉ ଲୋଚନା ସର୍ଦ୍ଦାରଙ୍କୁ ବେଡ଼ି ପିନ୍ଧାଇ ହାଜତରେ ରଖାଗଲା । କୋରଡା ମାଡ ଦିଆଗଲା । ନାନାକଷ୍ଟ ଦେଇ ଫିରିଙ୍ଗି ସରକାର ରାଗ ଶୁଝାଇଲେ । ବିଚାରର ପ୍ରହସନ ଚାଲିଲା । ଶେଷରେ ସେମାନଙ୍କୁ କଳାପାଣି ସଜା ମିଳିଲା । ସେମାନେ ସବୁ ଦିନ ପାଇଁ ନିଜ ମାଟି ମାଆ କୋଳରୁ ବିଦାୟ ନେଲେ ।

ବୀର ପାଇକ ନେତା ପାଟଣାଣୀଙ୍କ ଶେଷ ଜୀବନ କଟିଲା ଆଣ୍ଡାମାନ ଦ୍ୱୀପର ସେଲୁଲାର ଜେଲ୍‌ରେ । ନାନା ଦୁଃଖ କଷ୍ଟ ଭିତରେ ସେ ସବୁ ହସି ହସି ସହିଗଲେ । ମାଟି ମାଆର ମୁକତି ପାଇଁ ସେ ଜୀବନକୁ ବଳିଦେଲେ । ସବୁଦିନ ପାଇଁ ସେ ହେଲେ ଆମର ଅମର ସହିଦ ।

କ୍ୱାଟର ନମ୍ବର ୩୧/୨
ଟାଇପ୍–ଆଇ.ଭି-ଏ ୟୁନିଟ୍–୨, ଭୁବନେଶ୍ୱର



କଟକ ସହରର ବର୍ଷାଜଳ ନିଷ୍କାସନ ସ୍ଥାନରେ ମୁଖ୍ୟମନ୍ତ୍ରୀ...

# ଐତିହାସିକ ଅଗଷ୍ଟ ପନ୍ଦରର ପୃଷ୍ଠଭୂମି ଓ ସ୍ୱାଧୀନତାର ନୂତନ ଦୃଷ୍ଟିଭଙ୍ଗୀ

ଶ୍ରୀ ତାରାକାନ୍ତ ମହାନ୍ତି

ସମୟର ରଥଚକ ଗଡ଼ି ଚାଲିଛି । ଇତି ମଧ୍ୟରେ ଭାରତର ସ୍ୱାଧୀନତା ପ୍ରାପ୍ତିର ୩୯ ବର୍ଷ ପୂର୍ତ୍ତି ହେବାକୁ ଯାଉଛି । ୧୯୮୬ ଅଗଷ୍ଟ ପନ୍ଦରରେ ଆମେ ସ୍ୱାଧୀନତା ପ୍ରାପ୍ତିର ସ୍ମୃତି ଦଶନ୍ଧିରେ ପଦାର୍ପଣ କରିବା । ଯେଉଁ ଭାରତ ଆଜି ବିଶ୍ୱ ଦରବାରରେ ଏକ ସାର୍ବଭୌମ ସମାଜବାଦୀ ଧର୍ମନିରପେକ୍ଷ ଗଣତାନ୍ତ୍ରିକ ସାଧାରଣତନ୍ତ୍ର ରୂପେ ସ୍ୱୀକୃତି ଲାଭ କରିଛି ତାର ପ୍ରାକ୍ ସ୍ୱାଧୀନତା କାଳରେ ଇତିହାସ, ତ୍ୟାଗର ଇତିହାସ, ଲୁହ ଲହୁର ଇତିହାସ । ଏଥିପାଇଁ ବହୁ ବୀରଙ୍କୁ ଶହୀଦ୍ ହେବାକୁ ପଡ଼ିଥିଲା । ସେଥିପାଇଁ ଜଣେ ପ୍ରସିଦ୍ଧ ହିନ୍ଦୀ କବି ଗାଇଛନ୍ତି—

"ବୁନ୍ଦେ ବୁନ୍ଦେ ଲହୁ ଦେ ଚମନ୍ ସିଞ୍ଚଗୟି
ଯେ ହିନ୍ଦ୍ ଚମନ୍
ଜବ୍ ତକ୍ ହିନ୍ଦା କଲମ୍ ରହେଗୀ
ଯାଦ୍ କରେଗା ଉନ୍ କା ବତନ୍ ।"

ଆଦିପର୍ବ—

ଭାରତର ସ୍ୱାଧୀନତା ରବି ଅସ୍ତମିତ ହେଲେ ପଲାସୀଯୁଦ୍ଧ ପ୍ରାନ୍ତରରେ ୧୭୫୭ ଖ୍ରୀ:ଅ:ରେ ଯେତେବେଳେ ନବାବ୍ ସିରାଜ୍ଉଦ୍ଦୌଲାଙ୍କ ସହିତ ଚରମ ବିଶ୍ୱାସ ଘାତକତା ଆଚରଣ କଲେ ମିରଜାଫର୍ ଓ ତାଙ୍କର ଅନୁଚର ବର୍ଗ । East India Companyର ଜଣେ ନଗଣ୍ୟ କିରାଣି Lord Cliveଙ୍କର ଆରମ୍ଭ ହେଲା କ୍ରମଶଃ ବ୍ରିଟିଶ୍ ଉପନିବେଶ ଓ ସାମ୍ରାଜ୍ୟବାଦର ଜାଲ ବିସ୍ତାର । ତାପରେ ଆରମ୍ଭ ହେଲା RULE BRITANNIA RULE ନବାବ୍ ସିରାଜ୍ଉଦ୍ଦୌଲାଙ୍କ ଦେଶପ୍ରେମ ପରବର୍ତ୍ତୀ କାଳରେ ଟିପୁ ସୁଲତାନ୍, ରଣଜିତ୍ ସିଂହ ଓ ନେତାଜୀ ସୁଭାଷ ବୋଷଙ୍କୁ ବିଶେଷ ପ୍ରଭାବିତ ତଥା ଅନୁପ୍ରାଣିତ କରିଥିଲା । ଟିପୁ ସୁଲତାନ୍ ଇଂରେଜମାନଙ୍କ ବିରୁଦ୍ଧରେ ୧୭୯୯ ଖ୍ରୀ:ଅ: ପର୍ଯ୍ୟନ୍ତ ତାଙ୍କର ସଂଗ୍ରାମକୁ ଅବ୍ୟାହତ ରଖିଥିଲେ । ରଣଜିତ୍ ସିଂହ ଦୀର୍ଘ ଚାଳିଶ ବର୍ଷ କାଳ ଇଂରେଜମାନଙ୍କ ବିରୁଦ୍ଧରେ ୧୮୩୯ ଖ୍ରୀ:ଅ: ପର୍ଯ୍ୟନ୍ତ ତାଙ୍କର ସଂଗ୍ରାମକୁ ଅବ୍ୟାହତ ରଖିଥିଲେ । ପଞ୍ଜାବ କେଶରୀ ରଣଜିତ୍ ସିଂହ ଇଂରେଜ ଉପନିବେଶବାଦ୍ର ଜାଲ ଘୋଟିଆସେ ବିସ୍ତୃତ ହୋଇ ପଡ଼ୁଥିବା ଲକ୍ଷ୍ୟକରି ଓ ସର୍ବୋପରି ଇଂରେଜ ଅଧିକୃତ ଅଞ୍ଚଳକୁ ଲକ୍ଷ୍ୟକରି ଭବିଷ୍ୟତ ବାଣୀ ଶୁଣାଇଥିଲେ 'ସବ୍ ଲାଲ୍ ହୋ ଯାୟେଗା' ଅର୍ଥାତ୍ ସମଗ୍ର ଭାରତ ଦିନେ ଇଂରେଜମାନଙ୍କ କରାୟତ୍ତ ହେବ ବା ଅଧୀନକୁ ଆସିବ ।

ନେତାଜୀ ସୁଭାଷ ତରୁଣ ଥିବାବେଳେ ଥରେ ତାଙ୍କ ପିତାଙ୍କ ସହିତ ମୁର୍ଶିଦାବାଦ ପରିଭ୍ରମଣରେ ଯାଇଥିଲେ । ନବାବ ସିରାଜ୍ ଉଦ୍ଦୌଲାଙ୍କ କବର ସନ୍ଦର୍ଶନରେ ତାଙ୍କ ମୁଖରୁ ସ୍ୱତଃ ସ୍ଫୁରଣ ହୋଇଥିଲା 'ପିତା ଏହି ଯୁଦ୍ଧ ପ୍ରାନ୍ତରର ଇତିହାସକୁ ଦିନେ ମୁଁ ମୁଖରିତ କରିବି' । ଇଂରେଜମାନେ ଅସହାୟ ଅବସ୍ଥାରେ ନବାବ ସିରାଜ ଉଦ୍ଦୌଲାଙ୍କୁ ଗୁଳିକରି ମାରିଲେ, ମୁଁ ଏହାର ଚରମ ପ୍ରତିଶୋଧ ନେବି' । ପରବର୍ତ୍ତୀକାଳରେ ନେତାଜୀ ସୁଭାଷ ତାହା ଅକ୍ଷରେ ଅକ୍ଷରେ କାର୍ଯ୍ୟକାରୀ କରିଗଲେ । ଭାରତର ସ୍ୱାଧୀନତା ସଂଗ୍ରାମର ପ୍ରଥମ ଅଧ୍ୟାୟ ୧୮୫୭ ସିପାହୀ ବିଦ୍ରୋହ ପୂର୍ବରୁ ଓଡ଼ିଶାରେ ୧୮୧୭ ଖ୍ରୀ:ଅ:ରେ ପାଇକ ବିଦ୍ରୋହ ମୁଣ୍ଡ ଟେକିଥିଲା ଓ ଖୋର୍ଦ୍ଧାର ବକ୍ସି ଜଗବନ୍ଧୁ ବିଦ୍ୟାଧର ଏହାର ନେତୃତ୍ୱ ନେଇ ଶହୀଦ୍ ହୋଇଥିଲେ । ସମ୍ବଲପୁରର ବୀର ସୁରେନ୍ଦ୍ର ସାଏ ତାଙ୍କ ମୃତ୍ୟୁ ପର୍ଯ୍ୟନ୍ତ ଅର୍ଥାତ୍ ୧୮୮୩ ପର୍ଯ୍ୟନ୍ତ ଏହି ବିଦ୍ରୋହର ଅଗ୍ନିଶିଖାକୁ ପ୍ରଜ୍ଜ୍ୱଳିତ କରି ରଖିଥିଲେ । ମଧ୍ୟ ପ୍ରଦେଶର ଅସିରଗଡ ଦୁର୍ଗରେ ବନ୍ଦୀ ହୋଇ ଶେଷ ନିଃଶ୍ୱାସ ତ୍ୟାଗ କରିଥିଲେ ହେଁ ସେ ଥିଲେ ସିପାହୀ ବିଦ୍ରୋହର ଅନ୍ତିମ ଦୀପଶିଖା ।

ବ୍ରିଟିଶ୍ ସମ୍ରାଜ୍ୟବାଦ୍ର ସଂପ୍ରସାରଣ ପାଇଁ ଲର୍ଡ ଡେଲ୍‌ହାଉସିଙ୍କ ପ୍ରବର୍ତ୍ତିତ ରାଜସ୍ୱତ୍ୱ ଲୋପ ନୀତି (Doctrine of Lapse) ବଳରେ ସତରା, ଝାନ୍ସି, ନାଗପୁର ଓ ସମ୍ବଲପୁର ପ୍ରଭୃତି ବ୍ରିଟିଶ୍ ଶାସନାଧୀନ ହୋଇ ପଡ଼ିଲା ।

ଭାରତୀୟ ସିପାହୀମାନେ ବିଶେଷକରି ହିନ୍ଦୁ ସିପାହୀମାନେ ଗୋରୁ ଚର୍ବିରେ ନିର୍ମିତ ବନ୍ଧୁକ ଟୋଟା ଓ ମୁସଲମାନ ସିପାହୀମାନେ ଘୁଷୁରି ଚର୍ବିରେ ନିର୍ମିତ ବନ୍ଧୁକ ଟୋଟାକୁ ଦାନ୍ତରେ କାମୁଡ଼ି ଫୁଟାଇବାକୁ ପଡୁଥିବାରୁ ସେଥିପାଇଁ ସେମାନଙ୍କ ମଧ୍ୟରେ ଅସନ୍ତୋଷ ବ୍ୟାପିଗଲା । ଏହି ଅସନ୍ତୋଷ ଶେଷରେ ବଡ ଧରଣର ବିଦ୍ରୋହ ରୂପ ନେଇଥିଲା । ବ୍ରିଟିଶ୍ ବିରୋଧରେ ପ୍ରଥମ ଥର ପାଇଁ ସଂଗଠିତ ମୁକ୍ତି ସଂଗ୍ରାମରେ ଯୋଗ

ଙ୍କର ତଥା ବୀରାଙ୍ଗନାମାନେ ଝାସ ଦେଇ ଶହୀଦ୍ ହୋଇଛନ୍ତି, ସେମାନେ ହେଲେ ଝାନ୍ସିରାଣୀ ଲକ୍ଷ୍ମୀବାଈ, ନାନା ସାହେବ ଓ ତାନ୍ତିଆ ତୋପେ । ୧୮୫୭ ମଇ ୧୦ରେ ମିରଟରୁ ସୂତ୍ରପାତ ହୋଇଥିବା ବିପ୍ଳବ କ୍ରମେ କାନପୁର, ଲକ୍ଷ୍ନୌ, ଅମ୍ବାଲା, ଦିଲ୍ଲୀ ପର୍ଯ୍ୟନ୍ତ ବ୍ୟାପିଗଲା । ସେମାନେ ଭାରତର ଶେଷ ମୋଗଲ ସମ୍ରାଟ ବାହାଦୁର ଶାହାଙ୍କୁ ପୁରା ନାମ ସିରାଜୁଦ୍ଦିନ୍ ମହମ୍ମଦ୍ ଆବୁ ଜାଫର୍ (୧୭୭୫-୧୮୬୨)ଙ୍କୁ ଭାରତର ସମ୍ରାଟ ବୋଲି ଘୋଷଣା କଲେ । ବିଦ୍ରୋହର ପ୍ରତୀକ ସଙ୍କେତ ତଥା ନିଦର୍ଶନ ରୂପେ ପଦ୍ମଫୁଲ ଓ ଚପାଟିକୁ (ରୁଟି) ରଖାଗଲା । ସବୁଜ ଓ ଗୈରିକ ପତାକା ସଂଗ୍ରାମର ପତାକା ରୂପେ ଗ୍ରହଣ କରାଗଲା ।

**ବାହାଦୁର ଶାହା ଜାଫରଙ୍କ ଦେଶ ପ୍ରେମର ପଟ୍ଟାନ୍ତର ନାହିଁ—**

ସିପାହୀ ବିଦ୍ରୋହ ସମୟରେ ସେ ଉଭୟ ହିନ୍ଦୁ ଓ ମୁସଲମାନଙ୍କୁ ମୁକ୍ତି ସଂଗ୍ରାମରେ ଝାସ ଦେବା ପାଇଁ ଯେଉଁ ନିବେଦନ କରିଥିଲେ ତାହା ଇଂରାଜୀରେ ନିମ୍ନମତେ ପ୍ରଦାନ କରାଗଲା—"Hindus and Muslims of Hindustan! Arise my brothers, My Indian brothers, Arise."

ହିନ୍ଦୁସ୍ଥାନର ହିନ୍ଦୁ ଓ ମୁସଲମାନ ଭାଇ ଓ ଭଉଣୀମାନେ ଜାଗିଉଠ । ସୁପ୍ତ ହୋଇ ରୁହ ନାହିଁ । ଭଗବାନ ତୁମକୁ ଯେଉଁ ଦାନ ଦେଇଛନ୍ତି, ତା'ମଧ୍ୟରୁ ସ୍ୱାଧୀନତା ହେଉଛି ଅତି ମୂଲ୍ୟବାନ ଉପଢୌକନ । ହେ ମୋର ଭାରତର ଭାଇ ଭଉଣୀମାନେ ପୁଣି ଥରେ ଜାଗିଉଠ, ସ୍ୱାଧୀନତା ପ୍ରାପ୍ତି ଲାଗି ନବଉନ୍ମାଦନାରେ ଅଗ୍ରସର ହୁଅ ।

ବାହାଦୁର ଶାହା ଜାଫର ପ୍ରାଣମୂର୍ଚ୍ଛା ସଂଗ୍ରାମ କରି ଇଂରେଜମାନଙ୍କ ହାତରେ ବନ୍ଦୀ ହେଲେ । ଦିଲ୍ଲୀ ଇଂରେଜମାନଙ୍କ ଅକ୍ତିଆରକୁ ଆସିଲା । ଲେଫ୍‌ଟାଣ୍ଟ ହଡ୍‌ସନ୍ (HUDSON) ଦିଲ୍ଲୀରେ 'ସର୍ବସାଧାରଣଙ୍କ ସମକ୍ଷରେ ଦୁଇପୁଅ ଓ ନାତିଙ୍କୁ ଗୁଳିକରି ମାରି ଯେତେବେଳେ କଟାମୁଣ୍ଡ ଭେଟିଦେଲେ, ସେତେବେଳେ ବାହାଦୁର ଶାହା ଜାଫର୍ ଯେଉଁ ଧୈର୍ଯ୍ୟ ପ୍ରଦର୍ଶନ କରିଛନ୍ତି ତାହିର ପଟ୍ଟାନ୍ତର ନାହିଁ । ସେ ଅବିଚଳିତ, ଆଖିରେ ଲୁହ ନାହିଁ । ହଡ୍‌ସନ୍ ଯେତେବେଳେ ପଚାରିଲେ ଏ ବୁକୁ ଫଟା ଦୃଶ୍ୟ ଦେଖି ତୁମ ଆଖିରେ **ଲୁହ ନାହିଁ** ବାହାଦୁର ଶାହା ଜାଫର୍ । ଏତବଡ ଅନୈତିକଥା । ସେତେବେଳେ ବାହାଦୁର ଶାହା ଜାଫର କହିଛନ୍ତି । "ହଡ୍‌ସନ୍, ଭାରତର ରାଜା କାନ୍ଦି ଜାଣେ ନାହିଁ । ରାଜା କ'ଣ କେବେ କାନ୍ଦେ ? ରାଜାର ଏହି ମୁହୂର୍ତ୍ତଟି କାନ୍ଦିବା ମୁହୂର୍ତ୍ତ ନୁହେଁ ।" ତାପରେ ବାହାଦୁର ଶାହା ଜାଫରଙ୍କୁ ରେଙ୍ଗୁନ୍ ନିର୍ବାସନ କରାଯାଇଛି । ୮୭ ବର୍ଷ ବୟସରେ ୧୮୬୨ ମସିହାରେ ରେଙ୍ଗୁନ୍‌ରେ ସେ ପ୍ରାଣତ୍ୟାଗ କରିଛନ୍ତି । ରେଙ୍ଗୁନ୍‌ରେ ପ୍ରାଣତ୍ୟାଗ କରିବା ପୂର୍ବରୁ ସେ କହିଛନ୍ତି, "ହ ଖୋଦା ମେହେରବାନ୍ ଭାରତଭୂମିରେ ଯଦି ଦୁଇ ଗଜ ଯାଗା ତାଙ୍କର କବର ପାଇଁ ମିଳି ଯାଆନ୍ତା, ତେବେ ତାଙ୍କ ଆତ୍ମା ଶାନ୍ତି ପାଇ ଯାଆନ୍ତା ।" ତାଙ୍କ ଜୀବନରେ ଯଦି କିଛି ଅବଶୋଷ ରହିଯାଇଥିଲା, ତାହା ହେଉଛି କେବଳ ଭାରତଭୂମିରେ ତାଙ୍କ କବର ପାଇଁ ଦୁଇଗଜ ଯାଗା ।

**ମଧ୍ୟପର୍ବ**

୧୮୮୫ ମସିହାରେ ଭାରତୀୟ ଜାତୀୟ କଂଗ୍ରେସ ଜନ୍ମ ନେବା ପରେ ଭାରତରେ ଜାତୀୟତାବାଦର ସୂତ୍ରପାତ ହେଲା । ଭାରତୀୟଙ୍କୁ ଜାତୀୟତା ମନ୍ତ୍ରରେ ଉଦ୍‌ବୁଦ୍ଧ କରିଥିଲେ ଲାଲା ଲଜପତ୍‌ରାୟ, ବିପିନ ଚନ୍ଦ୍ର ପାଲ, ବାଳଗଙ୍ଗାଧର ତିଳକ । ତିଳକ କହୁଥିଲେ ସ୍ୱରାଜ ମୋର ଜନ୍ମଗତ ଅଧିକାର (Swaraj is my Birth Right) ୧୮୮୫ ରୁ ୧୯୧୯ ମସିହା ପର୍ଯ୍ୟନ୍ତ ଭାରତର ସ୍ୱାଧୀନତା ସଂଗ୍ରାମର ଏ ହେଉଛି ମଧ୍ୟପର୍ବ । କେଉଁ ମାର୍ଗରେ ଓ କେଉଁ ପନ୍ଥା ଅନୁସରଣ କରି ସ୍ୱାଧୀନତା ପ୍ରାପ୍ତି ହେବ, ସେତେବେଳେର ବିଶିଷ୍ଟ ଜନନାୟକଙ୍କ ମଧ୍ୟରେ ବାଦ ବିସମ୍ବାଦ ହୋଇ ପଡ଼ିଲା । ଏମାନଙ୍କ ମଧ୍ୟରୁ କେତେକଣ ଚରମପନ୍ଥୀ ବା Extremist ବାହାରିଲେ । ସେହିମାନେ ବ୍ରିଟିଶ୍ ବିରୁଦ୍ଧରେ ସଶସ୍ତ୍ର ସଂଗ୍ରାମ ଚଳାଇବାକୁ ବଦ୍ଧପରିକର ହେଲେ । ଆଉ କେତେକଙ୍କୁ ନରମପନ୍ଥୀ ବା Modera[te] କୁହାଯାଉଥିଲା । ସେମାନେ ଅହିଂସା ମାର୍ଗରେ ଭାରତର ସ୍ୱାଧୀନତା ପ୍ରା[ପ୍ତି] ପାଇଁ ସଂଗ୍ରାମ ଚଳାଇବାକୁ ଜନମତ ସୃଷ୍ଟି କଲେ । ୧୯୧୯ [ରୁ] ୧୯୪୭ ପର୍ଯ୍ୟନ୍ତ ମହାତ୍ମା ଗାନ୍ଧୀ ତତ୍କାଳୀନ ଭାରତର ରାଜନୈତି[କ] ଇତିହାସକୁ ପ୍ରଭାବିତ କରିଥିଲେ । ଏହା ଭାରତ ଇତିହାସରେ 'ଗାନ୍ଧୀଯୁଗ' (Gandhian Era) ନାମରେ ଅଭିହିତ ।

**ଅନ୍ତିମ ପର୍ବ**

ଭାରତର ସ୍ୱାଧୀନତା ସଂଗ୍ରାମର ତୃତୀୟ ପର୍ବ ଆରମ୍ଭ ହୁଏ ୧୯୧[୯] ଜାଲିଆନାୱାଲାବାଗ ହତ୍ୟାକାଣ୍ଡ ଘଟଣାରୁ । ୧୯୧୯ ଏପ୍ରିଲ୍ ୧[୩] ତାରିଖ ଭାରତ ଇତିହାସରେ ଏକ କାଳିମାମୟ ଦିବସ, ଯେଉଁଦି[ନ] ଜେନେରାଲ୍ ଡାୟାର ପଞ୍ଜାବର ଜାଲିଆନାୱାଲାବାଗଠାରେ ୪୦[୦] ନିରୀହ ଶସ୍ତ୍ରହୀନ ଲୋକଙ୍କୁ ଗୁଳି କରି ମାରିଦେଲେ । ପରେ ଇଂଲଣ୍ଡରେ ଉଦ୍ଧାମ ସିଂହ ଏହି ଜାଲିଆନାୱାଲାବାଗ୍ ହତ୍ୟାକାଣ୍ଡର ପ୍ରତିଶୋ[ଧ] ନେଇଛନ୍ତି ଜେନେରାଲ୍ ଡାୟାରଙ୍କୁ ଗୁଳିକରି ପ୍ରାଣରେ ମାରି ଦେଇ । ଉଦ୍ଧାମ ସିଂହଙ୍କ ସାହସିକତା ପରବର୍ତ୍ତୀ ସମୟରେ ଶହୀଦ୍ ଭଗତ୍ ସିଂହଙ୍କୁ ଦେଶ ପ୍ରେମରେ ଉଦ୍‌ବୁଦ୍ଧ କରାଇଛି ।

୧୯୩୦, ଏପ୍ରିଲ ୬ ତାରିଖରେ ମହାତ୍ମା ଗାନ୍ଧୀଙ୍କ ଅସହଯୋ[ଗ] ଆନ୍ଦୋଳନ ବା Civil Disobedience Movement ତତ୍କାଳୀ[ନ] ରାଜନୀତିକୁ ନୂତନ ମୋଡ ଦିଏ । ଏହା ଫଳରେ ଦେଶରେ ୬୦,୦୦୦ (ଷାଠିଏ ହଜାର) ଲୋକ ବନ୍ଦୀ ହୁଅନ୍ତି ।

**ନେତାଜୀ ସୁଭାଷଙ୍କ ଭୂମିକା:**

୧୯୩୯ ତ୍ରିପୁରୀ କଂଗ୍ରେସ ଅଧିବେଶନ ପରେ ନେତାଜୀ ସୁଭାଷ ବୋଷ ଗଠନ କରନ୍ତି ତାଙ୍କର ନୂତନ ଦଳ FORWARD BLOC ସୁଭାଷ ବୋଷ ୧୯୪୧ରେ ଜର୍ମାନୀ ଓ ତାପରେ ଜାପାନ ଅଭିମୁଖେ ଯାତ୍ରା କରନ୍ତି ଏବଂ ଜାପାନୀମାନଙ୍କ ହାତରେ ବନ୍ଦୀ ହୋଇଥିବା ଭାରତୀୟ ସୈନ୍ୟଙ୍କୁ ଖଲାସ କରି I.N.A ବା ଆଜାଦ୍ ହିନ୍ଦ୍ ଫୌଜ ଗଠନ କରନ୍ତି । ୧୯୪୩ରେ ସେ ସିଙ୍ଗାପୁରରେ ଆଜାଦ୍ ହିନ୍ଦ୍ ସରକାର ବା ସ୍ୱାଧୀନ ଭାରତ ସରକାର ଗଠନ କରନ୍ତି ଏବଂ ତାଙ୍କ ଆହ୍ୱାନରେ ଆଜାଦ୍ ହିନ୍ଦ୍ ଫୌଜ ଭାରତ ଅଭିମୁଖେ ଅଭିଯାନ ଆରମ୍ଭ କରନ୍ତି କିନ୍ତୁ ବ୍ରିଟିଶ ସେନା ବାହିନୀ ପାଖରେ ଯେତେବେଳେ ଆଜାଦ୍ ହିନ୍ଦ୍ ଫୌଜ ଆତ୍ମସମର୍ପଣ କରନ୍ତି, ସେତେବେଳେ ନେତାଜୀ ଅନ୍ତର୍ଦ୍ଧାନ ହୁଅନ୍ତି ।

୧୯୪୨ ଅଗଷ୍ଟ ୮ ରେ ବମ୍ବେଠାରେ ଅନୁଷ୍ଠିତ ହୁଏ ଭାରତୀୟ ଜାତୀୟ କଂଗ୍ରେସ କମିଟିର ବୈଠକ । ୧୯୪୨ ଅଗଷ୍ଟ ୯ ତାରିଖରେ ଗାନ୍ଧୀଙ୍କ ସମେତ ବହୁ ଶୀର୍ଷ ନେତା କାରାବରଣ କରନ୍ତି । ଭାରତ ଛାଡ ଆନ୍ଦୋଳନ (Quit India Movement) ତୀବ୍ରତର ହୁଏ ୫ ବର୍ଷକାଳ ଏଥିପାଇଁ କଠୋର ସଂଗ୍ରାମ କରାଯାଇଛି । ୧୯୪୬ ଅଗଷ୍ଟ ୧୬ରେ ସାମ୍ପ୍ରଦାୟିକ ଦଙ୍ଗା ଆରମ୍ଭ ହୁଏ । ଏହାଦ୍ୱାରା ଆନ୍ଦୋଳନ ଧିମେଇଯାଏ; ମାତ୍ର ପଣ୍ଡିତ ଜବାହାରଲାଲ ନେହେରୁ, ଲାଲବାହାଦୁର ଶାସ୍ତ୍ରୀ, ଆଚାର୍ଯ୍ୟ କୃପାଳିନୀ, ସରୋଜିନୀ ନାଇଡୁ, ମୌଲାନା ଅବୁଲ୍ କଲାମ୍ ଆଜାଦ୍, ଦାଦା ଭାଇ ନାରୋଜୀ, ସାର୍ ସୟଦ୍ ଅହମ୍ମଦ୍ ଖାଁ, ସର୍ଦ୍ଦାର ବଲ୍ଲଭ ଭାଇ ପଟେଲ୍, ଜୟ ପ୍ରକାଶନାରାୟଣ, ଡକ୍ଟର୍ ରାଜେନ୍ଦ୍ର ପ୍ରସାଦ୍, ବଦିରଦିନ ତୟାବ୍‌ଜୀ, ରାମ୍‌ମନୋହରଲାଲ ଲୋହିଆ, ଗୋବିନ୍ଦ ବଲ୍ଲଭ ପନ୍ଥ ପ୍ରମୁଖ ବହୁ ନେତା ଭାରତକୁ ସ୍ୱାଧୀନ କରିବା ପାଇଁ ଅଗଷ୍ଟ ୯ ରେ ଯେଉଁ ପୂର୍ଣ୍ଣ ସ୍ୱରାଜ ପ୍ରାପ୍ତି ପାଇଁ ଗାନ୍ଧୀଙ୍କ ନେତୃତ୍ୱରେ ଶପଥ ନେଇଥିଲେ ତଦନୁସାରେ କାର୍ଯ୍ୟ କଲେ । ତତ୍କାଳୀନ ବ୍ରିଟିଶ୍ ପ୍ରଧାନମନ୍ତ୍ରୀ ଆଟ୍‌ଲିଙ୍କ ଉଦାର ମନୋଭାବ ଓ ମହମ୍ମଦଅଲ୍ଲି ଜିନ୍ନାଙ୍କ Two Nation Theory ନୂତନ ପାକିସ୍ଥାନକୁ ଜନ୍ମ ଦେଲା ଓ ଭାରତ ୧୯୪୭ ଅଗଷ୍ଟ ପନ୍ଦରରେ ସ୍ୱାଧୀନ ହେଲା

ଭାରତର ଏହି ସ୍ୱାଧୀନତା ପ୍ରାପ୍ତି ବହୁ କଷ୍ଟଲବ୍ଧ । ଭାରତର ସଂହତି, ଏକତା ଓ ସାର୍ବଭୌମତ୍ୱକୁ ବଜାୟ ରଖିବାକୁ ହେଲେ ବିଚ୍ଛିନ୍ନତାବାଦୀ,

ପ୍ରତିକ୍ରିୟାଶୀଳ, ବିଭେଦକାରୀ ଶକ୍ତିକୁ ମୁକାବିଲା କରିବାକୁ ହେବ ଓ ସୁଦୃଢ଼ କରିବାକୁ ହେବ । ଭାରତର ସଂହତି, ଏକତା ଓ ସାର୍ବଭୌମତ୍ୱକୁ ବିଫଳ କରିବା ପାଇଁ ଅପଶକ୍ତିଙ୍କର କୁଟ ଚକ୍ରାନ୍ତକୁ ପଣ୍ଡ କରିବାକୁ ହେବ ।

ଦେଶ୍ରେ ସ୍ୱାଧୀନତା ଦିବସ ଅବସରରେ ଭାରତର ପ୍ରତ୍ୟେକ ନାଗରିକ ନିମ୍ନୋକ୍ତ ଶପଥ ନେବା ଉଚିତ ଯାହାକୁ ଆମେ 'କ୍ୱାମୀ ଏକତା ଦିବସ' ଅବସରରେ ନେଇଥାଉଁ ।

"ମୁଁ ଦେଶ ତଥା ଜାତିର ସ୍ୱାଧୀନତା ଓ ସଂହତିକୁ ବଜାୟ ରଖିବା ସଙ୍ଗେ ସଙ୍ଗେ ସୁଦୃଢ଼ କରିବା ଦିଗରେ ଉତ୍ସର୍ଗୀକୃତ ଭାବେ କାର୍ଯ୍ୟ ସମ୍ପାଦନ କରିବା ନିମନ୍ତେ ସତ୍ୟନିଷ୍ଠ ଭାବେ ଶପଥ ଗ୍ରହଣ କରୁଛି ।

ମୁଁ ପୁନର୍ବାର ପ୍ରତିଜ୍ଞା କରୁଛି ଯେ ମୁଁ କଦାପି ହିଂସାର ଆଶ୍ରୟ ନେବିନାହିଁ ଏବଂ ଧର୍ମ ତଥା ଜାତିଗତ ଓ ଆଞ୍ଚଳିକ ବାଦବିବାଦ ଓ ସମସ୍ତ ପ୍ରକାରର ମତଭେଦ ଏବଂ ଅନ୍ୟାନ୍ୟ ରାଜନୈତିକ ତଥା ଅର୍ଥନୈତିକ ଆପତ୍ତି ଅଭିଯୋଗଗୁଡ଼ିକ ଶାନ୍ତିପୂର୍ଣ୍ଣ ଭାବେ ଓ ସାମ୍ବିଧାନିକ ଉପାୟରେ ସମାଧାନ କରିବି ।"

**ସ୍ୱାଧୀନତାର ଅର୍ଥ :**

୧୯୮୪ ଅକ୍ଟୋବର ୩୦ ତାରିଖ ଦିନ ଭୁବନେଶ୍ୱର ପରେଡ୍ ପଡ଼ିଆରେ ଭାରତର ସ୍ୱର୍ଗତା ପ୍ରଧାନମନ୍ତ୍ରୀ ଶ୍ରୀମତୀ ଇନ୍ଦିରା ଗାନ୍ଧୀ କହିଥିଲେ "ସ୍ୱାଧୀନତାର ଅର୍ଥ କ'ଣ ଭୋକରେ ରହିବା, ପିନ୍ଧିବାକୁ ବସ୍ତ୍ର ନପାଇବା ଓ କାମଧନ୍ଦା ନପାଇବା ? ସ୍ୱାଧୀନତା ଆମର ଦୃଢ ହେବ ଯେତେବେଳେ ଆମେ ମହାନ୍ ନେତାମାନଙ୍କର ସ୍ୱପ୍ନକୁ ସାର୍ଥକ କରିପାରିବା । ମହାତ୍ମା ଗାନ୍ଧୀଙ୍କ ଭଳି ବହୁ ମହାନ୍ ନେତା ଆମ ସହିତ ଥିଲେ । ପ୍ରତ୍ୟେକ ଧର୍ମର ନେତା ଥିଲେ; ସେଥିରେ ହିନ୍ଦୁ ଥିଲେ, ମୁସଲମାନ, ଶିଖ, ଖ୍ରୀଷ୍ଟିୟାନ, ବୌଦ୍ଧ, ଜୈନ ଓ ପାର୍ଶୀ ଥିଲେ । କୌଣସି ଧର୍ମ ଏଭଳି ନାହିଁ, ଯେଉଁଥିରୁ ଲୋକମାନେ ଆସି ସ୍ୱାଧୀନତା ସଂଗ୍ରାମରେ ଯୋଗ ଦେଇ ନଥିଲେ କିମ୍ବା ଦେଶ ପାଇଁ ସେବା ଓ ତ୍ୟାଗ କରି ନଥିଲେ । ତାହାହେଲେ କ'ଣ ସେମାନେ ସ୍ୱପ୍ନ ଦେଖୁଥିଲେ ଯେ କେବଳ ଆମକୁ ସରକାର ମିଳିବ ? ତାଙ୍କ ଭିତରୁ ଅନେକ ଲୋକ ଥିଲେ ଯାହାଙ୍କ ପାଖରେ ସବୁ କିଛି ଥିଲା । କୌଣସି ଜିନିଷର ଅଭାବ ନଥିଲା । ସେମାନେ ସବୁ କିଛି ଉତ୍ସର୍ଗ କରିବା ପାଇଁ ପ୍ରସ୍ତୁତ ଥିଲେ କାରଣ ପରାଧୀନତା ଯୋଗୁଁ ଦେଶ ଅପମାନିତ ବୋଧ କରୁଥିଲା । ପରାଧୀନତା ହିଁ ଦେଶର ଦୁଃଖ, ଦାରିଦ୍ର୍ୟର ହେତୁ ଥିଲା । ତାର ମୂଳୋତ୍ପାଟନ କରି ଯାଇ ଆମେ ପ୍ରକୃତରେ ସ୍ୱାଧୀନ ହେବା । ତେବେ ଦେଶକୁ ସ୍ୱାଧୀନତା ମିଳିବାପରେ ଏହି କାର୍ଯ୍ୟ ଆମର ସମାପ୍ତ ହୋଇ ନଥିଲା । ପ୍ରକୃତରେ ଏହି କାମର କେବଳ ଆରମ୍ଭମାତ୍ର ହେଲା । ଆମେ ଗଣତନ୍ତ୍ର ପାଇଲୁ ସତ କିନ୍ତୁ ଯେ ପର୍ଯ୍ୟନ୍ତ ଆଞ୍ଚଳିକ ବୈଷମ୍ୟ ରହିଛି, ଲୋକମାନଙ୍କୁ ଉପଯୁକ୍ତ କାମଧନ୍ଦା ନମିଳିଛି, ସେ ପର୍ଯ୍ୟନ୍ତ ସ୍ୱାଧୀନତାର ପୂର୍ଣ୍ଣତା ଆସିନାହିଁ । ଯଦି ସମାଜରେ ଉଚ୍ଚ, ନିଚ, ଧନୀ, ଦରିଦ୍ର ଭେଦଭାବ ରହେ, ତାହାହେଲେ ବ୍ୟଗ୍ରତା ବଢ଼ିଯିବ, ଝଗଡା ବଢ଼ିବ, ଶାନ୍ତି ଓ ଶୃଙ୍ଖଳା ରହି ପାରିବ ନାହିଁ । ଯେଭଳି ସମାଜରେ ସ୍ୱାଧୀନତା ଦୃଢ଼ୀଭୂତ ହୋଇ ପାରିବ, ଦେଶର ପ୍ରଗତି ଓ ବିକାଶରେ ଅଗ୍ରଗତି ହୋଇ ପାରିବ, ସେଥିପାଇଁ ଆମକୁ ଆତ୍ମନିର୍ଭରଶୀଳ ହେବାକୁ ପଡ଼ିବ ।"

ସମ୍ପ୍ରତି ପ୍ରଧାନମନ୍ତ୍ରୀ ଶ୍ରୀଯୁକ୍ତ ରାଜୀବ ଗାନ୍ଧୀ କହିଛନ୍ତି, "ସ୍ୱାଧୀନତାକୁ ବଜାୟ ରଖିବାକୁ ହେଲେ ଦେଶର ଦୁଇଟି ଶତ୍ରୁ ସାମ୍ପ୍ରଦାୟିକତାବାଦ ଓ ଦାରିଦ୍ର୍ୟ ବିରୁଦ୍ଧରେ କଠୋର ସଂଗ୍ରାମ ଚଳାଇବାକୁ ହେବ ।"

ଗବେଷଣା ଅଧିକାରୀ
ସୂଚନା ଓ ଲୋକ ସମ୍ପର୍କ ବିଭାଗ



ଲୁଚିଟହାଉିଂ ରେ ବୁଦ୍ଧ ଜୟନ୍ତୀ ପାଳନ ଅବସ୍ୱରରେ ବାର୍ଦ୍ଧକ୍ୟ ଭତ୍ତା ବଣ୍ଟନ

# ଆଗାମୀ ଶତାବ୍ଦୀରେ ଟେଲିଯୋଗାଯୋଗର ସ୍ୱରୂପ

ଇଞ୍ଜିନିୟର ଜ୍ୟୋତି ପ୍ରକାଶ ସାହୁ

ସୁଦୂର ଇଂଲଣ୍ଡ ଦେଶରୁ ବେନ୍‌ସନ୍ ଓ ହେଜେସ୍ କପ୍ ପାଇଁ ହେଉଥିବା ବିଶ୍ୱଶୃଙ୍ଖଳା କ୍ରିକେଟ ଖେଳର ଧାରା ବିବରଣୀ ଭାରତୀୟ ଟେଲିଭିଜନର ରଙ୍ଗୀନ୍ ପର୍ଦ୍ଦାରେ ଉଦ୍‌ଭାସିତ ହୋଇ କୋଟି କୋଟି ଜନମାନସକୁ ଉତ୍‌ଫୁଲ୍ଲିତ କରିଥିଲା । କିଏ ଜାଣିଥିଲା ବିଂଶ ଶତାବ୍ଦୀର ମାନବ ପାଇଁ ହଠାତ୍ ଏହା ଏକ ଶ୍ରେଷ୍ଠ ବରଦାନ ହୋଇ ଉଠିବ । ରେଡ଼ିଓ ତରଙ୍ଗ ସିନା ବିଶ୍ୱର କୋଣେ କୋଣେ ପ୍ରସାରିତ ହୋଇପାରୁଥିଲା । ସେଟେଲାଇଟ୍ ବା ମାଇକ୍ରୋୱେଭ୍ ଦ୍ୱାରା କଥା ସାଙ୍ଗକୁ ଛବି ମଧ୍ୟ ବିଶ୍ୱର ଯେ କୌଣସି ପ୍ରାନ୍ତରୁ ଅପର ପ୍ରାନ୍ତକୁ ପଠାଇବାର ସଫଳତା ଚତୁର ମଣିଷର ବିଂଶ ଶତାବ୍ଦୀ ଶେଷ ଭାଗରେ ବିଶ୍ୱବାସୀଙ୍କ ପାଇଁ ଏକ ମହାନ୍ ଉପହାର । ଏଇ ସଫଳତାର ମୂଳରେ ଯେ ଟେଲିଯୋଗାଯୋଗର ପ୍ରଚ୍ଛନ୍ନ ଭୂମିକା ବିଦ୍ୟମାନ, ଏହା କେହି ଅସ୍ୱୀକାର କରି ପାରିବେ ନାହିଁ ।

ବିଶ୍ୱ ସୃଷ୍ଟିର ପ୍ରାରମ୍ଭରେ ଆଦିମ ମଣିଷ ପାଇଁ ରେଡ଼ିଓ ତରଙ୍ଗ କିମ୍ବା ଟେଲିଯୋଗାଯୋଗ ଦୁଃସ୍ୱପ୍ନ ଥିଲା । ଉଲଗ୍ନ ଅର୍ଦ୍ଧଲଗ୍ନ ମଣିଷ ବଣର ଫଳମୂଳ କଞ୍ଚା ମାଂସ ଭକ୍ଷଣ କରି ପଶୁବତ୍ ଜୀବନ ଅତିବାହିତ କରୁଥିଲା । ତା' ଜୀବନରେ ଯୋଗାଯୋଗର ବା ଆବଶ୍ୟକତା କ'ଣ ଥିଲା ? ଅସୁର ଭଳି ମେଣ୍ଟାଏ ଖାଇବ, ପଶୁ ସହେଁ ଲଢ଼ିବ, ଜଙ୍ଗଲରେ ବୁଲିବ– ଏଇ ଥିଲା ତା'ର ଜୀବନ ଚକ୍ର । କ୍ରମଶଃ ସମୟ ବଦଳିଲା । ଏକା ମାନବ ଯୌଥ ଜୀବନ ଯାପନ କରିବାକୁ ଶିଖିଲା । ଏଇଠାରୁ ଆରମ୍ଭ ହେଲା ତା' ଜୀବନରେ ଯୋଗାଯୋଗର ଆବଶ୍ୟକତା । ଜଣେ ମଣିଷ ଆଉ ଜଣକ ସାଙ୍ଗରେ ସଂପର୍କ ରଖିଲେ ସିନା ଯୋଗାଯୋଗର ଆବଶ୍ୟକତା ପଡ଼ିବ । ଜଙ୍ଗଲରେ ଏକା ଏକା ଘୁରି ବୁଲିଲେ କାହା ସହିତ ସଂପର୍କ ରଖିବା ବା କାହା ସହିତ ଯୋଗାଯୋଗ କରିବାର ଆବଶ୍ୟକତା କ'ଣ ? କିମ୍ବଦନ୍ତୀ କହେ, ଆଦିପୁରୁଷ ଆଦିନାରୀ ସହ ଜଙ୍ଗଲରେ ବୁଲୁ ବୁଲୁ ଯଦି ଆଦିନାରୀ ବୃକ୍ଷ ଗହଳରେ ହଜିଗଲେ ଆଦିପୁରୁଷ ଗଛପତ୍ରକୁ ଖସ୍ ଖସ୍ କରି ବା ପକ୍ଷୀବତ୍ ସାଙ୍କେତିକ ଶବ୍ଦ ପ୍ରକଟ କରି ତାର ନାରୀ ସହ ଯୋଗାଯୋଗ ରକ୍ଷା କରୁଥିଲା । କ୍ରମଶଃ ପୁରୁଷ ଓ ନାରୀ ସଂଖ୍ୟା ବୃଦ୍ଧି ପାଇଲେ । ଦଳ ଦଳ ହୋଇ ମଣିଷ ବାସ କରିବାକୁ ଶିଖିଲା । ଅବଶ୍ୟ ମଣିଷର କୌଣସି ସ୍ୱତନ୍ତ୍ର ଭାଷା ବା ବାକ୍‌ଶକ୍ତି ନ ଥିଲା । କେବେଳ ଠାର ବା ସାଙ୍କେତିକ ଶବ୍ଦ ବଳରେ ଜଣେ ଅନ୍ୟ ସହ ବା ଦଳେ ଅନ୍ୟ ଦଳ ସହ ଯୋଗ ସୂତ୍ର ରକ୍ଷା କରୁଥିଲେ । ଧୀରେ ଧୀରେ ଦଳ ସଂଖ୍ୟା ବଢ଼ିଲା । ଗୋଟିଏ ଦଳ ଅନ୍ୟ ଦଳ ସହ ବୈବାହିକ ବନ୍ଧନ ସ୍ଥାପନ କଲା । ଅବୋଧ୍ୟ ସାଙ୍କେତିକ ଶବ୍ଦକୁ ମନର ଭାଷା ରୂପେ ପ୍ରକଟିତ କରି କଥା କହିବାକୁ ଶିଖିଲା । ନିଆଁର ଆବିର୍ଭାବ ହେଲା ପଥର ଦେହରୁ । ମଣିଷ ମାଂସ ଓ କଞ୍ଚା ଫଳମୂଳକୁ ପୋଡ଼ି ଖାଇବା ଶିଖିଲା । ଏଇ ଭଳି କ୍ରମ ବର୍ଦ୍ଧିଷ୍ଣୁ ବିବର୍ତ୍ତନବାଦ ଫଳରେ ଆଦିମ ମାନବର ଜୀବନଯାପନ ପ୍ରଣାଳୀରେ ଉନ୍ନତି ହେଲା । ଗୋଟିଏ ଦଳ ଆଉ ଗୋଟିଏ ଦଳ ସହ ସଂପର୍କ ରଖିବାକୁ ଚେଷ୍ଟା କଲା । ଗୋଟିଏ ଦଳ ସହ ଆଉ ଗୋଟିଏ ଦଳ ସଂଘର୍ଷ ମଧ୍ୟ ହେଲା । ଗୋଟିଏ ଦଳ ଆଉ ଗୋଟିଏ ଦଳକୁ ବିପଦ ଆପଦରେ ଖବର ଦେବାନେବାକୁ ଶିଖିଲା । କିମ୍ବା ଗୋଟିଏ ଦଳର ଜଣେ ବ୍ୟକ୍ତି ନିଜେ ଯାଇ ଅନ୍ୟ ଦଳକୁ ବାର୍ତ୍ତା ପ୍ରେରଣ କରି ଆସିଲା । ଏହାଦ୍ୱାରା ସେ ରାସ୍ତାରେ ବିପଦର ସମ୍ମୁଖୀନ ହେଲା । ତେଣୁ ମନୁଷ୍ୟ କ୍ରମଶଃ ଢୋଲ ବଜେଇ ବା ସମୂହ ପାଟିତୁଣ୍ଡ କରି ଅନ୍ୟ ଦଳକୁ ବାର୍ତ୍ତା ପ୍ରେରଣ କଲା ଧୀରେ ଧୀରେ ଭାଷା, ଶବ୍ଦଲିପି, ବାକ୍‌ଶୃଙ୍ଖଳା, ସମାଜ, ସଂସ୍କୃତି ଆଦି ସୃଷ୍ଟି ହେଲା । ଆଦି ଯୁଗ ଯାଇ ମଧ୍ୟଯୁଗ ହେଲା । ବାଜା ବଜେଇ, ନିଆଁ ଜାଳି, ଧୂଆଁଶ ନଳରେ ବା ପାରାଦ୍ୱାରା ଅଥବା ଘୋଡ଼ା ସବାରଦ୍ୱାରା ଯୋଗାଯୋଗ କରାଗଲା । ରାଜାମହାରାଜାମାନେ ଚିଟାଉ ଲେଖି ଦୂତ ହାତରେ ସଂଦେଶ ପ୍ରେରଣ କଲେ ।

ନୂତନ ଯୁଗ ଆରମ୍ଭରେ ବିଜ୍ଞାନ ମାନବ ସମାଜକୁ ପ୍ରଭୂତ ଅନୁପ୍ରାଣିତ କଲା ଓ ଯୋଗାଯୋଗ ବ୍ୟବସ୍ଥାକୁ ସୁଦୃଢ଼ ପ୍ରସାର କରିବାରେ ମୁଖ୍ୟ ଭୂମିକା ନେଲା । ଛୋଟ ପିଲାଙ୍କ ଦିଆସିଲି ଖେଳରୁ ହିଁ ନୂତନ ଯୁଗର ଯୋଗାଯୋଗ ନୂତନ ମୋଡ଼ ନେଲା । ଦୁଇଟି ପିଲା ଦୁଇଟି ଖାଲି ଦୁଇଟି ଦିଆସିଲି ଖୋଳ ସୂତା ଦ୍ୱାରା ବାନ୍ଧି କଥା କହିବାର ଦେଖିବାରୁ ତାର ଯୋଗାଯୋଗର ଚିନ୍ତାଧାରା ମଣିଷ ମନକୁ ଛୁଇଁଲା । ସାମୁଏଲ୍ ମୋର୍ସ ଟେଲିଗ୍ରାଫ୍ କୋଡ୍, ଗ୍ରାହାମବେଲ୍ ଟେଲିଫୋନ୍ ଓ ମାର୍କୋନି ବେତାର ଉଦ୍ଭାବନ କଲେ । ଫଳତଃ ସର୍ବତ୍ର ଡାକଘରମାନ ଖୋଲିଗଲା । ସମ୍ବାଦ ପଠାଇବାର ସୁବିଧା ପୂର୍ବାପେକ୍ଷା ତ୍ୱରାନ୍ୱିତ ହେଲା । ଜ୍ଞାନପିପାସୁ ମଣିଷ ମନ ଏତିକିରେ ସନ୍ତୁଷ୍ଟ ହେଲା ନାହିଁ । କ୍ରମଶଃ ଆବିଷ୍କୃତ ହେଲା ରେଡ଼ିଓ, ରାଡାର, ମାଇକ୍ରୋଫୋନ୍, ଟେଲିପ୍ରିଣ୍ଟର ଓ ଟେଲିଭିଜନ । ତଥାପି

ଅନୁଭବିବୁ ମଣିଷର ମନ ସୀମାତ ରହିବାକୁ ନାରାଜ । ଟେଲିଯୋଗାଯୋଗ କହିଲେ ସାଧାରଣ ମନୁଷ୍ୟ ବୁଝେ ତାରବିଭାଗର ତାର ଯୋଗାଯୋଗକୁ । ଏପରି ବୁଝିବା ଭୁଲ୍ । ଗୋଟିଏ ସ୍ଥାନରୁ ଟେଲିଗ୍ରାମ୍ ବା ଟେଲିଫୋନ୍ କରିପାରେ ସମ୍ବାଦ ପ୍ରେରଣ ସୁବିଧାଜନକ ହେଲେ ହେଁ କିଛି ଅସୁବିଧା ମଧ୍ୟ ପରିଲକ୍ଷିତ ହେଲା । ଝଡତୋଫାନରେ ତାର ଛିଣ୍ଡିଗଲା ବା ଖୁଣ୍ଟି ଭାଙ୍ଗିଗଲା । ତେଣୁ ମନୁଷ୍ୟ ଆବିଷ୍କାର କଲା ମାଇକ୍ରୋୱେଭ୍ । ମାଇକ୍ରୋୱେଭ୍ ବଳରେ ବିଶ୍ୱର କୌଣସି ପ୍ରାନ୍ତରୁ ଅନ୍ୟ ଯେ କୌଣସି ପ୍ରାନ୍ତକୁ ଯୋଗାଯୋଗ ଖୁବ୍ ସହଜସାଧ୍ୟ ହେଲା । ରେଡ଼ିଓ ଦ୍ୱାରା ସମଗ୍ର ବିଶ୍ୱର ଖବର ପହଞ୍ଚୁ ପାରୁଛି । ଅଗମ୍ୟ ସ୍ଥାନର ମଣିଷ ନାଟଗୀତର ଆସର ରେଡ଼ିଓରୁ ଆହରଣ କରିପାରୁଛି । ବେତାର ଆବିଷ୍କୃତ ହେବା ପରେ ଝଡ଼ ବନ୍ୟା ମରୁଡ଼ି ବେଳେ ମଣିଷ ଆଗୁଆ ଖବର ପାଇପାରିଲା । ସଂପ୍ରତି ପୋଲିସ ବିଭାଗ, ପାଣିପାଗ ବିଭାଗ ଓ ଯୁଦ୍ଧ ବିଭାଗ ବେତାର ଯୋଗାଯୋଗରୁ ବିପୁଳ ଫାଇଦା ଉଠାଇ ପାରୁଛନ୍ତି । ରାଡ଼ାର ଦ୍ୱାରା ପାଣିପାଗ ଜାଣିବା ସଙ୍ଗେ ସଙ୍ଗେ ଶତ୍ରୁ ପକ୍ଷର ଯୁଦ୍ଧ ଜାହାଜକୁ ଠାବ କରିଦେଉଛି । ବିଂଶ ଶତାବ୍ଦୀର ମାନବ ଏତିକିରେ ବସି ରହିଲା ନାହିଁ । ଶେଷକୁ ସେ ଆକାଶ ମାର୍ଗକୁ ସେଟ୍‌ଲାଇଟ୍ ପଠାଇ ବସିଲା । ଏହା ବଳରେ ସେ ଟେଲିଭିଜନ ଦେଖିବାର ସୁଯୋଗ ପାଇଲା, ପାଣିପାଗର ଖବର ପାଇଲା, ଦେଶ ବିଦେଶ ସହ ଟେଲି ଯୋଗାଯୋଗ କରିପାରିଲା, ଦେଶର ପ୍ରକୃତ ଭୌଗୋଳିକ ମାନଚିତ୍ର ଉଠାଇ ପାରିଲା, ଅନ୍ୟ ଦେଶର ଗୁପ୍ତ ସାମରିକ ତଥ୍ୟ ଆହରଣ କରି ପାରିଲା । ଏ ମାନବ ଯୋଗାଯୋଗକୁ ଛାଡ଼ି ମୁହୂର୍ତ୍ତେ ମଧ୍ୟ ଚଳି ପାରିବ ନାହିଁ । ସଂପ୍ରତି ଟେଲିଫୋନ୍ ସେବାକୁ ଉନ୍ନତ କରାଯାଇ ପାରିଲାଣି । ପୁରାତନ ଏକ୍ସଚେଞ୍ଜ ବଦଳରେ ନୂତନ କ୍ରସବାର୍ ଏକ୍ସଚେଞ୍ଜ ଓ ଇଲେକ୍‌ଟ୍ରୋନିକ୍ ଏକ୍ସଚେଞ୍ଜମାନ ତିଆରି ହେଲାଣି । ଭ୍ରାମ୍ୟମାଣ ଗାଡ଼ିରେ ମଧ୍ୟ ରେଡ଼ିଓ ଟେଲିଫୋନ୍ ଖଞ୍ଜାଯାଇ ପାରିଲାଣି । ବହୁତାରକା ବିଶିଷ୍ଟ ହୋଟେଲ ଓ କାର୍ଯ୍ୟାଳୟଗୁଡ଼ିକରେ ଇଣ୍ଟରକମ୍ ଲଗା ଗଲାଣି । ଏହାଛଡ଼ା ଫାଇବର୍ ଯୋଗାଯୋଗ, କେବଲ୍ ଯୋଗାଯୋଗ, ଫାକ୍ସରେ ଯୋଗାଯୋଗ ଓ କମ୍ପ୍ୟୁଟର ଯୋଗାଯୋଗ ଆଦି ଅନେକ ଟେଲି ଯୋଗାଯୋଗ ପଦ୍ଧତି ଅଧୁନା ପ୍ରଚଳିତ । ବର୍ତ୍ତମାନ ଟେଲି ଯୋଗାଯୋଗ ମଣିଷର ମେରୁଦଣ୍ଡ ସଦୃଶ ଦଣ୍ଡାୟମାନ ।

ଆଗାମୀ ଶତାବ୍ଦୀରେ ଟେଲି ଯୋଗାଯୋଗର ସ୍ୱରୂପ କ'ଣ ହେବ ? ଏ ପ୍ରଶ୍ନ ମନକୁ ଆସିଲେ ମନେହୁଏ ଆଗାମୀ ଶତାବ୍ଦୀ ହିଁ ଟେଲି ଯୋଗାଯୋଗର ଶତାବ୍ଦୀ ରୂପେ ପରିଗଣିତ ହେବ । ଏ ମଣିଷ ମନ ସର୍ବଦା ଅତୃପ୍ତ । ଆଜି ଯାହା ନୂଆ କାଲି ତାହା ପୁରୁଣା । ସେ ଦିନକୁ ଦିନ ନୂଆ ନୂଆ ତଥ୍ୟ ଉଦ୍ଭାବନ କରିବାରେ ବ୍ୟସ୍ତ । କିଏ ଜାଣିଥିଲା ପିଲାଙ୍କର ସୂତାବନ୍ଧା ଡିଆସିଲି ଖେଳ ଦିନେ ସମଗ୍ର ବିଶ୍ୱର ଟେଲି ଯୋଗାଯୋଗକୁ ଜାଲ ପରି ବିଛାଇ ଦେବ ! ଯୋଗାଯୋଗରେ ବ୍ୟବହୃତ ଭିଲେ, ଭାଲ୍‌ଭ, ଟ୍ରାନ୍‌ଜିଷ୍ଟରରୁ ମଣିଷ ଇଣ୍ଟିଗ୍ରେଟେଡ୍ ସର୍କିଟ୍ ବା ମାଇକ୍ରୋପ୍ରସେସରରେ ପହଞ୍ଚି ଗଲାଣି । ଆଗାମୀ ଶତାବ୍ଦୀରେ ବି ମାଇକ୍ରୋପ୍ରସେସର୍ ରୂପ ବଦଳେଇ ସାରିଥିବ । ମଣିଷ ଆଉ ହାତଗୋଡ଼ ହଲାଇ ଖଟିବା ଅନାବଶ୍ୟକ ହୋଇ ପଡ଼ିବ । ମଣିଷ ବସିବା ସ୍ଥାନରୁ କେବଳ ସାମାନ୍ୟ ନିର୍ଦ୍ଦେଶ ଦେଇ ଯୋଗାଯୋଗ ମାଧ୍ୟମ ତାର ସବୁ କାମ ଛାଏଁ ଛାଏଁ କରିଦେବ । ଜଣେ ମନୁଷ୍ୟ ଆମେରିକାରେ ବସି ମଧ୍ୟ ତାର ଭାରତରେ ଥିବା ଅଫିସକୁ ସୁରୁଖୁରୁରେ ଚଳାଇ ପାରିବ କେବଳ ଟେଲି ଯୋଗାଯୋଗ ସହାୟତାରେ ! ଆଗାମୀ ଶତାବ୍ଦୀରେ କମ୍ପ୍ୟୁଟର ଓ ଯନ୍ତ୍ରମାନବ ବା (ରୋବୋଟ୍) ର ଭୂମିକା ଅତ୍ୟନ୍ତ ମହତ୍ତ୍ୱପୂର୍ଣ୍ଣ ହୋଇ ଉଠିବ । ଅତି ଉନ୍ନତ ଧରଣର କମ୍ପ୍ୟୁଟର ଯୋଗାଯୋଗ ସାଧିତ ହେବ । ଯନ୍ତ୍ର ମାନବର ଶାରୀରିକ ଉନ୍ନତି ଘଟିବ । ହୁଏତ ଯନ୍ତ୍ରମାନବ ମଣିଷ ମଣିଷ ଭଳି ସୁସ୍ଥ ଚିନ୍ତାଧାରାରେ ପରିପୂର୍ଣ୍ଣ ହେବ କିମ୍ବା ମଣିଷ ଭଳି ହୁବହୁ ସଂପୂର୍ଣ୍ଣ ହେବ । ଏ ଆଳସ୍ୟ ପରାୟଣ ମନୁଷ୍ୟ ରୋବୋଟ୍ ଦ୍ୱାରା ସବୁ କାମ କରାଇ ନେଉଥିବ । ସେତେବେଳକୁ ଆଜିର ଡାଏଲିଂ ଟେଲିଫୋନ୍ ମୃତ୍ୟୁ ଲଭିଥିବ କିମ୍ବା ଆହୁରି ଉନ୍ନତ ହୋଇ ତାର ବେଶ ପରିପାଟୀ ବଦଳାଇ ସାରିଥିବ । ହୁଏତ ଆକାଶମାର୍ଗକୁ ଅଧିକ ସେଟ୍‌ଲାଇଟ୍ ଏକ୍ସଚେଞ୍ଜ ଛାଡ଼ିବା ଦ୍ୱାରା ପୃଥିବୀସ୍ଥିତ ଟେଲିଫୋନ୍ ଏକ୍ସଚେଞ୍ଜଗୁଡ଼ିକ ଅଦରକାରୀ ହୋଇଉଠିବ । ସତରେ ମଣିଷ ଯଦି ମଙ୍ଗଳ ଗ୍ରହ ବା ଗ୍ରହାନ୍ତରରେ ବା ଆକାଶ ମାର୍ଗରେ ଘରକରି ବସିଯିବ, ତେବେ ପୃଥିବୀ ପୃଷ୍ଠ ସହ ଅତ୍ୟାଧୁନିକ ବେତାର ଯୋଗାଯୋଗ ପାଇଁ ମଣିଷ ମନ ନିଶ୍ଚୟ ବ୍ୟାକୁଳ ହୋଇ ଉଠିବ । ଆଜିର ବିକଶିତ ଦେଶମାନଙ୍କର ତାରକା ଯୁଦ୍ଧ ପ୍ରସ୍ତୁତିରୁ ମନେ ହୁଏ ଯେ ଆଗାମୀ ଶତାବ୍ଦୀ ଟେଲି ଯୋଗାଯୋଗକୁ ପାଥେୟ କରି ହିଁ ବଞ୍ଚି ରହିବ । ସବୁ କ୍ଷେତ୍ରରେ ଟେଲି ଯୋଗାଯୋଗକୁ ପ୍ରଧାନ ମାଧ୍ୟମ ରୂପେ ନେଇ ଆଗାମୀ ମଣିଷ ସମାଜ ଆମର ବର୍ତ୍ତମାନ ସମାଜକୁ ଅସଭ୍ୟ ବା ସ୍ୱଳ୍ପସଭ୍ୟ ବୋଲି ଆଖ୍ୟାୟିତ କରି ବସିବ !! ଆଧୁନିକ ଯୁଦ୍ଧାସ୍ତ୍ର ବା ପରମାଣୁ ଅସ୍ତ୍ରଗୁଡ଼ିକ ସେତେବେଳେ ଟେଲି ଯୋଗାଯୋଗଦ୍ୱାରା ଯେକୌଣସି ନିର୍ଦ୍ଦିଷ୍ଟ ସ୍ଥାନ ବା ଦେଶକୁ ନିକ୍ଷେପ କରିହେବ ବା ପୃଥିବୀର ମୁଖ୍ୟ ଶକ୍ତି ସ୍ୱାର୍ଥରେ ଅଣ୍ଟା ଆଣୁଥିବା କୌଣସି ବ୍ୟକ୍ତିବିଶେଷଙ୍କୁ ନିପାତ କରିବାକୁ ଆଗଭର ହୋଇ ଉଠିବେ ।

ଏବେ ଶିଳ୍ପରେ ଓ ବିଦ୍ୟୁତ୍ ଉତ୍ପାଦନରେ କିଛିଟା ପରିମାଣରେ ଯୋଗାଯୋଗକୁ ବିନିଯୋଗ କରାଯାଉଛି । କମ୍ପ୍ୟୁଟର୍ ବା ରୋବୋଟ୍‌ଦ୍ୱାରା ସ୍ଥାନେ ସ୍ଥାନେ ଯନ୍ତ୍ର ଚଳାଯାଉଛି । ସମୟ ଆସିବ, କଳକାରଖାନାର ପ୍ରତିଟି ଯନ୍ତ୍ରାଂଶ ଯୋଗାଯୋଗ ଦ୍ୱାରା ପରିଚାଳିତ ଓ ନିୟନ୍ତ୍ରିତ ହେବ । କୌଣସି ଏକ ବୃହଦ୍‌କାୟ କାରଖାନାରେ ଜଣେ ମଧ୍ୟ ମଣିଷ ନରହି ଗୋଟିଏ ରୋବୋଟ୍ ସୁଇଚ୍ ଟିପିଲେ ସମଗ୍ର କାରଖାନା ଆପେ ଆପେ କାର୍ଯ୍ୟକ୍ଷମ ହେବ ଓ ଆପେ ଆପେ ଉତ୍ପାଦନ ସାମଗ୍ରୀ ଅସି ମାଲ ପରିବହନ ପାର୍କ ପ୍ରସ୍ତୁତ ହୋଇଯିବ । କାରଖାନାର ପରିଚାଳକ ହେବ ଗୋଟିଏ ରୋବୋଟ୍ ଓ ପରିଚାଳନା ନିର୍ଦ୍ଦେଶକ ଘରେ ବସି ରୋବୋଟ୍‌ଠାରୁ ସବୁ ଖବର ରଖି ପାରୁଥିବେ ବା ଦେଖି ପାରୁଥିବେ ଏଇ ଟେଲି ଯୋଗାଯୋଗ ବଳରେ ।

ଏବେ କେବଳ ମଣିଷ ଟେଲିଫୋନରେ କଥା ଶୁଣି ପାରୁଛି । ଆଗାମୀ ଶତାବ୍ଦୀରେ ମଣିଷ ଦୂରଦୂରାନ୍ତ ମଣିଷ ସହ କଥା ହେବା ସଙ୍ଗେ ସଙ୍ଗେ ପରସ୍ପରକୁ ଦେଖି ପାରୁଥିବ । ବନ୍ଧୁମାନେ ଦୂରରେ ଥାଇ ମଧ୍ୟ ଏକାଠି ବସି ଗପସପ ହେଲା ଭଳି ଲାଗିବ । କୃଷକ କୃଷି କ୍ଷେତ୍ରକୁ ଚାଷ ଯନ୍ତ୍ର ପଠାଇ ଘରୁ ନିର୍ଦ୍ଦେଶ ଦେଲେ ଆପେ ଆପେ ଚାଷ ହେବ, ଆପେ ଆପେ ମଞ୍ଜି ବୁଣି ହେବ । ସବୁ କିଛି ସ୍ୱୟଂଚାଳିତ ହୋଇଯିବ ।

ଆଜିକାଲି ବିଦ୍ୟୁତ୍ ଶକ୍ତିର ଅଭାବ ପରିଲକ୍ଷିତ ହେଉଛି । ବିଦ୍ୟୁତ୍ ତାର ଚୋରି ଯାଉଛି । ଟ୍ରାନ୍‌ସଫର୍ମର ପୋଡ଼ି ଯାଉଛି ବା ଘର ମିଟର ଖରାପ ହୋଇଯାଉଛି । କିନ୍ତୁ ଘରେ ଘରେ ମିନି କମ୍ପ୍ୟୁଟର ରଖିଦେଲେ ମିଟର ବିଲ୍ ସମସ୍ୟା ସମାଧାନ ହୋଇଯିବ । ଆଗାମୀ ଶତାବ୍ଦୀ ଅତ୍ୟଧିକ ବିଦ୍ୟୁତ୍ ଶକ୍ତିକୁ ବେତାର୍ ବା ମାଇକ୍ରୋୱେଭ୍ ମାଧ୍ୟମରେ ଦୂରଦୂରାନ୍ତକୁ ପଠାଇବାରେ ହୁଏତ ସଫଳକାମୀ ହେବ । ବିଦ୍ୟୁତ୍ ଶକ୍ତି ଉତ୍ପାଦନ କ୍ଷେତ୍ରରେ ଟେଲିଯୋଗାଯୋଗ ଦ୍ୱାରା ଟର୍‌ବାଇନ୍‌କୁ ନିୟନ୍ତ୍ରଣ କରାଯାଇ ପାରିବ । କୌଣସି ଏକ ରାଜ୍ୟର କେନ୍ଦ୍ରୀୟ ଲୋଡ୍ ଡେସ୍‌ପାଚ୍ ସେଣ୍ଟରରୁ ରାଜ୍ୟର ଯେ କୌଣସି ସ୍ଥାନରେ ଥିବା ବିଦ୍ୟୁତ୍ ଉତ୍ପାଦନ କେନ୍ଦ୍ରଗୁଡ଼ିକୁ ଟେଲିସିଗ୍‌ନାଲ୍ ଦ୍ୱାରା ପରିଚାଳନା ଓ ବିଦ୍ୟୁତ୍ ଉତ୍ପାଦନ କରି ହେବ । ଏଇ ବିଦ୍ୟୁତ୍ ସୁଷମ ବଣ୍ଟନରେ ପ୍ରଭୂତ ସାହାଯ୍ୟ କରିବ ଏଇ ଟେଲିଯୋଗାଯୋଗ ବିଜ୍ଞାନର ସୂକ୍ଷ୍ମ ବୈଷୟିକ ପ୍ରୟୋଗ ।

ଆଗାମୀ ଶତାବ୍ଦୀରେ ଟେଲିଭିଜନଗୁଡ଼ିକ ହିଁ ଦେଶର ଶିକ୍ଷାକ୍ଷେତ୍ରକୁ ନିୟନ୍ତ୍ରଣ କରୁଥିବେ । ପିଲାଏ ସ୍କୁଲକୁ ନଯାଇ ଘରେ ବସି ଟେଲିଭିଜନରୁ ଉଚ୍ଚ ଶିକ୍ଷା ପାଇ ପାରୁଥିବେ । କୌଣସି ରୋଗୀକୁ ଡାକ୍ତରଖାନାକୁ ଯିବାକୁ

ଘଟି ନ ପାରେ କମ୍ପ୍ୟୁଟର ଯୋଗାଯୋଗ ଦ୍ବାରା ଡାକ୍ତର ପ୍ରେସ୍କ୍ରିପ୍ସନ୍ ଲେଖିବେ, ପରାମର୍ଶ ଦେବେ ବା ଟେଲିସିଗ୍ନାଲ୍ଦ୍ବାରା ଅପରେସନ୍ କରାଇବେ । କୌଣସି ଯନ୍ତ୍ରମାନବ ଦେହରେ କୃତ୍ରିମ ହୃତ୍ପିଣ୍ଡ ଲଗାଇ ମୃତ ତାକୁ ଆଂଶିକ ବା ପୂର୍ଣ୍ଣ ଜୀବନ୍ତ କରାଯାଇ ପାରେ ।

ଏ ଶତାବ୍ଦୀର ମାଇକ୍ରୋୱେଭ୍ ଯୋଗାଯୋଗ, ଫାଇବର ଯୋଗାଯୋଗ ଓ ମାଇକ୍ରୋପ୍ରସେସର କମ୍ପ୍ୟୁଟର ଯୋଗାଯୋଗ ଆଗାମୀ ଶତାବ୍ଦୀରେ ଶୀର୍ଷ ସ୍ଥାନ ହାସଲ କରି ନୂତନ ଉନ୍ନତଶୀଳ ଯୋଗାଯୋଗ ଜାଲ ବିଛାଇ ଦେବ । ଆମ ବଂଶଧରଙ୍କୁ ଅଜଣା ଥିବା ଅନେକ ନୂତନ ଯୋଗାଯୋଗ ତଥ୍ୟ ଓ ପଦ୍ଧତି ଆଗାମୀ ବଂଶଧରଗଣ ହାସଲ କରି ଏକବିଂଶ ଶତାବ୍ଦୀକୁ ଅତିଶୟ ପ୍ରଗତିଶୀଳ କରାଇବେ ।

ସହକାରୀ ଯନ୍ତ୍ରୀ
ବୁର୍ଲା ପାୱାର ହାଉସ, ବୁର୍ଲା-୭୬୮୦୧୭
ଜିଲ୍ଲା : ସମ୍ବଲପୁର



ନୂଆଦିଲ୍ଲୀରେ ବଙ୍ଗଳା ଦେଶ ରାଷ୍ଟ୍ରପତି ଓ ଭାରତର ପ୍ରଧାନମନ୍ତ୍ରୀ....



# ସଫଳ କାହାଣୀ





## ସ୍ୱପ୍ନ ହେଲେ ବି ସତ୍ୟ

ଶ୍ରୀମତୀ ଜ୍ୟୋତ୍ସ୍ନା ଡ଼ାଲି

ମଣିଷ ଜୀବନରେ ସ୍ୱପ୍ନ ରଚନା କରେ — ଜୀବନକୁ ସରସ ସୁନ୍ଦର କରି ଗଢି ତୋଳିବା ପାଇଁ । ଅଧିକାଂଶଙ୍କର ସେ ସ୍ୱପ୍ନ ସ୍ୱପ୍ନରେ ହିଁ ମିଳାଇ ଯାଏ; କେବଳ ତା'ର ଯଥାଯଥ ଉଦ୍ୟମ ଓ ସୁଯୋଗ ଅଭାବରୁ । ତେଣୁ ସେ ଭାଙ୍ଗିପଡେ । ସେଥିପାଇଁ ହତୋତ୍ସାହ ହେବା ଠିକ୍ ନୁହେଁ ।

ମଣିଷ ଜୀବନରେ ବିଭିନ୍ନ ସୁଯୋଗ ସୁବିଧାର ସଦ୍‌ବ୍ୟବହାର କଲେ ଅନେକ ସମୟରେ ତା'ର ସୁନେଲି ସ୍ୱପ୍ନ ବାସ୍ତବରେ ପରିଣତ ହୁଏ । ଏହିଭଳି ଏକ ସୁଯୋଗର ସଦ୍‌ବ୍ୟବହାର କରିଥିଲେ ଶ୍ରୀମତୀ ନିଶାମଣି ଦେବୀ । ଯଦିଓ ସ୍ୱାସ୍ଥ୍ୟ ବିଭାଗର ସେ ଜଣେ ଛୋଟିଆ କର୍ମଚାରୀ । ତାଙ୍କର ଗୋଟିଏ ପୁଅ, ଗୋଟିଏ ଝିଅ । ସେଇମାନଙ୍କୁ ସମାଜରେ ମଣିଷ କରି ତୋଳିବାର ସ୍ୱପ୍ନ ଦେଖି ସେ ବନ୍ଧ୍ୟାକରଣ ଅସ୍ତ୍ରୋପଚାର କରାଇ, ସବୁଜ ପତ୍ରିକାର ଅଧିକାରିଣୀ ହେଲେ । ସେଇ ସବୁଜ ପତ୍ରିକାର ସୁବିଧା ସୁଯୋଗରେ ତାଙ୍କ ପୁତ୍ର ଆଜି ଇଂଜିନିୟର ହେବାକୁ ଯୋଗ୍ୟ ବିବେଚିତ ।

ଅଜି ନିଶାମଣି ଦେବୀଙ୍କ ସ୍ୱପ୍ନ ସାର୍ଥକ ଓ ବାସ୍ତବରେ ପରିଣତ ହେବାକୁ ଯାଉଛି । ଏହା କମ୍ ଗୌରବର କଥା ନୁହେଁ ।

ଗଣଶିକ୍ଷା ଓ ଗଣସୂଚନା ଅଧିକାରୀ, ପୁରୀ

## ଋଣ ପରିଶୋଧ ନିଶ୍ଚୟ କରିବି

ଶ୍ରୀ ଅକ୍ରୁର ଚରଣ ପ୍ରଧାନ

କେନ୍ଦୁଝର ଜିଲ୍ଲା ଘଟଗାଁ ବ୍ଲକ୍ ଅନ୍ତର୍ଗତ ପୁରୁଣାମୁଣ୍ଡା ପଞ୍ଚାୟତର ପଟାବାରୀ ଗ୍ରାମରେ ଜିମୁଟି ନାଏକ ଜଣେ ଆଦିବାସୀ କ୍ଷୁଦ୍ର ଚାଷୀ । ଜମିର ପରିମାଣ ତାଙ୍କର ମାତ୍ର ୪'୫୦ ଏକର । ଏତିକି ଜମିକୁ ସମ୍ବଳକରି ୫ପ୍ରାଣୀ କୁଟୁମ୍ବ ବହୁତ ଅସୁବିଧାରେ ଚଳନ୍ତି । ଏକେତ ଜମିର ପରିମାଣ ଏତେ କମ୍, ସେଥିରେ ପୁଣି ଯେଉଁ ବର୍ଷ ବର୍ଷା ଭଲ ନହୋଇ ଫସଲହାନୀ ଘଟେ, ସେବର୍ଷ ବହୁତ ଅଭାବ ଅନଟନ ଭିତରେ ଚଳିବାକୁ ପଡ଼େ । ମୁଣ୍ଡଝାଳ ତୁଣ୍ଡରେ ମାରି ଏତେ ଖଟି ଯଦି ଦୁଇଓଳି ପେଟେ ଖାଇବାକୁ ନମିଳେ ଏବଂ ଖଣ୍ଡେ ପିନ୍ଧିବାକୁ ନ ପାଆନ୍ତି, ତେବେ ତାଙ୍କର ବଂଚି ରହିବାର ଅର୍ଥ କ'ଣ ? ବହୁତ ଚିନ୍ତାକରନ୍ତି ଜିମୁଟି ନାଏକ । କଣ କଲେ ତାଙ୍କର ଆର୍ଥିକ ଅବସ୍ଥାର ଉନ୍ନତି ଘଟିବ, ସେଥିପାଇଁ ସେ ବିଭିନ୍ନ ଲୋକମାନଙ୍କ ସଙ୍ଗେ ପରାମର୍ଶ କରନ୍ତି । ଧାନଚାଷକରି ସେ ଯାହା ପାଆନ୍ତି, ତା'ବର୍ଷକୁ ୬,୦୦୦ ଟଙ୍କା ହେବ । ଏହାକୁ ଦ୍ୱିଗୁଣିତ କରିବାକୁ ପଡ଼ିବ । ସୌଭାଗ୍ୟକ୍ରମେ ବି. ଡ଼ି. ଓ. ଙ୍କ ପରାମର୍ଶକ୍ରମେ ସମନ୍ୱିତ ଗ୍ରାମ୍ୟ ଉନ୍ନୟନ ଯୋଜନା ମାଧ୍ୟମରେ ପଣ୍ଡାପଡ଼ା ବୈତରଣୀ ଗ୍ରାମ୍ୟବ୍ୟାଙ୍କରୁ ସେଚ କୂପ ନିର୍ମାଣ ନିମନ୍ତେ ୪,୦୦୦ ଟଙ୍କା ଋଣ ମଂଜୁରୀ ପାଆନ୍ତି, ଯେଉଁଥିରୁକି ୨,୦୦୦ ଟଙ୍କା ସେ ରିହାତିର ସୁଯୋଗ ପାଆନ୍ତି । ସର୍ବମୋଟ ୪'୫୦ ଏକର ଜମିମଧ୍ୟରୁ ୩'୫୦ ଏକର ଜମିରେ ଧାନଚାଷ ଏବଂ ଏକ ଏକର ଜମିରେ ପନିପରିବା ଚାଷକରନ୍ତି । ସେଚକୂପଟି ଏକ ଏକର ପରିମିତ ଜମିକୁ ପାଣି ଯୋଗାଏ । ଉକ୍ତ ଜମିରେ ସେ ଲଙ୍କାମରିଚ, ଆଳୁ, ବାଇଗଣ ଇତ୍ୟାଦି ବିଭିନ୍ନ କିସମର ପନିପରିବା ଖରିଫ୍ ଋତୁରେ ଉତ୍ପାଦନକରି ୮୦୦ଟଙ୍କା ପାଆନ୍ତି । ଉକ୍ତ ଅତିରିକ୍ତ ଆୟଟି ତାଙ୍କର ଦ୍ୱିତୀୟ ଝିଅ ବାହାଘର କରିବାରେ ବହୁତ ସାହାଯ୍ୟ କରେ । ପୂର୍ବାପେକ୍ଷା ତାଙ୍କର ଆର୍ଥିକ ଅବସ୍ଥା ବର୍ତ୍ତମାନ ଉନ୍ନତ । ସମସ୍ତେ ଆନନ୍ଦ ଓ ସନ୍ତୋଷରେ ଚଳୁଛନ୍ତି ।

ଜିଲ୍ଲା ସୂଚନା ଓ ଲୋକ ସଂପର୍କ ଅଧିକାରୀ

କେନ୍ଦୁଝର

# ମନଥିଲେ ଉପାୟ ମିଳେ

ଶ୍ରୀ ଗୁରୁପ୍ରସାଦ ମହାପାତ୍ର

କଳାହାଣ୍ଡି ଜିଲ୍ଲା ଖଡ଼ିଆଳ ପଂଚାୟତ ସମିତି ଅନ୍ତର୍ଗତ ଖଣାବେଡ଼ା ଗ୍ରାମର ରାମକୃଷ୍ଣ ରଥ ଜଣେ ନିତାନ୍ତ ଗରିବ ଲୋକ । ସାମିତ ତାଂଙ୍କର ଆୟ ସେମିତି କିଛି ବିଶେଷ ନଥିଲା । ସାମିତ ରୋଜଗାରରେ ସେ ତାଂଙ୍କର ସାତପ୍ରାଣୀ କୁଟୁମ୍ବ ଚଳାଇବାରେ ଆଦୌ ସକ୍ଷମ ହୋଇପାରୁ ନଥିଲେ । ତାଂକୁ ଓ ତାଙ୍କ କୁଟୁମ୍ବଙ୍କୁ ବହୁ କଷ୍ଟ ସ୍ୱୀକାର କରିବାକୁ ପଡୁଥିଲା ।

୧୯୮୦ ମସିହାରେ ଦିନେ ସେହି ଗାଁର ଦରିଦ୍ରତମ ଲୋକଂକ ଆର୍ଥିକ ଉତ୍ଥାନ ସକାଶେ ଲୋକ ବାଛିବାପାଇଁ ଆଭାବସିଲା । ଭାଗ୍ୟବଶତଃ ରାମକୃଷ୍ଣଙ୍କୁ ଇ. ଆର. ଆର. ପି. କାର୍ଯ୍ୟକ୍ରମରେ ସହାୟତା ପାଇଁ ବଛାଗଲା । ଏହି କାର୍ଯ୍ୟକ୍ରମରେ ଭାଳପୁର ସମବାୟ ସେବା ସମିତିରୁ ସେ ଗୋଟିଏ ଜର୍ସିଗାଈ ପାଇଲେ । ପରେ ୧୯୮୩ ସାଲରେ ମଧ୍ୟ ତାଂକୁ ଆଉଗୋଟିଏ ଜର୍ସି ଗାଈ ଯୋଗାଇ ଦିଆଗଲା । ଏହି ଦୁଇଗୋଟି ଗାଈକୁ ସେ ଅତି ଯତ୍ନରେ ଲାଳନପାଳନ କରିବାକୁ ଲାଗିଲେ । ବର୍ତ୍ତମାନ, ସେ ଗାଈଙ୍କଠାରୁ ଦୈନିକ ୧୬ଲିଟର କ୍ଷୀର ପାଉଛନ୍ତି ଯାହାର ଦାମ୍ ହେଉଛି ୪୦ଟଙ୍କା । ୪୦ ଟଂଙ୍କା ମଧ୍ୟରୁ ଗାଈଙ୍କ ପାଇଁ ସେ ପ୍ରତ୍ୟେକ ଦିନ ୧୬ ଟଂଙ୍କା ଖର୍ଚ୍ଚ କରନ୍ତି ଏବଂ ବଳକା ୨୪ ଟଂଙ୍କାରେ ନିଜ କୁଟୁମ୍ବ ପ୍ରତିପୋଷଣ କରନ୍ତି ।

ଦୁଇଟି ଗାଈ କିଣିବା ଋଣ ବାବଦରୁ ଆଣିଥିବା ୮ ହଜାର ଟଂଙ୍କାରୁ ୬ହଜାର ଟଂଙ୍କା ରିହାତି ଯାଇ ବାକୀ ବଳକା ୨ହଜାର ଟଂଙ୍କା ଋଣ ସେ ବର୍ତ୍ତମାନ ଶୁଝି ସାରିଲେଣି । ବର୍ତ୍ତମାନ ତାଂଙ୍କ ନିକଟରେ ଦୁଇଟି ଜର୍ସି ଗାଈ, ଦୁଇଟି ମାଈ ବାଛୁରୀ ଓ ଗୋଟିଏ ଅଣ୍ଡିରା ବାଛୁରୀ ଅଛି । ଶ୍ରୀ ରଥ କହନ୍ତି, ବର୍ତ୍ତମାନ ପରିବାର ସହ ସେ ସୁଖମୟ ଜୀବନଯାପନ କରୁଛନ୍ତି ।

ସୂଚନା ଅଧିକାରୀ,
ସୂଚନା ଓ ଲୋକ ସଂପର୍କ ଅଧିକାରୀ
ଭୁବନେଶ୍ୱର

# ମୁଁ ଆଉ ବୁଲା ବାରିକ ନୁହେଁ

ଶ୍ରୀ ଭବନାରାୟଣ ମହାନ୍ତି

କେନ୍ଦୁଝର ଜିଲ୍ଲା ହରିଚନ୍ଦନପୁର ବ୍ଲକ୍ ଅନ୍ତର୍ଗତ ଗଣ୍ଡିହା ଗ୍ରାମର ଅଧିବାସୀ ଶ୍ରୀ ଉମାକାନ୍ତ ବାରିକ । ୫୦ ଡେସିମିଲ ଜମିକୁ ସମ୍ବଳ କରି ଅତି ଦୁଃଖ କଷ୍ଟରେ ଚଳନ୍ତି । ସେ ଗାଁ ସାରା ବୁଲି ଆସିଲେ କିମ୍ବା ହାଟ ଦୋକାନ ପାଖରେ ବସି କ୍ଷୌର କରି ଘରକୁ ଫେରିଲା ବେଳକୁ କେଉଁଦିନ ବା ଦୁଇଟଙ୍କା, ତିନି ଟଙ୍କା ହୋଇ ଯାଉଥିଲା । ସେଥିରେ ଛୋଟ ବଡ଼ ମିଶି ୯ ପ୍ରାଣୀ କୁଟୁମ୍ବ ଚଳିବା ବଡ଼ କଷ୍ଟ । ଝିଅପୁଅ ତିନି ଛଅଙ୍କୁ ମିଶାଇ ସ୍ୱାମୀ ସ୍ତ୍ରୀ ବଡ଼ କଷ୍ଟରେ ଦିନ କାଟନ୍ତି । ଓଳିଏ ଖାଇଲେ ଓଳିଏ ଉପାସ । କେତେ ଖରାବର୍ଷା ସହି ମୁଣ୍ଡ ଝାଳ ତୁଣ୍ଡରେ ମାରି ଉମାକାନ୍ତ ଏମିତି ପରିଶ୍ରମ କରି ମଧ୍ୟ ତାଙ୍କ ପରିବାର ଲୋକେ ଗଣ୍ଡିଏ ପେଟପୂରା ଖାଇବାକୁ ପାଆନ୍ତି ନାହିଁ । ସବୁଦିନେ ସମାନ ଯାଏନା । ଭଗବାନ ତା'ର ଗୁହାରି ଶୁଣିଲେ । ଦିନେ ହରିଚନ୍ଦନପୁର ବି. ଡି. ଓ. ମହାଶୟଙ୍କ ସାଙ୍ଗରେ ଉମାକାନ୍ତର ସାକ୍ଷାତ୍ ହୁଏ । ସମନ୍ୱିତ ଗ୍ରାମ ଉନ୍ନୟନ ଯୋଜନା (I.R.D.P.) ଯୋଜନାରେ ଅନ୍ତର୍ଭୁକ୍ତ ହେବା ପାଇଁ ବି. ଡି. ଓ. ମହାଶୟ ଉମାକାନ୍ତଙ୍କୁ ପରାମର୍ଶ ଦିଅନ୍ତି । ୧୯୮୦-୮୧ ବର୍ଷରେ ଉମାକାନ୍ତ ବ୍ୟାଙ୍କ୍ ଅଫ୍ ଇଣ୍ଡିଆଠାରୁ ତିନିହଜାର ଟଙ୍କା ଋଣ ପାଆନ୍ତି । ହରିଚନ୍ଦନପୁର ବଜାରରେ ଗୋଟିଏ ସେଲୁନ୍ ଖୋଲିବା ପାଇଁ ସେ ଏହି ଟଙ୍କା ବିନିଯୋଗ କରନ୍ତି । ତିନି ହଜାରରୁ ହଜାରେ ଟଙ୍କା ଛାଡ଼ ଓ ଅବଶିଷ୍ଟ ଦୁଇ ହଜାର ଋଣ । ସେଲୁନ ଖୋଲିବା ପରେ ଅବିଶ୍ରାନ୍ତ ପରିଶ୍ରମକରି ଉମାକାନ୍ତ ନିଜ ଆୟର ପରିମାଣ ବଢ଼ାଇ ପାରିଛନ୍ତି । ବର୍ତ୍ତମାନ ସେ ମାସକୁ ପ୍ରାୟ ତିନି ଶ୍ରହିଶହ ଟଙ୍କା ରୋଜଗାର କରୁଛନ୍ତି । ଗଣ୍ଡେ ଖାଇ ଖଣ୍ଡେ ପିନ୍ଧି ବେଶ୍ ଶାନ୍ତିରେ କାଳାତିପାତ କରୁଛନ୍ତି । ପିଲା-ମାନଙ୍କୁ ସ୍କୁଲରେ ପଢ଼ାଉଛନ୍ତି । ବଡ଼ ଝିଅଟି ହାଇସ୍କୁଲରେ ପଢୁଛି । ଝିଅର ବିଭାଘର ପାଇଁ ସେ ପ୍ରସ୍ତୁତ ହେଉଛନ୍ତି । ଉପାର୍ଜନ ଧନରୁ କିଛି କିଛି ସଂଚୟ କରୁଛନ୍ତି । ଏହାଛଡ଼ା ଝିଅକୁ ଗୋଟିଏ ରେଡ଼ିଓ ଦେବା ନିମନ୍ତେ ରେଡ଼ିଓ ଗୋଟିଏ କିଣି ତାକୁ ପାଖରେ ରଖିଛନ୍ତି । ଋଣ ଟଙ୍କାରୁ ୭୭୫ ଟଙ୍କା ପରିଶୋଧ କରିସାରିଲେଣି ଓ ଅବଶିଷ୍ଟ ଟଙ୍କା ପରିଶୋଧ କରିବା ଲାଗି ଆଶାପୋଷଣ କରିଛନ୍ତି । ଉମାକାନ୍ତ ଆଉ ବୁଲା ବାରିକ ନୁହେଁ, ଏକ ସେଲୁନ୍‌ର ମାଲିକ ।

ଉପଖଣ୍ଡ ସୂଚନା ଓ ଲୋକ ସଂପର୍କ ଅଧିକାରୀ,
କେନ୍ଦୁଝର

# ଶିବଙ୍କର ମାଛଚାଷ

ଏ ପୁରାଣର ଶିବ ନୁହନ୍ତି । ଚଳିତ ଶତାବ୍ଦୀର ଜଣେ ଗରିବ ଲୋକ । ନାମ ଶିବ ବଳ । ଘସିପାଲି ବ୍ଲକର ହଟକୁଳା ଗ୍ରାମରେ ଛୋଟିଆ ଡିହରେ ଜୀର୍ଣ୍ଣଶୀର୍ଣ୍ଣ କୁଟୀର । ସେଇଠି ଶିବଙ୍କ ଆସ୍ଥାନ । ରାତି ପାହିଲେ ପରଦୁଆରେ ମୂଲ ଲାଗିବାହିଁ ସାର । ଦିନକୁ ମଜୁରୀ ସାତଟଙ୍କା । ଝାଳନାଳ ଖଟଣୀ ପରେ ମଧ୍ୟ ପେଟ କିନ୍ତୁ ପୂରେନି । ଜମି ବୋଲି ବାଡ଼ି ଗୁଡ଼ିକରେ ଗୁଡ଼େ ନାହିଁ । ଜୀବନଟା ତାଙ୍କର ଏକ ଶୃଙ୍ଖଳ ନଈ । ମଜୁରୀ ଆଣିବ ତ ଖାଇବ ।

ସରକାରୀ ବିକାଶ କାର୍ଯ୍ୟକ୍ରମରେ ୧୯୮୩-୮୪ ଆର୍ଥିକ ବର୍ଷରେ ଶିବ ୪୫ ଡେସିମିଲର "ରୋତି" ପୋଖରୀ ୧୦ ବର୍ଷ ପାଇଁ ଦୀର୍ଘମିଆଦି ପଟ୍ଟାରେ ପାଇଲେ । ବ୍ଲକ୍ ଅଫିସରୁ ପାଇଥିବା ପଟ୍ଟା କାଗଜ ଖଣ୍ଡିକ ହାତରେ ଧରି ଅନେକ ଭାବିଥିଲେ ଶିବ । ସତରେ ଯେମିତି ପୁନିଅଁ ଚାନ୍ଦ ତା ହାତ ମୁଠାରେ । ପୋଖରୀରୁ ପଙ୍କୋଦ୍ଧାର ହେଲା । ଖର୍ଚ୍ଚ ହେଲା ୩ ହଜାର ୯ ଶହ ଟଙ୍କା । ବିଭାଗୀୟ ଅଫିସରଙ୍କ ପରାମର୍ଶକୁ ପାଳନ କରି, ୯୦୦ ଟଙ୍କାର ମାଛ ଚାଷ କଲେ । ଜୁନ୍ ୧୯୮୪ ବେଳକୁ ମାଛ ଧରାଗଲା । ମିଳିଲା ୩୬୦ କିଲୋଗ୍ରାମ । ବିକ୍ରୀ ଧନ ମିଳିଲା ୩ ହଜାର ୭ ଶହ ଟଙ୍କା । ନିଜ ହାତରେ ପୁଣି ଏକା ଥରକେ ଏତେ ଟଙ୍କା । ପୋଖରୀ ହୁଡ଼ାରେ ମଧ୍ୟ ପନିପରିବା ଚାଷ ବାବଦକୁ ୨୦୦ ଟଙ୍କା ମିଳିଛି ।

ଏହି ରୋଜଗାରରୁ ପ୍ରତିବର୍ଷ ନିୟମିତ ପଞ୍ଚା ବାବଦ ଟଙ୍କା ଭରଣ କରନ୍ତି । ତା ଛଡ଼ା ମାଛ କାର୍ଯ୍ୟ ଖାଦ୍ୟ, ଶପାର କିଣାଯାଏ । ବର୍ତ୍ତମାନ ୨ ହଜାର ଟଙ୍କା ମୂଲ୍ୟର ୪୦ ଡେସିମିଲ ଜମି କଲେଣି । ଭବିଷ୍ୟତ ପାଇଁ କିଛି ମଧ୍ୟ ଡାକଘର ପାସ୍ ବୁକ୍‌ରେ ଜମା କରିଛନ୍ତି । ମଣିଷ ହିସାବରେ ବଞ୍ଚିବା ପାଇଁ ଦୃଢ଼ ସଂକଳ୍ପ ଓ ଅକ୍ଳାନ୍ତ ପରିଶ୍ରମ ଶିବଙ୍କୁ ଠିଆ କଲା । ସେ ସମସ୍ତଙ୍କ ଭିତରେ ନିଜକୁ ମିଶେଇ ଦେବା ସଙ୍ଗେ ସଙ୍ଗେ ନିଜ ପରିବାରର ଆର୍ଥିକ ଅବସ୍ଥାର ପରିବର୍ତ୍ତନ ଆଣି ପାରିଛନ୍ତି ।

---

## ଭୁଲ ହେବ ନାହିଁ

କେନ୍ଦୁଝର ଜିଲ୍ଲାର ଘଟଗାଁ ବ୍ଲକ ଅନ୍ତର୍ଗତ ପଣ୍ଡାପଡ଼ା ଗ୍ରାମରେ ଏକ ବାରିକ ପରିବାରରେ ନବକିଶୋରଙ୍କର ଜନ୍ମ । ବହୁତ ଦୁଃଖ କଷ୍ଟ ସହି ଗାଉଁଲି ବାରିକ ପରି ଗୋଟିଏ ଛୋଟ କାଠ ବାକ୍ସରେ କ୍ଷୁର, ପାନିଆଁ, କଇଁଚି ଧରି ବୁଲି ଖିଅର କରିବା ଏବଂ ବାଳକାଟି ଯାହା ରୋଜଗାର କରନ୍ତି, ନବକିଶୋରଙ୍କ ପରିବାର ସେଥିରେ ଓଳିଏ ଖାଇଲେ ଓଳିଏ ଉପାସ ରହନ୍ତି । ଗାଁର ସାଆନ୍ତମାନେ ନବକିଶୋରଙ୍କୁ ବହୁତ ଉପଦେଶ ଦେଇ କହନ୍ତି; ନୂଆ ବାଳକଟା ଯନ୍ତ୍ରପାତି କିଣି ଗୋଟିଏ ସେଲୁନ କରିବାକୁ ନିମନ୍ତେ । ନବକିଶୋର ମଧ୍ୟ ସବୁ ଶୁଣନ୍ତି ଓ ଗୋଟିଏ ସେଲୁନ ଖୋଲିବା ନିମିତ୍ତ ଉପାୟ ଖୋଜନ୍ତି । ୧୯୮୩-୮୪ ବର୍ଷରେ ଜିଲ୍ଲା ଗ୍ରାମ୍ୟ ଉନ୍ନୟନ ସଂସ୍ଥାର ସାହାଯ୍ୟରେ ସମନ୍ୱିତ ଗ୍ରାମ୍ୟ ଉନ୍ନୟନ ଯୋଜନା କାର୍ଯ୍ୟକ୍ରମାନୁଯାୟୀ ଟ ୧,୭୫୦ ବୈତରଣୀ ଗ୍ରାମ୍ୟ ବ୍ୟାଙ୍କ ଋଣ ପାଇଥିଲେ । ସେଥିରୁ ଟ ୧,୦୦୦ ରିହାତିର ସୁଯୋଗ ପାଇଲେ । ଏହି ଋଣ ଟଙ୍କାରେ ସେ ଏକ ସେଲୁନ୍ ତିଆରି କଲେ । ସେଲୁନ୍ କରିବା ଦ୍ୱାରା ବର୍ତ୍ତମାନ ଶ୍ରୀ ବାରିକ ବାର୍ଷିକ ଟ ୨,୪୨୦ ରୋଜଗାର କରି ପାରୁଛନ୍ତି । ବର୍ତ୍ତମାନ ସୁଦ୍ଧା ସେ ଟ ୭୭୦ ଶୁଝି ପାରିଛନ୍ତି । ବର୍ତ୍ତମାନ ସେ ପରିବାରର ବଡ଼ସାନ ହୋଇ ସାତ ପ୍ରାଣୀ କୁଟୁମ୍ବ ଆନନ୍ଦରେ ଚଳାଉଛନ୍ତି । ପୂର୍ବର ଅବସ୍ଥା ଅନେକ ବଦଳି ଯାଇଛି । ପିଲାମାନେ ବର୍ତ୍ତମାନ ଦୁଇବେଳା ପେଟ ପୂରାଇ ଗଣ୍ଡେ ଖାଇ ପାରୁଛନ୍ତି, ପିନ୍ଧି ପାରୁଛନ୍ତି ଓ ସ୍କୁଲରେ ପଢ଼ିବାର ସୁଯୋଗ ପାଇଛନ୍ତି । ସେ କୁହନ୍ତି, ସରକାରଙ୍କ ଏ ସାହାଯ୍ୟ ସେ ତାଙ୍କ ଜୀବନ କାଳ ମଧ୍ୟରେ ଭୁଲି ପାରିବେ ନାହିଁ । ବର୍ତ୍ତମାନର କ୍ୟାବିନଟିକୁ ଆହୁରି ଉନ୍ନତ ଧରଣର କରିବାକୁ ନୂତନ ଯନ୍ତ୍ରପାତି କିଣିବା ନିମନ୍ତେ ବ୍ୟାଙ୍କ କର୍ତ୍ତୃପକ୍ଷ ଓ ଗ୍ରାମ୍ୟ ଉନ୍ନୟନ ସଂସ୍ଥାର କର୍ତ୍ତୃପକ୍ଷଙ୍କ ସହିତ ଯୋଗାଯୋଗ କରୁଛନ୍ତି ଏବଂ ସେଥିପାଇଁ ସେ ପ୍ରତିଶ୍ରୁତି ମଧ୍ୟ ପାଇଛନ୍ତି ।

---

## ଚମେସ ଋତୁ ନ ପାଳିଚଲ......

କେନ୍ଦୁଝର ଜିଲ୍ଲା ଘଟଗାଁ ବ୍ଲକ୍‌ର ପଞ୍ଚାବରି ଗୋଟିଏ ଛୋଟ ଗ୍ରାମ । ଏହି ଗ୍ରାମର ଘାସିରାମ ମାହାନ୍ତ ଜଣେ ଛୋଟ ଚାଷୀ । ମାତ୍ର ଅଢ଼େଇ ଏକର ଜମି । ତାହା ପୁଣି ବର୍ଷା ଉପରେ ନିର୍ଭରଶୀଳ । ସେହି ଅଢ଼େଇ ଏକର ଜମିର ଫସଲରେ ତାଙ୍କ ପରିବାରର ଛଅ ପ୍ରାଣୀ କୁଟୁମ୍ବ ବହୁ କଷ୍ଟରେ ଦିନ କାଟନ୍ତି । ଯେଉଁ ବର୍ଷ ଭଲ ବର୍ଷା ନ ହୁଏ, ସେ ବର୍ଷ ବହୁତ ଅଭାବ ଅନାଟନ ମଧ୍ୟରେ ତାଙ୍କ ପରିବାର ଚଳନ୍ତି । କ୍ଷୁଦ୍ରଚାଷୀ ହିସାବରେ କ'ଣ ବା ସେ କରିପାରିବେ ? ଯଦି ଜଳସେଚନର ସୁବିଧା ଥାଆନ୍ତା, ତେବେ ହୁଏତ ଜମିରେ ଅନ୍ୟ ଫସଲ କରି ତାଙ୍କ ଅଭାବକୁ କିଛିଟା ଦୂର କରି ପାରନ୍ତେ । ୧୯୮୩-୮୪ ବର୍ଷରେ ପଣ୍ଡାପଡ଼ା ବୈତରଣୀ ଗ୍ରାମ୍ୟ ବ୍ୟାଙ୍କରୁ ଗୋଟିଏ ସେଚ କୂପ ନିର୍ମାଣ ସକାଶେ ଗ୍ରାମ୍ୟ ଉନ୍ନୟନ ସଂସ୍ଥା ଜରିଆରେ ସମନ୍ୱିତ ଗ୍ରାମ୍ୟ ଉନ୍ନୟନ କାର୍ଯ୍ୟକ୍ରମାନୁଯାୟୀ ଟ ୪,୦୦୦ ଋଣ ସେ ପାଆନ୍ତି ଓ ସେଥିରୁ ଟ ୧,୩୩୩ ରିହାତି ମିଳେ । ଋଣ ପାଇବା ପରେ ଶ୍ରୀ ମାହାନ୍ତ ପୁରା ଦମ୍‌ରେ କାର୍ଯ୍ୟ ଆରମ୍ଭ କରନ୍ତି । ଅଢ଼େଇ ଏକର ଜମି ମଧ୍ୟରୁ ୦.୮୫ ଏକର ଜମିରେ ସେଚ କୂପରୁ ପାଣି ମଡ଼ାଇ ଲଙ୍କାମରିଚ, ଆଳୁ, ମକା ଇତ୍ୟାଦି ବିଭିନ୍ନ କିସମର ଫସଲ ଉତ୍ପାଦନ କରନ୍ତି । ବର୍ଷକୁ ସେ ଏଥିରୁ ଟ ୧,୭୦୦ ରୋଜଗାର କରନ୍ତି । ଏହି ରୋଜଗାରରେ ତାଙ୍କର ଛୋଟ ବଡ଼ ହୋଇ ଛଅ ପ୍ରାଣୀ କୁଟୁମ୍ବ ଆଗ ଅପେକ୍ଷା ବର୍ତ୍ତମାନ ଖୁବ୍ ଭଲରେ ଚଳି ପାରୁଛନ୍ତି । ଋଣ ବାବଦକୁ ଟ ୬୦୦ ଶୁଝି ଦେବା ପରେ ବଳକା ଋଣକୁ ନିୟମିତ ଭାବେ ଠିକ୍ ସମୟରେ ଶୁଝି ଦେବେ ବୋଲି ଆଶାପୋଷଣ କରିଛନ୍ତି । କେବଳ ସେତିକି ନୁହେଁ ରୋଜଗାର ପଇସାରୁ କିଛି ସଞ୍ଚୟ କରି ସେଥିରେ ଅଙ୍କଲପଡ଼ାଠାରେ ଏକରେ ଜମି କିଣିଛନ୍ତି । ବର୍ତ୍ତମାନ ତାଙ୍କର ଆର୍ଥିକ ଅବସ୍ଥା ବେଶ୍ ସ୍ୱଚ୍ଛଳ ।

---

## ବଳି ହେଲା ବଳରାମ

ଶ୍ରୀ ରାଧାଗୋବିନ୍ଦ ମିଶ୍ର

ଆଜ୍ଞା ! ବାଳକାଟିବେ ? ଦାଢ଼ି ବନାଇବେ ବାବୁ ? ନିତିଦିନିଆ ଡ଼ାକ "ବଳିଆ"ର । ଗ୍ରାମର ଦୁଆରେ ଦୁଆରେ ଘେରାଏ ବୁଲି ଆସିବାକୁ ପଡ଼ିବ । ସୂର୍ଯ୍ୟ ଉଠିବା ପୂର୍ବରୁ ନିତ୍ୟକର୍ମ ସାରି ବାହାରି ପଡ଼େ ବଳରାମ ହାତରେ କାଠ ବାକ୍ସଟିକୁ ଝୁଲାଇ ଦେଇ । ଟିକିଏ ଥଣ୍ଡା ଲାଗିଲେ ବିଡ଼ିରୁ ଦିଦମ୍ ଟାଣିନିଏ । ଛୋଟ ଛୁଆଠୁ ବୁଢ଼ାଯାଏ ସମସ୍ତେ ଜୁଟନ୍ତି ବଳରାମ ନିକଟରେ । ସକାଳୁ ପ୍ରହାର ବାଳକାଟିବା ସମୟରେ ନାନା ମଜା ମଜା ମନମତାଣିଆ ଗପ ଶୁଣାଇ ସେ ସମସ୍ତଙ୍କର ମନ କିଣି ନେଇଥାଏ । ତଥାପି ତା'ର ରୋଜଗାର ଅଣ୍ଟେ ନାହିଁ ପରିବାର ଚଳାଇବାକୁ । ଗୁରୋଟି ଛୁଆର ବାପ । ବୁଢ଼ା ବାପା, ମା ଏବଂ ସ୍ତ୍ରୀ ଏଭଳି ଆଠ ପ୍ରାଣୀ କୁଟୁମ୍ବ । ରୋଜଗାର କେଉଁଠିକୁ ପାଏ ନାହିଁ । ଦାନାକୁ ଗୁହିଁଲେ କନା ଅଭାବ । ଦେହସୁହା ହୋଇଗଲାଣି । ବାପାଙ୍କର ବି ବଳ-ବହପ ନାହିଁ ହାତକୁ ହାତ ମିଳେଇ କାମ କରନ୍ତା । "ଝର ପଶିଲେ ଘର" । ଦୁଇ ପଇସା ହୁଏତ ମିଶି ଯାଆନ୍ତା । ଅନ୍ତତଃ ପକ୍ଷେ ଲୁଣ-ପିଆଜ ଖର୍ଚ୍ଚ ଚଳିଯାଇଥାନ୍ତା । ସାପ୍ତାହିକ ବଜାର "ମାର୍ଚ୍ଚ ଗୁଡ଼ା"କୁ ଧାଇଁ ଯାଏ ସେ । ଦୁଇଗୁରି ପଇସା ଆସିଯିବ ହୁଏତ ପରିବାର ପାଇଁ । ସବୁ ଦାୟିତ୍ୱ ବହିଆ ମୁଣ୍ଡରେ । ସେ ଆଉ ପାରିଲା ନାହିଁ ନିଜ ଧନ୍ଦା କରି । ଦୈନିକ ରୋଜଗାର ଟ ୪ରୁ ଟ ୫ ମାତ୍ର କ୍ଷୁର ବାକ୍ସଟିକୁ କନାଗୁଡ଼ାଇ ସାଇତି ଦେଲା ଘର କୋଣରେ

ସେ ମଜୁରୀ ଖଟିବ । ମେହନତ୍ କରିବ । ପିଲା କବିଲାଙ୍କୁ ମୁଠାଏ ତୋରାଣି ଦେବ । ମେହନତିରେ ଅନ୍ତତଃ ରୋଜଗାର ହେବ ୬ ରୁ ୭ ଟଙ୍କା । ଶାଗ, ପେଜ, ଦେଇ ପରିବାରକୁ ପୋଷିବାକୁ ପଡିବ । ହାଡ଼ ଭଙ୍ଗା ପରିଶ୍ରମ କରି ମଧ୍ୟ ପରିବାରଟିକୁ ଚଳେଇ ପାରିଲା ନାହିଁ ବଳରାମ । ସମୟର ଚକ ଘୁରି ଗ୍ଲଲିଲ । ଅପ୍ରତ୍ୟାଶିତ ଭାବରେ ଭାଗ୍ୟ ରବି ଉଦୟ ହେଲା ବଳରାମର । କଲ୍ୟାଣସିଂପୁର, ପଲ୍ଲୀ ନୁହେଁ କି ସହର ବି ନୁହେଁ । ରାୟଗଡ଼ା ସବ୍‌ଡିଭିଜନ୍ ଅନ୍ତର୍ଗତ ପଞ୍ଚାୟତ ସମିତି ସଦର ମହକୁମା । ସମନ୍ୱିତ ଗ୍ରାମ୍ୟ ଉନ୍ନୟନ ଯୋଜନାରେ ଟ୩୦୦୦ ଙ୍କା ବ୍ୟାଙ୍କରୁ ଋଣ ମିଳିଲା । ସେଥିମଧ୍ୟରୁ ୧,୫୦୦ ଟଙ୍କା ରିହାତି ମିଳିଲା ଓ ଅବଶିଷ୍ଟ ଟଙ୍କା ପରିଶୋଧ କରିବାକୁ ପଡିବ । ଗାଁର ଛକ ଜାଗାରେ ବଖୁରୀଟିଏ ବନାଇ ବଳରାମ ସେଲୁନଟିଏ ଖୋଲି ବସିଲା । ଚୌକି ଉପରେ ବସି ବାଳକାଟିବା ପାଇଁ ସମସ୍ତଙ୍କର ସଉକ—ତେଣୁ ବହୁତ ଭିଡ଼ । ଦୈନିକ ରୋଜଗାର ୧୫ଟଙ୍କା ରୁ ୧୮ଟଙ୍କା ହେଲା । ଏହା ମଧ୍ୟରେ ଋଣ ପରିଶୋଧ ହୋଇଯାଇଛି । ସଞ୍ଚୟ କରିବାପାଇଁ ଡାକ ଘରେ ବହିଟିଏ ଖୋଲିଛନ୍ତି । ଏଇ କେଇମାସ ତଳେ ବୁଢ଼ା ବାପଙ୍କ ଶ୍ରାଦ୍ଧ କ୍ରିୟାରେ କିଛି ବ୍ୟୟ କରିଛନ୍ତି । ପିଲାମାନଙ୍କୁ ପାଠ ପଢ଼ାଇବାଲାଗି ବିଦ୍ୟାଳୟରେ ଛାଡ଼ିଛନ୍ତି । ବର୍ତ୍ତମାନ ସେ ଆଉ ଗାଁର 'ବଳି' ନୁହେଁ 'ବଳରାମ' ।

ଅନୁବିଭାଗୀୟ ସୂଚନା ଓ ଲୋକ ସଂପର୍କ
ଅଧିକାରୀ ରାୟଗଡ଼ା, କୋରାପୁଟ ।

# ପାଣ୍ଡୁରାମର ଦୁଃଖ ଗଲା

### ଶ୍ରୀ ଆଲୋକ ବରଣ ପ୍ରଧାନ

ଢେଙ୍କାନାଳର ଜିଲାର ଘଟଗାଁ ବ୍ଲକର କମାରନାଳି ଗ୍ରାମର ଆଦିବାସୀ ପାଣ୍ଡୁରାମ ମୁଣ୍ଡା ଜଣେ କ୍ଷୁଦ୍ରଚାଷୀ । ଜମିର ପରିମାଣ ତାଙ୍କର ମାତ୍ର ଅଢ଼େଇ ଏକର । ସେହି ଜମିରେ ତାଙ୍କର ପରିବାରର ସାତପ୍ରାଣୀ କୁଟୁମ୍ବ ଚଳିବାରେ ବହୁ ସମୟରେ ଅସୁବିଧା ଦେଖାଦିଏ । ଏକେତ ଜମି କମ୍ ସେଥିରେ ପୁଣି ଯେଉଁ ବର୍ଷ ବର୍ଷା ଭଲ ନହୁଏ, ଫସଲ ହାନି ଘଟେ । ପାଣ୍ଡୁରାମ ସବୁବେଳେ ଭାବେ ସେ ଜମିକୁ ଯଦି ପାଣିର କୌଣସି ମତେ ସୁବିଧା ହୁଅନ୍ତା ତେବେ ତାର ଅଭାବ ହୁଅନ୍ତା ନାହିଁ । କିନ୍ତୁ ଜଣେ କ୍ଷୁଦ୍ର ଚାଷୀ ହିସାବରେ କ'ଣ ବା ସେ କରିପାରିବ ? ତେଣୁ ପାଣ୍ଡୁରାମର ପରିବାର ସବୁବେଳେ ଅଭାବ ଅନାଟନ ଭିତରେ ଥାଆନ୍ତି । କିନ୍ତୁ ପାଣ୍ଡୁରାମ ମାତ୍ର ଅଢ଼େଇ ଏକର ଜମିରେ କିପରି ଜଳସେଚନର ସୁବିଧା କରିପାରିବ ଏବଂ ଅନ୍ୟ ଫସଲ ଉତ୍ପାଦନ କରିପାରିବ ସେଥିପାଇଁ ଉପାୟ ଖୋଜିଲେ । ୧୯୮୩-୮୪ ବର୍ଷରେ ପଞ୍ଚାପଡ଼ା ବୈତରଣୀ ଗ୍ରାମ୍ୟ ବ୍ୟାଙ୍କରୁ ଗୋଟିଏ ସେଚକୂପ ନିର୍ମାଣ ସକାଶେ ଗ୍ରାମ୍ୟ ଉନ୍ନୟନ ସଂସ୍ଥା ଜରିଆରେ ଟ ୫,୦୦୦ଙ୍କା ଋଣ ନେଲେ । ଏହି ଋଣ ସମନ୍ୱିତ ଗ୍ରାମ୍ୟ ଉନ୍ନୟନ ଯୋଜନା କାର୍ଯ୍ୟକ୍ରମାନୁଯାୟୀ ଓ ଏଥିମଧ୍ୟରୁ ଟ ୨,୫୦୦ ରିହାତି ବାବଦକୁ ପାଇଲେ । ଅଢ଼େଇ ଏକର ଜମି ମଧ୍ୟରୁ ଦେଢ଼ ଏକର ଜମିରେ ଧାନ ଫସଲ ଏବଂ ୧ ଏକର ଜମିରେ ପନିପରିବା ଚାଷ କଲେ । ସେଚକୂପଟି ଏକ ଏକର ପରିମିତ ଜମିକୁ ପାଣି ଯୋଗାଇଲା । ଏହି ଜମିରେ ସେ ଲଙ୍କା, ମକା, ବାଇଗଣ, ଆଳୁ ଇତ୍ୟାଦି ବିଭିନ୍ନ କିସମର ପନିପରିବା ଚଳିତ ଖରିଫ ଋତୁରେ ଉତ୍ପାଦନକରି ଟ ୫୦୦ ପାଇଲେ । ଦେଢ଼ଏକର ଧାନ ଜମିରୁ ଯେଉଁ ଉତ୍ପାଦନ ମିଳିଲା ତାହାର ମୂଲ୍ୟ ପ୍ରାୟ ଟ ୩,୫୦୦ ହେବ । ବର୍ତ୍ତମାନ ସୁଦ୍ଧା ସେ କିସ୍ତି ଅନୁଯାୟୀ ଟ ୧୯୦ ବ୍ୟାଙ୍କକୁ ଋଣ ଶୁଝିଛନ୍ତି । ସେ ନିୟମିତ ଋଣ ପରିଶୋଧ କରିବେ ବୋଲି ଆଶା ରଖିଛନ୍ତି । ପୂର୍ବାପେକ୍ଷା ତାଙ୍କର ଆର୍ଥିକ ଅବସ୍ଥାରେ ଉନ୍ନତି ଘଟିଛି ଏବଂ ସେ ପନିପରିବା ଉତ୍ପାଦନ ଦ୍ୱାରା ଯେଉଁ ଅଧିକ ଆୟ କରୁଛନ୍ତି ସେଥିରେ ତାଙ୍କର ଦୁଇଟି ପୁଅକୁ ସ୍କୁଲରେ ପଢ଼ାଉଛନ୍ତି ଓ ପରିବାରର ବଡ଼ସାନ ହୋଇ ସାତଜଣ ଆନନ୍ଦରେ ଚଳୁଛନ୍ତି ।

# କେତେ ଦୁଃଖ କେତେ ସୁଖ

### ଶ୍ରୀ ପାଣ୍ଡବ ଚରଣ ମହାନ୍ତି

ଢେଙ୍କାନାଳ ଜିଲା ଭୁବନ ବ୍ଲକର ଜିରାଳ ଗ୍ରାମରେ ଦୁଃଖୀ ପରିବାରରେ ବିଧବା ବଣି ପରିଡ଼ାଙ୍କ ଘର । ୧୯୮୧ରେ ତାଙ୍କର ସ୍ୱାମୀ ଖଗେଶ୍ୱର ପରିଡ଼ାଙ୍କର ମୃତ୍ୟୁ ହୋଇଯାଇଛି । ଖଗେଶ୍ୱର ପରିଡ଼ାଙ୍କର ଚାଷ ଜମି ବୋଲି କିଛି ନ ଥିଲା । ଦେଢ଼ଗୁଣ୍ଠ ଡିହ ଉପରେ ଖପରଘର ଖଣ୍ଡେ । ସ୍ୱାମୀ ଥିବା ସମୟରେ ପରଦୁଆରେ ମୂଲ ଲାଗି ଯାହା ଆଣନ୍ତି, ସେଥିରେ ଓଳିଏ ଖାଇଲେ ଆର ଓଳି ଚଳିବା କଷ୍ଟକର ହେଉଥିଲା । ଗୋଟିଏ ପୁଅ ଓ ୨ଟି ଝିଅ ମିଶି ୫ ଜଣିଆ ଛୋଟ ପରିବାରଟିକୁ ଚଳେଇବା ତାଙ୍କ ପକ୍ଷେ ଅତି କଠିନ ବ୍ୟାପାର ହୋଇପଡ଼ିଲା । ଖଗେଶ୍ୱରଙ୍କ ମୃତ୍ୟୁ ପରେ ତାଙ୍କ ପରିବାରର ଅବସ୍ଥା ଆହୁରି ଶୋଚନୀୟ ହୋଇପଡ଼ିଲା । ପରିବାରର ରୋଜଗାର ଲୋକର ମୃତ୍ୟୁରେ ବିଧବା ବଣି ପରିଡ଼ାଙ୍କୁ ସଂସାର ଅସହାୟ ଜଣାପଡ଼ିଲା । ବଣି ପରିଡ଼ା ଗ୍ରାମର ପର ଘରେ ପାଣିଦେବା, ଧାନ କୁଟିବା ଇତ୍ୟାଦି କାର୍ଯ୍ୟ କରି ନିଜର ପିଲାଙ୍କୁ ବଞ୍ଚାଇ ରଖିବାକୁ ଚେଷ୍ଟାକଲେ । ହେଲେ ସେଥିରେ ତାଙ୍କର ପରିବାର ଚଳିବା ଅସମ୍ଭବ ହୋଇ ଉଠିଲା । ତାଙ୍କର ଏହି ଦୁର୍ଦ୍ଦିନରେ ଇ.ଆର୍.ଆର୍.ପି ଯୋଜନାରେ ଜିରାଳ ଗ୍ରାମ୍ୟ ବ୍ୟାଙ୍କ ତରଫରୁ ତାଙ୍କୁ ଟ୩,୦୦୦ଙ୍କା ଋଣ ମିଳିଲା । ଏହି ଟଙ୍କାରେ ସେ ଧାନ ଉଷେଇ ଚାଉଳ କରି ବ୍ୟବସାୟ ଆରମ୍ଭ କଲେ । ଏହି ବ୍ୟବସାୟରେ ତାଙ୍କୁ ମାସିକ ହାରାହାରି ୨୦୦ ଟଙ୍କାରୁ ୩୦୦ ଟଙ୍କା ପର୍ଯ୍ୟନ୍ତ ଲାଭ ମିଳିଲା । ଛାଡ଼ ୭୫୦ଟଙ୍କା ଯାଇ ସେ ସବୁ ଋଣ ଟଙ୍କା ଶୁଝି ସାରିଲେଣି । ସେ ବର୍ତ୍ତମାନ ତାଙ୍କର ବଡ଼ ପୁଅକୁ ୧୦ମ ଶ୍ରେଣୀ ଓ ଝିଅକୁ ୭ମ ଶ୍ରେଣୀରେ ପଢ଼ାଉଛନ୍ତି । ସେ ବର୍ତ୍ତମାନ ପୂର୍ବ ଅପେକ୍ଷା ଭଲରେ ଚଳୁଛନ୍ତି । ଦୁଇଓଳି ଖାଇବାକୁ ପାଉଛନ୍ତି । ବ୍ୟବସାୟ ତାଙ୍କର ଠିକ୍ ରୂପେ ଚାଲୁଛି । ତଥାପି ସେ ଆଉକିଛି ଋଣ ଟଙ୍କା ପାଇ ପାରିଲେ ଭଲଭାବରେ ବ୍ୟବସାୟରେ ଖଟାଇ ଅଧିକ ଅର୍ଥ ଉପାର୍ଜନ କରିପାରିବେ ବୋଲି ଆଶା ରଖିଛନ୍ତି ।

ଉପଖଣ୍ଡ ସୂଚନା ଓ ଲୋକସମ୍ପର୍କ ଅଧିକାରୀ, କାମାକ୍ଷାନଗର ।



## ବନ୍ୟା କ୍ଷୟକ୍ଷତି ସଂପର୍କରେ

ସଚିବାଳୟଠାରେ ରାଜସ୍ୱମନ୍ତ୍ରୀ ଶ୍ରୀ ଯୁଗଳକିଶୋର ପଟ୍ଟନାୟକଙ୍କ ଅଧ୍ୟକ୍ଷତାରେ ରାଜ୍ୟର ପଶ୍ଚିମାଂଚଳ ଜିଲ୍ଲାମାନଙ୍କରେ ସଂପ୍ରତି ହୋଇଯାଇଥିବା ବନ୍ୟାର କ୍ଷୟକ୍ଷତି ଓ ପରବର୍ତ୍ତୀ କାର୍ଯ୍ୟାନୁଷ୍ଠାନର ସମୀକ୍ଷା କରିବାପାଇଁ ଏକ ଉଚ୍ଚସ୍ତରୀୟ ବୈଠକ ଅନୁଷ୍ଠିତ ହୋଇଯାଇଛି । ଏହି ବନ୍ୟାଯୋଗୁଁ ହୋଇଥିବା କ୍ଷୟକ୍ଷତିର ଭରଣା କରିବାପାଇଁ ଲୋକମାନଙ୍କୁ କୃଷି ବିଭାଗ ପକ୍ଷରୁ କିପରି ତୁରନ୍ତ ସାହାଯ୍ୟ ଦିଆଯାଇ ପାରିବ ତାହା ମୁଖ୍ୟତଃ ଆଲୋଚନା ହୋଇଥିଲା । ରିହାତି ଦରରେ ବିହନ, ସାର ଯୋଗାଣ କରିବା, ଭାଂଗି ଯାଇଥିବା ବନ୍ଧବାଡ଼ର ମରାମତି ଓ ଚାଷ ଜମିମାନଙ୍କରୁ ବାଲି କାଢ଼ିବା ଇତ୍ୟାଦି ଆଲୋଚନା କରାଯାଇଥିଲା ଏବଂ ସେଥିପାଇଁ ସଂପୃକ୍ତ ଜିଲ୍ଲାପାଳମାନେ ଏ ଦିଗରେ ତୁରନ୍ତ ବିହିତ ପଦକ୍ଷେପ ନେବାପାଇଁ ନିଷ୍ପତ୍ତି କରାଯାଇଥିଲା । ଭାଂଗିଯାଇଥିବା ଗୃହଗୁଡ଼ିକର ମରାମତି କରାଯିବା ପାଇଁ ଲୋକମାନଙ୍କୁ ଯେପରି ଶୀଘ୍ର ସାହାଯ୍ୟ ବଣ୍ଟନ କରାଯାଇପାରିବ ସେ ଦିଗରେ ତୁରନ୍ତ ପଦକ୍ଷେପ ନେବାକୁ ଜିଲ୍ଲାପାଳଙ୍କୁ ରାଜସ୍ୱମନ୍ତ୍ରୀ ପରାମର୍ଶ ଦେଇଥିଲେ ।

ଯେଉଁସ୍ଥାନରେ ରାସ୍ତାଗୁଡ଼ିକ ଭାଂଗିଯାଇ ଗମନାଗମନରେ ବାଧା ସୃଷ୍ଟି କରୁଥିବ, ସେଗୁଡ଼ିକର ତୁରନ୍ତ ମରାମତି ପାଇଁ ବୈଠକରେ ସ୍ଥିର କରାଗଲା । ବନ୍ୟାରେ ନଷ୍ଟ ହୋଇଯାଇଥିବା କ୍ଷୁଦ୍ରଜଳସେଚନ ପ୍ରକଳ୍ପଗୁଡ଼ିକର ମରାମତି ଉପରେ ମଧ୍ୟ ଗୁରୁତ୍ୱ ଆରୋପ କରାଯାଇଥିଲା ।

ସଂପୃକ୍ତ ଜିଲ୍ଲାପାଳମାନେ ଯେପରି ୩ଦିନ ମଧ୍ୟରେ ସେମାନଙ୍କ ଅଂଚଳର କ୍ଷୟକ୍ଷତି ସମ୍ବନ୍ଧରେ ରିପୋର୍ଟଦେବେ ସେଥିପାଇଁ ସେମାନଙ୍କୁ ପରାମର୍ଶ ଦିଆଯାଇଥିଲା ।

ଉପମୁଖ୍ୟ ସଚେତକ ଶ୍ରୀ ଭୂପିନ୍ଦର ସିଂ ମଧ୍ୟ ଆଲୋଚନାରେ ଅଂଶ ଗ୍ରହଣ କରି କଳାହାଣ୍ଡି ଜିଲ୍ଲାର କ୍ଷୟକ୍ଷତି ସମ୍ବନ୍ଧରେ ଆଲୋଚନା କରିଥିଲେ ।

ଅନ୍ୟମାନଙ୍କ ମଧ୍ୟରେ ଏହି ବୈଠକରେ ରାଜସ୍ୱ ପରିଷଦ ସଭ୍ୟ ଶ୍ରୀ କେ. ଶ୍ରୀନିବାସନ, ରାଜସ୍ୱ ବିଭାଗ ଶାସନ ସଚିବ ଶ୍ରୀ ପ୍ୟାରି ମୋହନ ମହାପାତ୍ର, କୃଷି ଓ ସମବାୟ ବିଭାଗ ଶାସନ ସଚିବ ଶ୍ରୀ ବନ୍ଦୋପାଧ୍ୟାୟ, ସମ୍ବଲପୁର, ବଲାଂଗୀର ଓ କଳାହାଣ୍ଡିର ଜିଲ୍ଲାପାଳ ଓ ମୁଖ୍ୟ ଯନ୍ତ୍ରୀମାନଙ୍କ ସମେତ ବହୁ ସଂପୃକ୍ତ ଉଚ୍ଚ କର୍ମକର୍ତ୍ତା ଏହି ବୈଠକରେ ଯୋଗଦେଇ ଆଲୋଚନାରେ ଅଂଶ ଗ୍ରହଣ କରିଥିଲେ ।

## ଔଷଧର ମାନ ଯାଞ୍ଚ କରାଯିବ

ରାଜ୍ୟର ସମସ୍ତ କର୍ମଚାରୀ ବୀମା ଡାକ୍ତରଖାନା ନିମନ୍ତେ କିଣାଯାଉଥିବା ଔଷଧର ମାନ ଡ୍ରଗ କଣ୍ଟ୍ରୋଲର ତତ୍ତ୍ୱାବଧାନରେ ପରୀକ୍ଷା କରାଯିବାକୁ ରାଜ୍ୟ ସରକାରଙ୍କ ପକ୍ଷରୁ ପଦକ୍ଷେପ ଗ୍ରହଣ କରାଯାଇଛି । ରାଜ୍ୟ ଔଷଧ ପରୀକ୍ଷାଗାରରେ ଇ: ଏସ୍: ଆଇ: ଔଷଧର ଗୁଣ ନିୟନ୍ତ୍ରଣ ନିମନ୍ତେ ଏକ ସ୍ୱତନ୍ତ୍ର ପରୀକ୍ଷା କରିବାର ବ୍ୟବସ୍ଥା କରାଯିବ । ଏଠାରେ ଉଲ୍ଲେଖ କରାଯାଇପାରେ ଯେ ଔଷଧ ପ୍ରସ୍ତୁତକାରୀମାନେ ସେମାନଙ୍କ ଦ୍ୱାରା ପ୍ରସ୍ତୁତ ଔଷଧର ଯାଂଚ୍ କରିଥାନ୍ତି । କିନ୍ତୁ ସେସବୁ ଔଷଧର ମାନ କେତେଦୂର ଠିକ୍, ତାହା ପୁନର୍ବାର ଯାଂଚ୍ କରିବାପାଇଁ ରାଜ୍ୟ ସରକାରଙ୍କ ପକ୍ଷରୁ ଏପରି ପଦକ୍ଷେପ ଗ୍ରହଣ କରାଯାଇଛି ।

ଏହାଛଡ଼ା ରାଜ୍ୟ [illegible] 'କଣ୍ଟ୍ରୋଲର' ଇ: ଏସ୍: ଆଇ: ଡାକ୍ତରଖାନାସବୁ ପରିଦର୍ଶନକରି ଔଷଧ କିଣା, ରଖାଯିବାର ପଦ୍ଧତି, ରଖାଯିବାର ଅବସ୍ଥା ଏବଂ ଔଷଧର ମାନ ଇତ୍ୟାଦି ସଂପର୍କରେ ଅନୁଧ୍ୟାନକରି ସେସବୁର ଉନ୍ନତିପାଇଁ ପରାମର୍ଶ ଦେବାର ବ୍ୟବସ୍ଥା ହୋଇଛି ।

## ଓଡ଼ିଶାର ଚାରିଜଣ କୃତୀ ଶିଳ୍ପୀଙ୍କ ଜାତୀୟ ପୁରସ୍କାର ଲାଭ

୧୯୮୪ ଓ ୮୫ ମସିହାପାଇଁ କୃତୀ ଶିଳ୍ପୀମାନଙ୍କ ନିମନ୍ତେ ଜାତୀୟ ପୁରସ୍କାର ଘୋଷିତ ହୋଇଛି । ୧୯୮୪ ସାଲ ... ଜାତୀୟ ପୁରସ୍କାର ଘୋଷିତ ହୋଇଛି । ୧୯୮୪ ସାଲ ପାଇଁ କବାଟ ଓ ପୌତୁକ ପେଟି ... ଶିଳ୍ପୀ ଶ୍ରୀ ଉର୍ଜ୍ଜର ନାୟକ

ଏହି ପୁରସ୍କାର ଲାଭକରିବା ନିମନ୍ତେ ଯୋଗ୍ୟ ବିବେଚିତ ହୋଇଛନ୍ତି । ୧୯୮୫ ପାଇଁ ଓଡ଼ିଶାର ଢୋକ୍ରା ଶିଳ୍ପୀ ଶ୍ରୀ ହରି ପ୍ରଧାନ, କାଠ ଖୋଦେଇ ଶିଳ୍ପୀ ଶ୍ରୀ ଭଗବାନ ସୁବୁଦ୍ଧି ଓ ପଟ୍ଟଶିଳ୍ପୀ ଶ୍ରୀ ଅର୍ଜୁନ ମହାରଣା ଏହି ପୁରସ୍କାର ପାଇବେ । ପୁରସ୍କାର ସ୍ୱରୂପ ଶିଳ୍ପୀମାନଙ୍କୁ ପାଞ୍ଚହଜାର ଟଙ୍କା, ପାରମ୍ପରିକ ତାମ୍ରପତ୍ର ଓ ଅଙ୍ଗବସ୍ତ୍ର ପ୍ରଦାନ କରାଯିବ ।

ଦୁଇ ବର୍ଷରେ ସମଗ୍ର ଦେଶରୁ ୫୪ଜଣ କୃତୀଶିଳ୍ପୀ ଜାତୀୟ ପୁରସ୍କାର ପାଇବା ନିମନ୍ତେ ମନୋନୀତ ହୋଇଛନ୍ତି । ୧୯୮୪ରେ ୨୭ଜଣ ଓ ତା' ପରବର୍ଷ ୨୭ଜଣଙ୍କ ନାମ ଏହି ପୁରସ୍କାର ତାଲିକାରେ ଅଛି । ଏତଦ୍‌ବ୍ୟତୀତ ୧୬ଜଣ ଶିଳ୍ପୀଙ୍କୁ ଯୋଗ୍ୟତାସୂଚକ ପ୍ରମାଣପତ୍ର ଦିଆଯିବ ।

୧୯୬୫ରୁ ଗତ ୨୦ବର୍ଷ ମଧ୍ୟରେ ଜାତୀୟ ପୁରସ୍କାର ପାଇଁ ଦେଶବ୍ୟାପୀ ୩୫୧ଜଣ କୃତୀଶିଳ୍ପୀଙ୍କୁ ବଛା ଯାଇଛି । ଏଥିରେ ଓଡ଼ିଶାର ୨୧ଜଣ ଶିଳ୍ପୀ ଅନ୍ତର୍ଭୁକ୍ତ । ରାଜ୍ୟର ଜଣେ ମହିଳା ଶିଳ୍ପୀ ମଧ୍ୟ ଏହି ପୁରସ୍କାର ଲାଭ କରିଛନ୍ତି ।

## ବି: ଡ଼ି: ଏ: ଦ୍ୱାରା ଘରଭଙ୍ଗା

୧୯୮୨ର ଓଡ଼ିଶା ଡ଼େଭେଲପ୍‌ମେଣ୍ଟ ଅଥରିଟି ଆଇନ ଅନୁଯାୟୀ ନକ୍‌ସା ଅନୁମୋଦିତ ନହୋଇ ନିର୍ମିତ ହୋଇଥିବା ୫୬୯ଟି ଗୃହକୁ ଭୁବନେଶ୍ୱର ଉନ୍ନୟନ କର୍ତ୍ତୃପକ୍ଷ (ବି: ଡ଼ି: ଏ:) ଭାଙ୍ଗି ଦେଇଛନ୍ତି । ଏହିସବୁ ଘର ମଧ୍ୟରେ ଜଟଣୀରେ ଭଙ୍ଗାଯାଇଥିବା ଗୋଟିଏ ଅର୍ଦ୍ଧନିର୍ମିତ ପକ୍‌କା ଘର ସମେତ ୧୩ଟି ପକ୍‌କା ଘର ଅନ୍ତର୍ଭୁକ୍ତ । ଅବଶିଷ୍ଟ ୫୬୮ଟି ଘର ଭୁବନେଶ୍ୱର ଅଂଚଳରେ ବେଆଇନ ଭାବରେ ନିର୍ମିତ ହୋଇଥିଲା ।

ଏଠାରେ ଉଲ୍ଲେଖ କରାଯାଇପାରେ ଯେ ୧୯୮୩ ସେପ୍‌ଟେମ୍ବର ମାସଠାରୁ ପ୍ରଚଳିତ ହୋଇଥିବା ଓଡ଼ିଶା ଡ଼େଭେଲପ୍‌ମେଣ୍ଟ ଅଥରିଟି ଅନୁସାରେ ଭୁବନେଶ୍ୱର, ଖୋର୍ଦ୍ଧା ଓ ଜଟଣୀ ମାଷ୍ଟରପ୍ଲାନ୍ ଅଂଚଳରେ ଗୃହ ନିର୍ମାଣ କରିବା ପୂର୍ବରୁ ଉକ୍ତ ଉନ୍ନୟନ କର୍ତ୍ତୃପକ୍ଷଙ୍କଠାରୁ ନିର୍ମାଣ-ନକ୍‌ସା ଅନୁମୋଦନ କରାଇବା ଆବଶ୍ୟକ । ଅନୁମୋଦନ ନଥାଇ କୌଣସି ଗୃହ ନିର୍ମିତ ହୋଇଥିଲେ, ତାହାକୁ ଭାଙ୍ଗିଦେବା ପାଇଁ ଉନ୍ନୟନ କର୍ତ୍ତୃପକ୍ଷଙ୍କର ଅଧିକାର ରହିଛି । ବେଆଇନଭାବେ ନିର୍ମିତ ଗୃହକୁ ଭାଙ୍ଗିବା ପୂର୍ବରୁ ଗୃହ ନିର୍ମାଣ କରିଥିବା ବ୍ୟକ୍ତିଙ୍କୁ ନୋଟିସ୍ ଦିଆଯାଇ ସେପରି ଗୃହକୁ ଭାଙ୍ଗିଦେବା ପାଇଁ ସୁଯୋଗ ଦିଆଯାଇଥାଏ । ସଂପୃକ୍ତବ୍ୟକ୍ତି ତାହା ନକଲେ, ବି: ଡ଼ି: ଏ: ସେହିସବ୍ ଗୃହ ଭାଙ୍ଗିବାକୁ ବାଧ୍ୟ ହୁଅନ୍ତି ।

ଉକ୍ତ ସହରାଂଚଳଗୁଡ଼ିକୁ ସୁନ୍ଦର କରିବାଲାଗି ଯୋଜନାବଦ୍ଧ ଭାବରେ ଗୃହ ନିର୍ମାଣ କରିବା ଆବଶ୍ୟକ ହୋଇଥିବା ଦୃଷ୍ଟିରୁ ନକ୍‌ସା ଅନୁମୋଦନ କରି ଗୃହ ନିର୍ମାଣ କରିବାପାଇଁ ବି: ଡ଼ି: ଏ: ତରଫରୁ ପରାମର୍ଶ ଦିଆଯାଉଛି ।

---

## ବୁଣାକାରମାନଙ୍କ ପାଇଁ ........

ପ୍ରସ୍ତାବିତ କାର୍ଯ୍ୟକ୍ରମ ମାଧ୍ୟମରେ ତଫସିଲ୍‌ଭୁକ୍ତ ଜାତିର ବୁଣାକାରମାନଙ୍କର ଉନ୍ନତି ନିମନ୍ତେ ବ୍ୟବସ୍ଥା କରାଯାଇଛି ।

ଏହି କାର୍ଯ୍ୟକ୍ରମରେ ପୁରାତନ ତନ୍ତକୁ ଆଧୁନିକୀକରଣ ସହାୟକ ଆସବାବପତ୍ର ଯୋଗାଇ ଦେବା ସଂଗେ ସଂଗେ ତନ୍ତ ନଥିବା ବୁଣାକାରମାନଙ୍କୁ ଉନ୍ନତ ଧରଣର ତନ୍ତ ଯୋଗାଇ ଦିଆଯାଇଛି । ଆବଶ୍ୟକ ଅଗ୍ନି ନିରୋଧ ଛାତ ବିଶିଷ୍ଟ ତନ୍ତଶାଳା ନିର୍ମାଣ ପାଇଁ ଏବଂ ତନ୍ତଶାଳାର ବିଦ୍ୟୁତ୍‌କରଣ ସକାଶେ ସାହାଯ୍ୟ ଦିଆଯାଉଛି ।

ଏସମସ୍ତ କାର୍ଯ୍ୟପାଇଁ ମୋଟ୍ ଖର୍ଚ୍ଚର ଶତକଡ଼ା ୭୫ଭାଗ ସାହାଯ୍ୟ ଆକାରରେ ଦେବାର ବ୍ୟବସ୍ଥା କରାଯାଇଛି । ଏହି ବୁଣାକାରମାନଙ୍କର ସ୍ୱତନ୍ତ୍ର ସମବାୟ ସମିତିମାନ ଗଠନ କରାଯାଇ ଏହା ମାଧ୍ୟମରେ ସୂତା ଯୋଗାଇଦେବା ଏବଂ ଉତ୍ପନ୍ନ ବସ୍ତ୍ରର ବିକ୍ରୟ ବ୍ୟବସ୍ଥା ମଧ୍ୟ କରାଯାଉଛି । ଉନ୍ନତ ଧରଣର ବୟନ କାର୍ଯ୍ୟପାଇଁ ବୈଷୟିକ ଜ୍ଞାନ ବୃଦ୍ଧି ସକାଶେ ତାଲିମର ବ୍ୟବସ୍ଥା ମଧ୍ୟ କରାଯାଇଛି । ଚଳିତବର୍ଷ ୫୦୦ଜଣ ବୁଣାକାରଙ୍କୁ ତାଲିମ ଦେବା ସଂଗେ ସଂଗେ ମୋଟ୍ ୨,୧୩୩ଟି ବୁଣାକାର ପରିବାରଙ୍କୁ ସାହାଯ୍ୟ ଦେବାର ବ୍ୟବସ୍ଥା କରାଯାଉଛି ।

ଏହି କାର୍ଯ୍ୟକ୍ରମରେ ଚଳିତ ବର୍ଷ ମୋଟ୍‌ରେ ୭୭ଲକ୍ଷ ୪୭ ହଜାର ଟଙ୍କା ଖର୍ଚ୍ଚ ଅଟକଳ କରାଯାଉଛି । ସେଥିମଧ୍ୟରୁ ସ୍ୱତନ୍ତ୍ର କେନ୍ଦ୍ରୀୟ ସାହାଯ୍ୟ ପାଣ୍ଠିରୁ ୪୫ଲକ୍ଷ ଟଙ୍କା ଏବଂ କେନ୍ଦ୍ର ଓ ରାଜ୍ୟ ଯୋଜନା ପାଣ୍ଠିରୁ ୧୦ଲକ୍ଷ ୬୨ ହଜାର ଟଙ୍କା ବ୍ୟୟ କରାଯିବ । ଅବଶିଷ୍ଟ ୨୧ଲକ୍ଷ ୮୫ ହଜାର ଟଙ୍କା ଋଣ ବାବଦରେ ଯୋଗାଇ ଦିଆଯିବ ।

## ପେନ୍‌ସନ୍ ମଂଜୁର ପାଇଁ ସରଳୀକରଣ ପଦ୍ଧତି

ଅବସରପ୍ରାପ୍ତ ସରକାରୀ କର୍ମଚାରୀମାନଙ୍କ ପେନ୍‌ସନ୍ ଓ ଗ୍ରାଚ୍ୟୁଟି ପ୍ରଭୃତି କିପରି ଶୀଘ୍ର ମଂଜୁର କରାଯାଇ ପାରିବ, ସେ ଦିଗରେ ସରକାର କେତେକ ପଦକ୍ଷେପ ଗ୍ରହଣ କରିଛନ୍ତି । କୌଣସି କାରଣରୁ ଯଦି ଜଣେ କର୍ମଚାରୀଙ୍କର ଯଥା ସମୟରେ ପେନ୍‌ସନ୍ ଓ ଗ୍ରାଚ୍ୟୁଟି ଚୂଡ଼ାନ୍ତ କରି ମଂଜୁର କରିବା ସମ୍ଭବ ନହୁଏ, ତା'ହେଲେ ତାଙ୍କୁ ଅବସର ଗ୍ରହଣ କରିବା ପୂର୍ବରୁ ଅସ୍ଥାୟୀ (ପ୍ରୋଭିଜନାଲ) ପେନ୍‌ସନ୍ ଓ ଗ୍ରାଚ୍ୟୁଟି ମଂଜୁରକରି ଦେବାପାଇଁ ସରକାର ନିଷ୍ପତ୍ତି କରିଛନ୍ତି । ତଦନୁଯାୟୀ ୧୯୮୬ ଜାନୁଆରୀ ମାସରେ ଅର୍ଥ ବିଭାଗର ଏକ ନିର୍ଦ୍ଦେଶନାମା ପ୍ରକାଶ କରିଥିଲେ । ମାତ୍ର ଏହାକୁ କାର୍ଯ୍ୟକାରୀ କରିବାରେ କେତେକ ଅସୁବିଧା ହେଉଥିବାରୁ, ବିଶେଷତଃ ଏଥିପାଇଁ କୌଣସି ଫର୍ମ ନିର୍ଦ୍ଧାରିତ ହୋଇନଥିବାରୁ ମଂଜୁର କରୁଥିବା କର୍ତ୍ତୃପକ୍ଷଙ୍କୁ ବହୁ ଅସୁବିଧାର ସମ୍ମୁଖୀନ ହେବାକୁ ପଡୁଥିଲା । ଏହାର ଦୂରୀକରଣ କରିବା ଏବଂ କର୍ମଚାରୀଙ୍କ ଅସ୍ଥାୟୀ ପେନ୍‌ସନ୍, ଗ୍ରାଚ୍ୟୁଟି ଓ ପେନ୍‌ସନ୍‌ରୁ 'କମ୍ୟୁଟ୍' କରାଯାଉଥିବା ଅର୍ଥ ମଂଜୁର କରିବାପାଇଁ ଅର୍ଥ ବିଭାଗ ତରଫରୁ 'ଓ:ପି:ଆର୯-ଡ଼ି ଫର୍ମ' ପ୍ରଚଳନ କରାଯାଇଛି । ଏହି ନିର୍ଦ୍ଧାରିତ ଫର୍ମକୁ ପେନ୍‌ସନ୍ ମଂଜୁର କରୁଥିବା କର୍ତ୍ତୃପକ୍ଷ ଅସ୍ଥାୟୀ ପେନ୍‌ସନ୍ ଇତ୍ୟାଦି ମଂଜୁର କରିବା ବେଳେ ବ୍ୟବହାର କରିପାରିବେ ।

ଯଦି କୌଣସି ଅନିବାର୍ଯ୍ୟ କାରଣରୁ ଅବସରପ୍ରାପ୍ତ ସରକାରୀ କର୍ମଚାରୀଙ୍କ ପେନ୍‌ସନ୍ ଓ ଗ୍ରାଚ୍ୟୁଟିର ପରିମାଣ ଚୂଡ଼ାନ୍ତ

ଅବସର ଗ୍ରହଣ କରିବା ଦିନରୁ ୬ମାସ ମଧ୍ୟରେ ହିସାବ କରାଯାଇ ନପାରେ, ତେବେ ସେ କ୍ଷେତ୍ରରେ ସଂପୃକ୍ତ କର୍ତ୍ତୃପକ୍ଷ ସେହି କର୍ମଚାରୀଂକର ଚୂଡ଼ାନ୍ତ (ଫାଇନାଲ) ପେନ୍‌ସନ୍ ଓ ଗ୍ରାଚ୍ୟୁଟି ଇତ୍ୟାଦି ଦେଇଦେବା ପାଇଁ ନିର୍ଦ୍ଧାରିତ 'ଓ: ପି:ଆର:-୧୦' ଫର୍ମରେ ଏ: ଜି: ଙ୍କୁ ଲେଖି ଜଣାଇ ଦେବେ ବୋଲି ସଂପ୍ରତି ଅର୍ଥ ବିଭାଗ ପକ୍ଷରୁ ବିଭିନ୍ନ ବିଭାଗ, ବିଭାଗୀୟ ମୁଖ୍ୟ, ଜିଲ୍ଲା କର୍ତ୍ତୃପକ୍ଷ ଏବଂ ଏ: ଜି: ପ୍ରମୁଖଙ୍କୁ ପରାମର୍ଶ ଦିଆଯାଇଛି ।

## ଷ୍ଟାଡିୟମ ଓ ଗ୍ରାମ୍ୟ କ୍ରୀଡ଼ାକେନ୍ଦ୍ର ନିର୍ମାଣ

ପ୍ରତ୍ୟେକ ଜିଲ୍ଲା ସଦର ମହକୁମାରେ ଅନ୍ୟୁନ ଗୋଟିଏ ଲେଖାଏଁ କ୍ଷୁଦ୍ର ଷ୍ଟାଡିୟମ୍ ଏବଂ ପ୍ରତ୍ୟେକ ବ୍ଲକ୍‌ରେ ଗୋଟିଏ ଲେଖାଏଁ ଗ୍ରାମ୍ୟ କ୍ରୀଡ଼ାକେନ୍ଦ୍ର ନିର୍ମାଣ କରିବା ପାଇଁ ଓଡ଼ିଶା ସରକାର ବ୍ୟାପକ କାର୍ଯ୍ୟକ୍ରମ ହାତକୁ ନେଇଥିବାରୁ ଏ ଦିଗରେ ପର୍ଯ୍ୟାପ୍ତ ଆର୍ଥିକ ସହାୟତା କରିବା ଲାଗି ସୂଚନା ଓ ଲୋକ ସଂପର୍କ ରାଷ୍ଟ୍ରମନ୍ତ୍ରୀ ଶ୍ରୀ ଶରତ ରାଉତ କେନ୍ଦ୍ର ସରକାରଙ୍କ ଠାରେ ଦୃଢ଼ ଦାବୀ କରିଛନ୍ତି ।

ଗତ ଜୁନ୍ ୨୦ ତାରିଖରେ ଦିଲ୍ଲୀଠାରେ ଅନୁଷ୍ଠିତ ରାଜ୍ୟ ଓ କେନ୍ଦ୍ର ଶାସିତ ଅଞ୍ଚଳ ଯୁବ କଲ୍ୟାଣ ଓ କ୍ରୀଡ଼ା ମନ୍ତ୍ରୀଙ୍କ ଦୁଇଦିନିଆ ସମ୍ମିଳନୀରେ ଉଦ୍‌ବୋଧନ ଦେଇ ଶ୍ରୀ ରାଉତ କହିଲେ ଯେ ଷ୍ଟାଡିୟମ୍‌ଗୁଡ଼ିକରେ ଜିଲ୍ଲାସ୍ତରୀୟ କ୍ରୀଡ଼ା ପ୍ରତିଯୋଗିତା ଆୟୋଜିତ ହେବ ଏବଂ ଷ୍ଟାଡିୟମ୍‌ର ଚତୁର୍ପାର୍ଶ୍ୱରେ ବଛା ବଛା ଖେଳାଳୀଙ୍କ ପାଇଁ କ୍ରୀଡ଼ା ହଷ୍ଟେଲ-ମାନ ନିର୍ମାଣ କରାଯିବ । ବର୍ତ୍ତମାନ ସୁଦ୍ଧା ତିନୋଟି ଏଭଳି ହଷ୍ଟେଲ ନିର୍ମିତ ହୋଇଛି ଏବଂ ଜିଲ୍ଲାସ୍ତରୀୟ ଷ୍ଟାଡିୟମ୍ ଗୁଡ଼ିକ ନିର୍ମାଣାଧୀନ ଅଛି ବୋଲି ଦର୍ଶାଇ ଶ୍ରୀ ରାଉତ କହିଲେ ଯେ ଅର୍ଥାଭାବ ଯୋଗୁଁ ଏଗୁଡ଼ିକ ପୂର୍ଣ୍ଣାଙ୍ଗ ହୋଇପାରୁ ନାହିଁ । ଏପରି ପ୍ରତ୍ୟେକ ଷ୍ଟାଡିୟମ୍‌ର ନିର୍ମାଣ କାର୍ଯ୍ୟ ସଂପୂର୍ଣ୍ଣ କରିବା ବାବଦରେ ମିଳୁଥିବା ୫ ଲକ୍ଷ ଟଙ୍କା ଲେଖାଏଁ କେନ୍ଦ୍ରୀୟ ସାହାଯ୍ୟ ଯଥେଷ୍ଟ ହେଉନଥିବାରୁ ଏହାର ପରିମାଣ ୧୦ ଲକ୍ଷ ଟଙ୍କାକୁ ବୃଦ୍ଧି କରିବା ପାଇଁ ସେ ଦାବୀ କରିଥିଲେ । ଗତବର୍ଷ ଗ୍ରାମ୍ୟ କ୍ରୀଡ଼ାକେନ୍ଦ୍ର ଖେଳ ପଡ଼ିଆଗୁଡ଼ିକର ଉନ୍ନତି ପାଇଁ ମିଳିଥିବା ୪ ଲକ୍ଷ ୬୬ ହଜାର ଟଙ୍କା କେନ୍ଦ୍ରୀୟ ସାହାଯ୍ୟ ଅତ୍ୟନ୍ତ ସ୍ୱଳ୍ପ ହେଉଥିବାରୁ ଚଳିତ ବର୍ଷ ଏ ବାବଦରେ ଯଥେଷ୍ଟ ପରିମାଣର ସାହାଯ୍ୟ ଦେବାକୁ ଶ୍ରୀ ରାଉତ ଦାବୀ କରିଥିଲେ । କ୍ରୀଡ଼ାର ବିକାଶ ଏବଂ ଏହାର ମାନବୃଦ୍ଧି କରିବା ଲାଗି ଓଡ଼ିଶା ସରକାର ବ୍ୟାପକ କାର୍ଯ୍ୟକ୍ରମମାନ ହାତକୁ ନେଇଥିବା ଦୃଷ୍ଟିରୁ ଉତ୍ସାହୀ ଯୁବକ ଯୁବତୀମାନଙ୍କୁ ବିଭିନ୍ନ କ୍ରୀଡ଼ାରେ ଉପଯୁକ୍ତ ତାଲିମ ଦେବା ଉପରେ ସେ ଗୁରୁତ୍ୱ ଆରୋପ କରିଥିଲେ । ପାଟିଆଲାର ଜାତୀୟ କ୍ରୀଡ଼ା ପ୍ରତିଷ୍ଠାନରୁ ଆବଶ୍ୟକ ସଂଖ୍ୟକ ତାଲିମପ୍ରାପ୍ତ ବ୍ୟକ୍ତି ମିଳୁ ନଥିବା ଦର୍ଶାଇ ଓଡ଼ିଶାରେ ଏପରି ଏକ ତାଲିମ ପ୍ରତିଷ୍ଠାନ ସ୍ଥାପନ କରିବାକୁ ଦାବୀ କରି ଶ୍ରୀ ରାଉତ କହିଲେ ଯେ ସେଥିପାଇଁ ରାଜ୍ୟ ସରକାର ଜମି ସମେତ ଅନ୍ୟାନ୍ୟ ସୁବିଧା ସୁଯୋଗ ଯୋଗାଇ ଦେବେ । ବିଶେଷତଃ ରାଜ୍ୟସ୍ତରୀୟ ଫୁଟବଲ୍ ଓ ହକି ଖେଳାଳୀମାନଙ୍କୁ ତାଲିମ ଦେବାପାଇଁ ଜାତୀୟ ସ୍ତରର ଉତ୍କୃଷ୍ଟ ତାଲିମ ଦାତାଙ୍କୁ ନିୟୋଜିତ୍ କରିବାକୁ ସେ କେନ୍ଦ୍ର ସରକାରଙ୍କ ଦୃଷ୍ଟି ଆକର୍ଷଣ କରିଥିଲେ ।

ରାଜ୍ୟ ସରକାର ମହିଳାଙ୍କ ସମେତ ସମାଜର ଦୁର୍ବଳ ଶ୍ରେଣୀ ଲୋକଙ୍କୁ ମଧ୍ୟ ବିଭିନ୍ନ କ୍ରୀଡ଼ା କାର୍ଯ୍ୟକ୍ରମରେ ସଂଶ୍ଳିଷ୍ଟ କରୁଛନ୍ତି ବୋଲି ସୂଚନା ଦେଇ ମନ୍ତ୍ରୀ କହିଲେ ଯେ ରାଉରକେଲାରେ ହକି ଖେଳାଳୀଙ୍କ ପାଇଁ ନିର୍ମିତ ହଷ୍ଟେଲ୍‌ରେ ୧୪ ବର୍ଷରୁ କମ୍ ବୟସର ୨୨ ଜଣ ଆଦିବାସୀ ବାଳକ ତାଲିମ ପାଉଛନ୍ତି । କ୍ରୀଡ଼ା ପ୍ରତି ଅଧିକ ଆଗ୍ରହ ସୃଷ୍ଟି କରିବା ଉଦ୍ଦେଶ୍ୟରେ ରାଜ୍ୟ ସରକାର କ୍ରୀଡ଼ାରୁ ଅବ୍ୟାହତି ନେଇଥିବା ବିଶିଷ୍ଟ ତଥା ଅସମର୍ଥ ଖେଳାଳୀଙ୍କୁ ଭତ୍ତା ଦେବା, ଦରିଦ୍ର ଖେଳାଳୀଙ୍କୁ ଆର୍ଥିକ ସାହାଯ୍ୟ ଦେବା ଏବଂ ରାଜ୍ୟ ଓ ଜାତୀୟ ସ୍ତରରେ କୃତିତ୍ୱ ଲାଭ କରିବା ଖେଳାଳୀଙ୍କୁ କର୍ମ ନିଯୁକ୍ତି ଯୋଗାଇ ଦେବା ଇତ୍ୟାଦି କେତେକ କାର୍ଯ୍ୟକ୍ରମ ସଂପର୍କରେ ସେ ସୂଚନା ଦେଇଥିଲେ । ଭାଷଣ ପ୍ରସଙ୍ଗରେ ଶ୍ରୀ ରାଉତ କହିଲେ ଯେ ଜିଲ୍ଲାଠାରୁ ଜାତୀୟ ସ୍ତର ଯାଏ ସ୍ୱେଚ୍ଛାସେବୀ ଅନୁଷ୍ଠାନମାନେ ବିଭିନ୍ନ କ୍ରୀଡ଼ା କାର୍ଯ୍ୟକ୍ରମ ହାତକୁ ନେଉଛନ୍ତି । କିନ୍ତୁ ବହୁ କ୍ଷେତ୍ରରେ ପରିକଳ୍ପନାଗତ ତ୍ରୁଟି ପରିଲକ୍ଷିତ ହେଉଥିବାରୁ କ୍ରୀଡ଼ାର ବିକାଶ ବାଧାପ୍ରାପ୍ତ ହେଉଛି ବୋଲି ମତ ବ୍ୟକ୍ତ କରିଥିଲେ । ଶ୍ରୀ ରାଉତ କହିଲେ ଯେ ଶୃଙ୍ଖଳିତ ଭାବରେ କ୍ରୀଡ଼ା କାର୍ଯ୍ୟକ୍ରମକୁ କାର୍ଯ୍ୟକାରୀ କରିବାକୁ ହେଲେ କ୍ରୀଡ଼ା ବିଷୟଟି ରାଜ୍ୟ ଓ କେନ୍ଦ୍ର ସରକାରଙ୍କ ମିଳିତ ତାଲିକାଭୁକ୍ତ ହେବା ଆବଶ୍ୟକ ।

ଏହି ସମ୍ମିଳନୀରେ ଶ୍ରୀ ରାଉତ ଓଡ଼ିଶାରେ ଯୁବ କଲ୍ୟାଣ ଓ ଯୁବଶକ୍ତିର ଉପଯୋଗ ଦିଗରେ କାର୍ଯ୍ୟକାରୀ ହେଉଥିବା କେତେ କାର୍ଯ୍ୟକ୍ରମ ସଂପର୍କରେ ଉଲ୍ଲେଖ କରିଥିଲେ । ସେ କହିଲେ ଯେ ରାଜ୍ୟରେ ଏନ୍ : ଏସ୍ : ଏସ୍ : ଜରିଆରେ ନିରକ୍ଷରତା ଦୂରୀକରଣ, ବିଶେଷତଃ ମହିଳାଙ୍କ ସାକ୍ଷର କାର୍ଯ୍ୟକ୍ରମ ଉପରେ ବିଶେଷ ଗୁରୁତ୍ୱ ଆରୋପ କରାଯାଇଛି ଏବଂ ସେଥିପାଇଁ ୧୨,୫୦୦ ସ୍ୱେଚ୍ଛାସେବୀ ନିୟୋଜିତ ହୋଇଛନ୍ତି । କଲେଜ ମାନଙ୍କରେ ଏନ୍ : ଏସ୍ : ଏସ୍ : ଯୋଜନା ପ୍ରତି ଉତ୍ସାହ ସୃଷ୍ଟି ହେଉଥିବାରୁ ଏହାର ଅଧିକ ପ୍ରସାର ଏବଂ ମହିଳା ସାକ୍ଷର କାର୍ଯ୍ୟକ୍ରମକୁ ବ୍ୟାପକ କରିବା ପାଇଁ ଅଧିକ ଅର୍ଥ ବରାଦ କରିବାକୁ ସେ ଅନୁରୋଧ କରିଥିଲେ । ଏହା ବ୍ୟତୀତ ରାଜ୍ୟର ୧୦ଟି ଜିଲ୍ଲାରେ ଥିବା ନେହେରୁ-ଯୁବକ କେନ୍ଦ୍ର ଗୁଡ଼ିକର ସହାୟତାରେ ଗ୍ରାମାଞ୍ଚଳ ଯୁବକଙ୍କୁ ବୃତ୍ତିଗତ ତାଲିମ ଦେବା ସଙ୍ଗେ ସଙ୍ଗେ ଆଲୋଚନାଚକ୍ର ଓ ସାଂସ୍କୃତିକ କାର୍ଯ୍ୟକ୍ରମ-ମାନ ଆୟୋଜିତ ହେଉଛି । ଅବଶିଷ୍ଟ ତିନୋଟି ଜିଲ୍ଲାର ତିନୋଟି ନୂତନ କେନ୍ଦ୍ର ଏବଂ କୋରାପୁଟ, କଟକ ଓ ସମ୍ବଲପୁର ଭଳି ଜନବହୁଳ ତଥା ବୃହତ୍ ଜିଲ୍ଲାରେ ଦ୍ୱିତୀୟ କେନ୍ଦ୍ର ସ୍ଥାପନ ପାଇଁ କେନ୍ଦ୍ର ସରକାର ମଞ୍ଜୁର କରିବା ଲାଗି ସେ ନିବେଦନ କରିଥିଲେ ।

ଯୁବଗୋଷ୍ଠୀ ପାଇଁ ଉପାଦେୟ କାର୍ଯ୍ୟକ୍ରମ ପ୍ରସ୍ତୁତ କରିବା ବେଳେ ଶିକ୍ଷାନୁଷ୍ଠାନ ବାହାରେ ରହି ଯାଉଥିବା ଗ୍ରାମାଞ୍ଚଳର ବହୁ ସଂଖ୍ୟକ ଯୁବକଙ୍କୁ ଦୃଷ୍ଟିରେ ରଖିବା ଉଚିତ ବୋଲି ଶ୍ରୀ ରାଉତ ମତ ବ୍ୟକ୍ତ କରିଥିଲେ । ସେଥିପାଇଁ ଗ୍ରାମାଞ୍ଚଳରେ ଉପଯୁକ୍ତ ଯୁବ ଅନୁଷ୍ଠାନ ଗଠନ କରିବା ଉପରେ ଆରୋପ କରି ସେ କହିଲେ ଯେ ଗ୍ରାମାଞ୍ଚଳରେ ଅଚଳ ହୋଇ ରହିଥିବା ବହୁ ଯୁବକ ସଂଘକୁ ପୁନରାୟ କାର୍ଯ୍ୟକ୍ଷମ କରାଇବାକୁ ହେବ । ସେମାନଙ୍କୁ ସାଂପ୍ରଦାୟିକ ସଦ୍ [illegible] ପରିମଳ ଓ ପରିବେଶ ସୁରକ୍ଷା ଇତ୍ୟାଦି କାର୍ଯ୍ୟକ୍ରମଗୁଡ଼ିକ [illegible] ଉପଯୋଗ

କରିବାକୁ ହେଲେ ଅଧିକ ଆର୍ଥିକ ସାହାଯ୍ୟ ଆବଶ୍ୟକ ହେବ ବୋଲି ସେ କହିଥିଲେ । ଯୁବକ ସଂଘଗୁଡ଼ିକୁ ନେହେରୁ ଯୁବ କେନ୍ଦ୍ର ସହିତ ସଂଶ୍ଳିଷ୍ଟ କରାଗଲେ ଜିଲ୍ଲା ସ୍ତରରେ ସଂଘଗୁଡ଼ିକର କାର୍ଯ୍ୟ ସୁପରିଚାଳିତ ହୋଇପାରିବ ବୋଲି ସେ ମତବ୍ୟକ୍ତ କରିଥିଲେ ।

ଯୁବ ହଷ୍ଟେଲ କାର୍ଯ୍ୟକ୍ରମର ଉପାଦେୟତା ସଂପର୍କରେ ଉଲ୍ଲେଖ କରି ଶ୍ରୀ ରାଉତ କହିଲେ ଯେ ପୁରୀର ଯୁବ ହଷ୍ଟେଲଟିର ଲୋକପ୍ରିୟତା ଦୃଷ୍ଟିରୁ ଗୋପାଳପୁରଠାରେ ଅନ୍ୟ ଏକ ହଷ୍ଟେଲ ନିର୍ମାଣ ପାଇଁ କେନ୍ଦ୍ରୀୟ ମଞ୍ଜୁରୀ ମିଳିଛି । ଭୁବନେଶ୍ୱର, ଯଶୀପୁର, ଓ କୋରାପୁଟ ସମେତ ରାଜ୍ୟର ଅନ୍ୟ କେତେକ ପର୍ଯ୍ୟଟନ କେନ୍ଦ୍ରରେ ଏପରି ହଷ୍ଟେଲ ନିର୍ମାଣ କରିବାକୁ ସେ କେନ୍ଦ୍ର ସରକାରଙ୍କ ଦୃଷ୍ଟି ଆକର୍ଷଣ କରିଥିଲେ ।

ଯୁବକମାନଙ୍କ ମଧ୍ୟରେ ଦେଶାତ୍ମବୋଧ ସୃଷ୍ଟି କରିବା ସେମାନଙ୍କୁ ଦେଶର ସାଂସ୍କୃତିକ ପରଂପରା ସଂପର୍କରେ ଅବହିତ କରାଇବା ଉଦ୍ଦେଶ୍ୟରେ ସରକାରୀ ଉଦ୍ୟମରେ ଯୁବ ଶିବିରମାନ ଆୟୋଜନ କରିବାକୁ ଶ୍ରୀ ରାଉତ ଦାବୀ କରିଥିଲେ ।

ଏହି ସମ୍ମିଳନୀରେ ଓଡ଼ିଶାର କ୍ରୀଡ଼ା ବିଭାଗ ଶାସନ ସଚିବ ଶ୍ରୀ ସମର ବଲ୍ଲଭ ମହାପାତ୍ର ଓ ବିଭାଗୀୟ ଯୁଗ୍ମ ନିର୍ଦ୍ଦେଶକ ଶ୍ରୀ ଏନ୍. ଏନ୍. ମିତ୍ର ଯୋଗ ଦେଇଥିଲେ ।

## କାଠଯୋଡ଼ି ସେତୁ

ଝିଙ୍କିରିଆ-ବେଣ୍ଟକାର-ଖଣ୍ଡୁଲୀ ରାସ୍ତାରେ କଟକ ନିକଟବର୍ତ୍ତୀ କାଠଯୋଡ଼ି ନଦୀ ଉପରେ ନିର୍ମିତ ହେଉଥିବା ଉଚ ସେତୁର କାର୍ଯ୍ୟ ତ୍ୱରାନ୍ୱିତ ହେଉଛି ଏବଂ ଏହାକୁ ଆସନ୍ତା ବର୍ଷ ସେପ୍‌ଟେମ୍ବର ମାସ ସୁଦ୍ଧା ସଂପୂର୍ଣ୍ଣ କରିବାକୁ ଉଦ୍ୟମ ହେଉଛି । ପ୍ରାୟ ୨ କୋଟି ୭୮ ଲକ୍ଷ ଟଙ୍କା ବ୍ୟୟ ଅଟକଳରେ ଗତବର୍ଷ ମାର୍ଚ୍ଚ ମାସରୁ ନିର୍ମିତ ହେଉଥିବା ଏହି ସେତୁର ଦୈର୍ଘ୍ୟ ହେବ ୫୩୨ ମିଟର, ସେତୁରେ ୧୬ଟି ଫୁକାର ରହିବ ଏବଂ ଉଭୟ ପାର୍ଶ୍ୱରେ ୧,୪୩୨ ମିଟର ଦୈର୍ଘ୍ୟର ସଂଯୋଗକାରୀ ରାସ୍ତା ନିର୍ମିତ ହେବ ।

ସଂପ୍ରତି ପୂର୍ତ୍ତ ରାଷ୍ଟ୍ରମନ୍ତ୍ରୀ ମହମ୍ମଦ ମୁକାଫର୍ ହୋସେନ୍ ଖାଁ ସେତୁ ନିର୍ମାଣର ଅଗ୍ରଗତି ଓ ଆନୁଷଙ୍ଗିକ ସମସ୍ୟାବଳୀ ଅନୁଧ୍ୟାନ କରିବା ଲାଗି ସେଠାକୁ ପରିଦର୍ଶନରେ ଯାଇଥିଲେ । ବର୍ତ୍ତମାନ ୨ଟି କୂପ ଖନନ ହୋଇ ଅନ୍ୟ ୬ଟିର ଖନନ କାର୍ଯ୍ୟ ଚାଲିଛି ବୋଲି ସେ ଲକ୍ଷ୍ୟ କରିଥିଲେ । ସେହିପରି ଗୋଟିଏ ଡ଼କେଲ ଖୁଣ୍ଟ ନିର୍ମିତ ହୋଇସାରିଲାଣି ଏବଂ ଅନ୍ୟଗୁଡ଼ିକ ନିର୍ମାଣାଧୀନ ଅଛି । ଏହା ବ୍ୟତୀତ ୪୦ ଲକ୍ଷ ଟଙ୍କା ବ୍ୟୟରେ ୬୦ ମିଟର ଦୈର୍ଘ୍ୟର ଉଚ ସଂଯୋଗକାରୀ ରାସ୍ତା ନିର୍ମିତ ହୋଇଛି । କାରଖାନାରୁ ସିମେଣ୍ଟ ମିଳିବାରେ ଅସୁବିଧା ହେଉଥିବାରୁ ଡ଼କେଲ ଖୁଣ୍ଟ ନିର୍ମାଣ ଦିଗରେ ବିଳମ୍ବ ହେଉଥିବା ବିଷୟ ମନ୍ତ୍ରୀଙ୍କ ଦୃଷ୍ଟି ଆକର୍ଷଣ କରାଯାଇଥିଲା । ନିର୍ମାଣ କାର୍ଯ୍ୟ ଅବ୍ୟାହତ ରଖିବା ଲାଗି ଅନ୍ୟ ପୂର୍ତ୍ତ ଡିଭିଜନରୁ ଏବଂ ଆବଶ୍ୟକ ସ୍ଥଳେ ଅନ୍ୟ-କେଉଁ ସୂତ୍ରରେ ସିମେଣ୍ଟ ସଂଗ୍ରହ କରାଯାଉଛି ବୋଲି [illegible] ମାନେ ସୂଚନା ଦେଇଥିଲେ ।

ଏହି ସେତୁ ସଂପୂର୍ଣ୍ଣ ହେଲେ ବୟାଳିଶ ମୌଜା ଅଧିବାସୀଙ୍କର ଦୀର୍ଘ ଦିନର ଦାବୀ ପୂରଣ ହେବା ସଙ୍ଗେ ସଙ୍ଗେ କଟକ ସଦର ପଞ୍ଚାୟତ ସମିତି ଅନ୍ତର୍ଗତ ୫ଟି ଗ୍ରାମ ପଞ୍ଚାୟତ ସହିତ ବ୍ଲକ୍, ସଦର ସବ୍‌ଡିଭିଜନ ଓ ଜିଲ୍ଲା ସଦର ମହକୁମା ଗୁଡ଼ିକ ସହିତ ସବୁଦିନିଆ ରାସ୍ତା ଯୋଗାଯୋଗ ସ୍ଥାପିତ ହୋଇପାରିବ ।

## ସମ୍ଭାବ୍ୟ ବନ୍ୟା ପରିସ୍ଥିତିର ମୁକାବିଲା

ସମ୍ବଲପୁର ଜିଲ୍ଲାରେ ଓ ବନ୍ୟା ବାତ୍ୟାର ସମ୍ବାଦ ପ୍ରେରଣ ପାଇଁ ୧୦ଟି ଅସ୍ଥାୟୀ ବେତାର କେନ୍ଦ୍ର ପ୍ରତିଷ୍ଠା କରାଯିବାକୁ ସ୍ଥିର ହୋଇଛି । ପ୍ରାକୃତିକ ବିପର୍ଯ୍ୟୟର ସମ୍ବାଦ ଯେପରି ଯଥାଶୀଘ୍ର ସବ୍‌ଡିଭିଜନାଲ ଅଫିସରଙ୍କୁ ପ୍ରେରଣ କରାଯିବ, ସେଥିପାଇଁ ରାଜସ୍ୱ ବିଭାଗର କ୍ଷେତ୍ର କର୍ମଚାରୀ ଓ ଗୋଷ୍ଠୀ ଉନ୍ନୟନ ଅଧିକାରୀମାନଙ୍କୁ ନିର୍ଦ୍ଦେଶ ଦିଆଯାଇଛି । ଦୁର୍ବଳ ସ୍ଥାନ ଓ ଘାଇଗୁଡ଼ିକର ମରାମତି କାର୍ଯ୍ୟ ତୁରନ୍ତ କରିବାକୁ ଜଳସେଚନ ବିଭାଗର ନିର୍ବାହୀ ଯନ୍ତ୍ରୀମାନଙ୍କୁ ପରାମର୍ଶ ଦେବା ସଙ୍ଗେ ସଙ୍ଗେ ଜିଲ୍ଲାରେ ୧୭ଟି ବ୍ଲକ୍ ଓ ୨ଟି ପୌରାଂଚଳକୁ ବନ୍ୟା ପ୍ରପୀଡ଼ିତ ଅଞ୍ଚଳ ଭାବେ ଗ୍ରହଣ କରାଯାଇଥିବାରୁ ଏହିସବୁ ଅଞ୍ଚଳରେ ସ୍ୱାସ୍ଥ୍ୟଭିତ୍ତିକ କାର୍ଯ୍ୟକ୍ରମ ପାଇଁ ଆବଶ୍ୟକ ପରିମାଣର ଔଷଧ ବିପନ୍ନ ଲୋକଙ୍କ ନିମନ୍ତେ ଗଚ୍ଛିତ ରଖାଯାଇଛି । ସେହିପରି ବନ୍ୟାଞ୍ଚଳରେ ପଶୁ ଚିକିତ୍ସା କାର୍ଯ୍ୟକ୍ରମ ପାଇଁ ଆବଶ୍ୟକୀୟ ବ୍ୟବସ୍ଥା ଗ୍ରହଣ କରଯାଇଛି । ବନ୍ୟାଞ୍ଚଳକୁ ଖାଦ୍ୟ ଯୋଗାଣ ପାଇଁ ଜିଲ୍ଲାର ଦୁର୍ଗମ ଅଞ୍ଚଳରେ ଖାଦ୍ୟ ଜମା କରି ରଖାଯିବା ସଙ୍ଗେ ସଙ୍ଗେ ୧,୫୬୫ଟି ସରକାରୀ ଦୋକାନରେ ୫୦୦ ମେଟ୍ରିକ୍ ଟନ୍ ଗହମ ମହଜୁଦ ରଖାଯାଇଛି । ବନ୍ୟାଞ୍ଚଳରେ ଉଦ୍ଧାର ଓ ଖାଦ୍ୟ ଯୋଗାଣ କାର୍ଯ୍ୟ ପାଇଁ ୭୦ଟି ଟ୍ରକ୍ ଓ ୮୦ଟି ଜିପ୍ ରଖାଯାଇଛି ବୋଲି ସଂପ୍ରତି ସମ୍ବଲପୁରଠାରେ ଅନୁଷ୍ଠିତ ଜିଲ୍ଲା ପ୍ରାକୃତିକ ବିପର୍ଯ୍ୟୟ କମିଟି ବୈଠକରେ ପ୍ରକାଶ ପାଇଛି ।

## ସଂଖ୍ୟାଲଘୁ ଭାଷାଭାଷୀ ଛାତ୍ରଙ୍କ ଶିକ୍ଷା ସମସ୍ୟା

ଆନ୍ଧ୍ରପ୍ରଦେଶ ଶିକ୍ଷାମନ୍ତ୍ରୀ ଶ୍ରୀ ଜି. ମୁତୁ କ୍ରିଷ୍ଣାମା ନାଇଡ଼ ଏବଂ ଓଡ଼ିଶାର ଶିକ୍ଷା ଓ ଯୁବ କଲ୍ୟାଣ ମନ୍ତ୍ରୀ ଶ୍ରୀ ଯଦୁନାଥ ଦାସ ମହାପାତ୍ରଙ୍କ ମଧ୍ୟରେ ଗତ ଜୁନ୍ ୨୧ ତାରିଖରେ ଆନ୍ଧ୍ର ପ୍ରଦେଶ ବିଶାଖାପାଟଣାଠାରେ ଉଭୟ ରାଜ୍ୟରେ ବାସ କରୁଥିବା ସଂଖ୍ୟାଲଘୁ ଭାଷାଭାଷୀ ଛାତ୍ରଙ୍କ ପାଇଁ ଶିକ୍ଷାଦାନ ସଂପର୍କରେ ବିସ୍ତୃତ ଆଲୋଚନା ହୋଇଥିଲା । ଏହି ବୈଠକରେ ଉଭୟ ରାଜ୍ୟର ଶିକ୍ଷା ବିଭାଗ ପଦସ୍ଥ ଅଫିସରମାନେ ଯୋଗ ଦେଇଥିଲେ । ଉଭୟ ରାଜ୍ୟର ମନ୍ତ୍ରୀଙ୍କ ମଧ୍ୟରେ ଆଲୋଚନା ହୋଇ ଯେଉଁ ନିଷ୍ପତ୍ତି ହୋଇଛି, ସେଗୁଡ଼ିକ ହେଲା :—

ଆବଶ୍ୟକତା ଅନୁଯାୟୀ ଛାତ୍ରଙ୍କ ସର୍ବନିମ୍ନ ସଂଖ୍ୟାକୁ ଦୃଷ୍ଟିରେ ରଖି ଆନ୍ଧ୍ରରେ ଓଡ଼ିଆ ପ୍ରାଥମିକ ସ୍କୁଲ ଓ ଓଡ଼ିଶାରେ ତେଲୁଗୁ ପ୍ରାଥମିକ ସ୍କୁଲ କିମ୍ବା ସ୍ୱତନ୍ତ୍ର ଶ୍ରେଣୀ ଖୋଲାଯିବ । ଆନ୍ଧ୍ର ପ୍ରଦେଶରେ ଓଡ଼ିଆ ସ୍କୁଲ ପରିଦର୍ଶନ କରିବା ପାଇଁ ଜଣେ ପରିଦର୍ଶକଙ୍କୁ ନିଯୁକ୍ତି ଦିଆଯାଉଛି । ସେହିପରି ଓଡ଼ିଶାରେ

ତେଲୁଗୁ ଭାଷାରେ ଶିକ୍ଷା ଦିଆଯାଉଥିବା ସ୍କୁଲଗୁଡ଼ିକୁ ପରିଦର୍ଶନ କରିବା ପାଇଁ ସ୍କୁଲ ସବ୍-ଇନ୍‌ସ୍‌ପେକ୍ଟର ନିଯୁକ୍ତି ଲାଗି ଓଡ଼ିଶାର ଶିକ୍ଷାମନ୍ତ୍ରୀ ରାଜି ହୋଇଛନ୍ତି । ଉଭୟ ରାଜ୍ୟରେ ତେଲୁଗୁ ଓ ଓଡ଼ିଆ ଭାଷାରେ ଶିକ୍ଷାଦାନ ପାଇଁ ଆବଶ୍ୟକ ସ୍ଥଳେ ଅଧିକ ଶିକ୍ଷକ ନିଯୁକ୍ତି କରାଯିବ । ଓଡ଼ିଶାରେ ତେଲୁଗୁ ଭାଷାଭାଷୀ ଅଞ୍ଚଳରେ ତେଲୁଗୁ ଏବଂ ଆନ୍ଧ୍ରର ଓଡ଼ିଆ ଭାଷାଭାଷୀ ଅଞ୍ଚଳରେ ଓଡ଼ିଆ ଭାଷାରେ ଶିକ୍ଷାଦାନ ନିମନ୍ତେ ଉଭୟ ରାଜ୍ୟରେ ଅଣ-ଆନୁଷ୍ଠାନିକ ଶିକ୍ଷାକେନ୍ଦ୍ର ଓ ପ୍ରୌଢ଼ଶିକ୍ଷା କେନ୍ଦ୍ର ଖୋଲାଯିବ । ଯଥେଷ୍ଟ ଛାତ୍ର ଛାତ୍ରୀ ଥିବା ଉଭୟ ରାଜ୍ୟର ମାଧ୍ୟମିକ ସ୍କୁଲରେ ଆବଶ୍ୟକ ଅନୁଯାୟୀ ତେଲୁଗୁ କିମ୍ବା ଓଡ଼ିଆ ଭାଷାକୁ ଦ୍ୱିତୀୟ ଭାଷା ରୂପେ ଗ୍ରହଣ କରିବାକୁ ସ୍ଥିର ହୋଇଛି ।

ଓଡ଼ିଶା ସରକାରୀ ଛାପାଖାନାରେ ଆନ୍ଧ୍ର ପ୍ରଦେଶ ସରକାର ଓଡ଼ିଆ ପାଠ୍ୟପୁସ୍ତକ ଛାପିବାକୁ ବରାଦ କରିଛନ୍ତି । ଏହି କାର୍ଯ୍ୟକୁ ତ୍ୱରାନ୍ୱିତ କରିବା ପାଇଁ ଓଡ଼ିଶା ଶିକ୍ଷାମନ୍ତ୍ରୀ ଆବଶ୍ୟକୀୟ ପଦକ୍ଷେପ ନେବେ ବୋଲି ବୈଠକରେ ସ୍ଥିର ହୋଇଛି । ୧୯୮୭ ମସିହାଠାରୁ ଆନ୍ଧ୍ର ବିଶ୍ୱବିଦ୍ୟାଳୟ ଓଡ଼ିଆ ମାଧ୍ୟମରେ ମାଟ୍ରିକ୍ ପରୀକ୍ଷା କରିବା ବ୍ୟବସ୍ଥା ବନ୍ଦ କରିଦେଉଥିବା ଦୃଷ୍ଟିରୁ ଉଭୟ ରାଜ୍ୟରେ ଘରୋଇ ଛାତ୍ରମାନଙ୍କ ନିମନ୍ତେ ଆବଶ୍ୟକ ଅନୁଯାୟୀ ବୋର୍ଡ ଅଧୀନରେ ଏସ୍. ଏସ୍. ସି. ପରୀକ୍ଷା କେନ୍ଦ୍ର ଖୋଲିବା ପାଇଁ ଶିକ୍ଷାମନ୍ତ୍ରୀଦ୍ୱୟ ରାଜି ହୋଇଛନ୍ତି । ବହୁ ଓଡ଼ିଆ ବାସ କରୁଥିବା ବିଶାଖାପାଟଣା ସହର ଅଞ୍ଚଳରେ ଥିବା କର୍ପୋରେସନ ଓଡ଼ିଆ ମାଧ୍ୟମ ପ୍ରାଥମିକ ସ୍କୁଲକୁ ଉଚ୍ଚ ପ୍ରାଥମିକ ସ୍କୁଲରେ ପରିଣତ କରାଯିବ ।

ଉଭୟ ରାଜ୍ୟର ସଂଖ୍ୟାଲଘୁ ଭାଷାଭାଷୀ ଲୋକଙ୍କ ଶିକ୍ଷା ସମସ୍ୟା ସଂପର୍କରେ ଅଧିକ ଆଲୋଚନା କରିବା ପାଇଁ ଓଡ଼ିଶାର ଅଫିସରମାନେ ହାଇଦ୍ରାବାଦ ଏବଂ ଆନ୍ଧ୍ର ପ୍ରଦେଶର ଅଫିସରମାନେ ଭୁବନେଶ୍ୱର ଆସିବେ । ଉଭୟ ରାଜ୍ୟର ସଂଖ୍ୟାଲଘୁ ଭାଷାଭାଷୀ ଲୋକଙ୍କ ଶିକ୍ଷା ସମସ୍ୟା ସମାଧାନ ଦିଗରେ ଅଫିସର ସ୍ତରୀୟ କାର୍ଯ୍ୟକ୍ରମ ପ୍ରସ୍ତୁତ ହୋଇ ପାରିବ । ପରେ ବିସ୍ତୃତ ଆଲୋଚନା ପାଇଁ ଆନ୍ଧ୍ର ଶିକ୍ଷାମନ୍ତ୍ରୀ ଭୁବନେଶ୍ୱର ଆସିବାକୁ ସ୍ଥିର ହୋଇଛି । ସେହିପରି ହାଇଦ୍ରାବାଦଠାରେ ଥିବା ମୁକ୍ତ ବିଶ୍ୱବିଦ୍ୟାଳୟ ପରିଦର୍ଶନ କରିବାକୁ ଓଡ଼ିଶା ଶିକ୍ଷାମନ୍ତ୍ରୀ ହାଇଦ୍ରାବାଦ ଯିବେ ।

---

## ଗାଁ ଗାଁରେ ନଳକୂପ

୬,୦୨୭ଟି ରାଜସ୍ୱ ଗ୍ରାମକୁ ନେଇ ଗଠିତ ସମଗ୍ର କଟକ ଜିଲ୍ଲାର ଗ୍ରାମାଞ୍ଚଳରେ ଗତ ମାର୍ଚ୍ଚ ମାସ ଶେଷ ସୁଦ୍ଧା ୧୬,୫୧୩ଟି ନଳକୂପ ବସାଯାଇଛି ଏବଂ ତନ୍ମଧ୍ୟରେ କାର୍ଯ୍ୟକ୍ଷମ ଥିବା ନଳକୂପର ସଂଖ୍ୟା ହେଲା ୧୩,୭୦୦ । ଏତଦ୍ୱାରା ଜଳକ୍ଲିଷ୍ଟ ରୂପେ ଚିହ୍ନିତ ୩,୨୮୫ଟି ଓ ଅଣ-ଚିହ୍ନିତ । ୧,୩୪୯ଟି ଗ୍ରାମର ଅଧିବାସୀମାନେ ଉପକୃତ ହେଉଛନ୍ତି ।

ଏହି ଜିଲ୍ଲାରେ ୪,୬୭୮ଟି ଗ୍ରାମକୁ ଜଳାଭାବ ରୂପେ ଚିହ୍ନଟ କରାଯାଇଛି । ବିଶେଷ ଉଲ୍ଲେଖଯୋଗ୍ୟ ଯେ ଚିହ୍ନଟ ହୋଇନଥିବା ଅବଶିଷ୍ଟ ୧,୩୪୯ଟି ଗ୍ରାମରେ ମଧ୍ୟ ନଳକୂପମାନ ବସାଯାଇଛି ।

ଚଳିତ ଆର୍ଥିକ ବର୍ଷ ମଧ୍ୟରେ ଜିଲ୍ଲାର ଜଳାଭାବ ଥିବା ୮୧ଟି ଗ୍ରାମରେ ସମୁଦାୟ ୩୫୯ଟି ନଳକୂପ ବସାଇବାକୁ ଲକ୍ଷ୍ୟଧାର୍ଯ୍ୟ ହୋଇଛି । ତନ୍ମଧ୍ୟରୁ ଆଜି ସୁଦ୍ଧା ଏମ୍: ଏନ୍ : ପି ଓ ତ୍ୱରାନ୍ୱିତ ଗ୍ରାମ୍ୟ ଜଳ ଯୋଗାଣ କାର୍ଯ୍ୟକ୍ରମ ଅନୁଯାୟୀ ସର୍ବମୋଟ ୧୮୫ଟି ନଳକୂପ ବସାଇବାକୁ ସରକାର ମଞ୍ଜୁରୀ ଦେଇ ସାରିଲେଣି । ଏହା ବ୍ୟତୀତ ପାଠଗଡ଼, ଚୌଦ୍ୱାର, ଯାଜପୁର, ଯାଜପୁର ରୋଡ୍, କେନ୍ଦ୍ରାପଡ଼ା ଓ ପାରାଦୀପ ପୌରାଞ୍ଚଳଗୁଡ଼ିକରେ ୨ଟି ନଳକୂପ ବସାଇବା ଲାଗି ସରକାରୀ ମଞ୍ଜୁରୀ ଦିଆଯାଇଛି ।

## ବି. ଡ଼ି. ଏ. ଏବଂ ହାଉସିଂ ବୋର୍ଡ ଜମି

ସ୍ଥାନୀୟ ଚନ୍ଦ୍ରଶେଖରପୁରଠାରେ ଗଢ଼ି ଉଠୁଥିବା ଏକ ବିରାଟ ଗୃହ ନିର୍ମାଣ ପ୍ରକଳ୍ପ ପାଇଁ ଭୁବନେଶ୍ୱର ଉନ୍ନୟନ କର୍ତ୍ତୃପକ୍ଷକୁ ୩ଟି ବିଭିନ୍ନ ସ୍ଥାନରେ ୧୮୯ ଏକର ଏବଂ ରାଜ୍ୟ ଗୃହ ନିର୍ମାଣ ବୋର୍ଡକୁ ୨ଟି ସ୍ଥାନରେ ୧୮୭ ଏକର ଜମି ଯୋଗାଇ ଦିଆଯାଇଛି । ଏହା ବ୍ୟତୀତ ଦୋକାନ—ବଜାର, ଅଫିସ୍ ଓ ଓ ଚଳଚ୍ଚିତ୍ର ପ୍ରେକ୍ଷାଳୟ ଇତ୍ୟାଦି ନିର୍ମାଣ କରିବା ଉଦ୍ଦେଶ୍ୟରେ ବି. ଡ଼ି. ଏ.କୁ ଅଧିକ ୫୮ ଏକର ଜମି ଦିଆଯାଇଛି । ବିଭିନ୍ନ ଆୟକାରୀ ବ୍ୟକ୍ତିଙ୍କ ପାଇଁ ସେଠାରେ ନିର୍ମିତ ହୋଇଥିବା ସର୍ବମୋଟ୍ ୪,୬୫୬ଟି ବାସଗୃହ ଲାଗି ସର୍ବମୋଟ୍ ୧୬ ଏକର ଜମି ଉପଯୋଗ କରାଯାଇଛି ।

ଏହା ବ୍ୟତୀତ ଏହି ପ୍ରକଳ୍ପ ଅନ୍ତର୍ଗତ ପ୍ରତ୍ୟେକ ବାସଗୃହ ନିକଟରେ ୨ଟି ଲେଖାଏଁ ସୁରାଗଛ ହିସାବରେ ସମୁଦାୟ ୧୦ ହଜାର ବୃକ୍ଷ ରୋପଣ କରାଯିବ । ସେହିପରି ସମସ୍ତ ରାସ୍ତାର ଉନ୍ନୟନ ହୋଇଯିବା ପରେ ନିୟମିତ ରକ୍ଷଣାବେକ୍ଷଣ ପାଇଁ ସେଗୁଡ଼ିକୁ ଭୁବନେଶ୍ୱର ମ୍ୟୁନିସିପାଲିଟିକୁ ହସ୍ତାନ୍ତର କରାଯିବ । ଏହି ପ୍ରକଳ୍ପରେ ୨ଟି ବସ୍‌ଷ୍ଟାଣ୍ଡ ନିର୍ମାଣ କରିବା ଏବଂ ମ୍ୟୁନିସ୍‌ପାଲିଟିର ଟାଉନ୍ ବସ୍ ସେଠାକୁ ଚଳାଚଳ କରାଯିବା ଲାଗି ପଦକ୍ଷେପ ନିଆଯାଉଛି ।

## ଓଡ଼ିଶାରେ କେନ୍ଦ୍ରୀୟ ମେଷ ଓ ପଶମ ଗବେଷଣା କେନ୍ଦ୍ର

ଓଡ଼ିଶାରେ **ମେଷ** ଏବଂ **ପଶମ** ଗବେଷଣା ପାଇଁ ଏକ ଆଞ୍ଚଳିକ କେନ୍ଦ୍ର **ପ୍ରତିଷ୍ଠା** ସଂପର୍କରେ କେନ୍ଦ୍ରୀୟ ମେଷ ଏବଂ ପଶମ ଗବେଷଣା **ଅନୁଷ୍ଠାନର** ନିର୍ଦ୍ଦେଶକ, ମତ୍ସ୍ୟ ଓ ପଶୁପାଳନ ବିଭାଗ **ରାଷ୍ଟ୍ରମନ୍ତ୍ରୀ** କୁମାରୀ ଫ୍ରିଡ଼ା ଟୋପ୍‌ନୋଙ୍କ ସହିତ ଆଲୋଚନା କରିଥିଲେ । ଓଡ଼ିଶାରେ ଏପରି ଏକ ଗବେଷଣାଗାର ପ୍ରତିଷ୍ଠା କରାଗଲେ, ପଶୁପାଳନ ଉପରେ **ନିର୍ଭର** କରୁଥିବା ଲୋକମାନେ ବିଶେଷ ଭାବରେ ଉପକୃତ ହୋଇପାରିବେ ଏବଂ ରାଜ୍ୟର ମାଂସ ଓ ପଶମ ଚାହିଦା ପୂରଣ ହୋଇ ପାରିବ ବୋଲି ଆଲୋଚନାରୁ ଜଣାଯାଇଛି । ଉନ୍ନତ ଧରଣର ମେଷ ପାଳନ ପାଇଁ ଓଡ଼ିଶାର ଜଳବାୟୁ ଅନୁକୂଳ ହେବ ଏବଂ ଏହା ସହିତ ଏଠାରେ ଉନ୍ନତ ଜାତୀୟ ମେଷ ମଧ୍ୟ ଉତ୍ପାଦନ ହୋଇପାରିବ ବୋଲି ଗବେଷଣାଗାର ନିର୍ଦ୍ଦେଶକ ସୂଚନା ଦେଇଥିଲେ । ରାଜ୍ୟରେ ଶିଳ୍ପର ଦ୍ରୁତ ଅଭିବୃଦ୍ଧି ଫଳରେ ନୂଆ ନୂଆ ଶିଳ୍ପ [illegible] ଗଢ଼ି ଉଠୁଛି ଏବଂ ମାଂସର ଚାହିଦା ଦିନକୁ ଦିନ ବୃଦ୍ଧି ପାଉଥିବାରୁ ଲାଗିଛି । ମାଂସର ଚାହିଦା ପୂରଣ ପାଇଁ [illegible] ପାଳନ ଏକ

ଉତ୍କୃଷ୍ଟ ପନ୍ଥା ହୋଇଥିବାରୁ ଓଡ଼ିଶାର ଚିପିଲିମା ଫାର୍ମଠାରେ ଏହି ଗବେଷଣାଗାର ପ୍ରତିଷ୍ଠା କରାଗଲେ ସୁବିଧା ହେବ ବୋଲି ମତ ପ୍ରକାଶ ପାଇଥିଲା । ଗବେଷଣାଗାର ପାଇଁ ୭୦୦ ଏକର ଜଙ୍ଗଲିଆ ଜମି ଯୋଗାଇବାରେ ଅସୁବିଧା ଦେଖାଦେବାରୁ ଚିପିଲିମାଠାରେ ଗବେଷଣାଗାର ପ୍ରତିଷ୍ଠା କରିବାକୁ କେନ୍ଦ୍ରୀୟ ମେଷ ଏବଂ ପଶମ ଗବେଷଣାଗାରର ନିର୍ଦ୍ଦେଶକ ମତ ଦେଇଥିଲେ । ଏହି ଗବେଷଣାଗାର ପ୍ରତିଷ୍ଠା କରାଗଲେ ଏଠାରେ ମାଂସଳ ଠେକୁଆ ଗ୍ରଷ ମଧ୍ୟ କରାଯାଇ ପାରିବ ବୋଲି ସେ ପ୍ରକାଶ କରିଥିଲେ ।

ରାଷ୍ଟ୍ରମନ୍ତ୍ରୀ କୁମାରୀ ଟୋପ୍‌ନୋ ଏହି ପ୍ରସ୍ତାବ ସପକ୍ଷରେ ଅନୁକୂଳ ମତ ପୋଷଣ କରି ଓଡ଼ିଶାରେ ଏହି ଅନୁଷ୍ଠାନଟି ପ୍ରତିଷ୍ଠା କରିବା ଉପରେ ଜୋର ଦେଇଥିଲେ । ଏଠାରେ ଉଲ୍ଲେଖ ଯୋଗ୍ୟ ଯେ ଏଥି ପୂର୍ବରୁ ଭାରତୀୟ କୃଷି ବିଜ୍ଞାନ ଗବେଷଣା ପରିଷଦରେ ଏ ସଂପର୍କରେ କୁମାରୀ ଟୋପ୍‌ନୋ ଦାବୀ କରିଥିଲେ ।

କେନ୍ଦ୍ରୀୟ ମେଷ ଓ ପଶମ ଗବେଷଣା କେନ୍ଦ୍ରର ନିର୍ଦ୍ଦେଶକ ଜମି ଯୋଗାଣ ସଂପର୍କରେ ବିଭିନ୍ନ ଉଚ୍ଚ ପଦସ୍ଥ ସରକାରୀ ଅଫିସରଙ୍କ ସହିତ ସାକ୍ଷାତ ଆଲୋଚନା କରିଥିଲେ ।

## ଆଦିବାସୀ ଉପ-ଯୋଜନା ଅଞ୍ଚଳରେ

୧୯୮୫-୮୬ ଆର୍ଥିକ ବର୍ଷରେ ରାଜ୍ୟରେ ଜଳସେଚନ ପାଇଁ ୯୬ କୋଟି ୭୦ ଲକ୍ଷ ଟଙ୍କାର ବ୍ୟୟ ବରାଦ କରାଯାଇଛି । ସେଥିମଧ୍ୟରୁ ଆଦିବାସୀ ଉପ-ଯୋଜନା ଅଞ୍ଚଳ ପାଇଁ ୪୭ କୋଟି ୬୩ ଲକ୍ଷ ୧୦ ହଜାର ଟଙ୍କା ବ୍ୟୟ ବରାଦ କରାଯାଇଛି । ଏହା ଫଳରେ ୨,୨୪୦ ହେକ୍ଟର ଖରିଫ୍ ଓ ୧,୯୩୦ ହେକ୍ଟର ରବି ଫସଲ ପାଇଁ ଜଳ ଯୋଗାଣର ଲକ୍ଷ୍ୟ ଧାର୍ଯ୍ୟ କରାଯାଇଛି । ତେଣୁ, ମୋଟାମୋଟି ଭାବରେ ୪,୧୭୦ ହେକ୍ଟର ଜମିକୁ ଜଳସେଚନ ସୁବିଧା ମିଳିବାର ଆଶା କରାଯାଉଛି ।

## କୋରାପୁଟ ଜିଲ୍ଲାରେ ନଳକୂପ

ଚଳିତ ଆର୍ଥିକ ବର୍ଷରେ ସମଗ୍ର ରାଜ୍ୟର ଗ୍ରାମାଞ୍ଚଳରେ ସର୍ବମୋଟ ୫୬୨୫ଟି ନଳକୂପ ବସାଇବାକୁ ଲକ୍ଷ୍ୟ ଧାର୍ଯ୍ୟ ହୋଇଥିବା ସ୍ଥଳେ କୋରାପୁଟ ଜିଲ୍ଲାର ୮୫୦ଟି ଗ୍ରାମରେ ସମୁଦାୟ ୧,୩୧୪ ଟି ନଳକୂପ ବସାଯିବ । ତନ୍ମଧ୍ୟରୁ ଆଜି-ସୁଦ୍ଧା ପ୍ରଥମ ପର୍ଯ୍ୟାୟରେ ସର୍ବନିମ୍ନ ଆବଶ୍ୟକତା କାର୍ଯ୍ୟକ୍ରମ ଅନୁଯାୟୀ ଏହି ଜିଲ୍ଲାରେ ୯୫ଟି ନଳକୂପ ଏବଂ ଦ୍ୱିତୀୟ ପର୍ଯ୍ୟାୟରେ ତ୍ୱରାନ୍ୱିତ ଗ୍ରାମ୍ୟ ଜଳ ଯୋଗାଣ କାର୍ଯ୍ୟକ୍ରମ ଅନୁଯାୟୀ ୬୫୬ଟି ନଳକୂପ ବସାଇବାକୁ ସରକାର ମଞ୍ଜୁର କରିସାରିଲେଣି । ଏହା ବ୍ୟତୀତ ଗୁଣପୁର, ରାଲିମେଲା, କୋଟପାଡ଼, ମାଲକାନଗିରି, ନବରଙ୍ଗପୁର, ଉମରକୋଟ ଏବଂ ଉମରକୋଟ ପୌରାଞ୍ଚଳଗୁଡ଼ିକରେ ୧୧ ଟି ନଳକୂପ ବସାଇବାକୁ ସ୍ଥିର ହୋଇଛି ଓ ଏଥିପାଇଁ ସରକାରୀ ମଞ୍ଜୁରୀ ଦିଆଯାଇଛି ।

୫୬୩୩ଟି ଗ୍ରାମ ବିଶିଷ୍ଟ ରାଜ୍ୟର ୨ୟ ଗ୍ରାମ ବହୁଳ ଜିଲ୍ଲା ଭାବରେ କୋରାପୁଟର ୫,୨୧୨ଟି ଗ୍ରାମକୁ ଜଳକଷ୍ଟ ଗ୍ରାମ ରୂପେ ଚିହ୍ନିତ କରାଯାଇଛି । ତନ୍ମଧ୍ୟରୁ ଗତ ମାର୍ଚ୍ଚ ମାସ ଶେଷ ସୁଦ୍ଧା ୧,୮୨୬ଟି ଚିହ୍ନିତ ଓ ଅବଶିଷ୍ଟ ୪୭୧ଟି ଅଣ ଚିହ୍ନିତ ଗ୍ରାମରେ ସମୁଦାୟ ୪,୨୦୭ଟି ନଳକୂପ ବସାଯାଇଛି । ସେଗୁଡ଼ିକ ମଧ୍ୟରେ ଅଚଳ ହୋଇ ପଡ଼ିଥିବା ନଳକୂପର ସଂଖ୍ୟା ହେଲା ୮୬ ।

## ଆଦିବାସୀ ଉପ-ଯୋଜନା ଅଞ୍ଚଳରେ ବିଦ୍ୟୁତ୍ ଯୋଗାଣ

ଓଡ଼ିଶାର ୧୯,୨୦୪ଟି ଗ୍ରାମ ଆଦିବାସୀ ଉପ-ଯୋଜନା ଅନ୍ତର୍ଭୁକ୍ତ । ଏଥି ମଧ୍ୟରୁ ୩,୯୬୫ ଟି ଗ୍ରାମକୁ ୧୯୮୦ ମସିହା ସୁଦ୍ଧା ବିଦ୍ୟୁତ୍‌କରଣ କରାଯାଇଥିଲା । ଷଷ୍ଠ ଯୋଜନା କାଳ ସୁଦ୍ଧା ୬,୩୦୩ ଟି ଗ୍ରାମକୁ ବିଦ୍ୟୁତ୍ ସଂଯୋଗ କରାଯାଇଛି । ୭ମ ଯୋଜନା କାଳରେ ଅବଶିଷ୍ଟ ଆଦିବାସୀ ଉପ-ଯୋଜନା ଅନ୍ତର୍ଭୁକ୍ତ ଗ୍ରାମକୁ ବିଦ୍ୟୁତ୍ ସଂଯୋଗ କରାଯିବାର ଲକ୍ଷ୍ୟ ରଖାଯାଇଛି । ଏଥିପାଇଁ ରାଜ୍ୟର ଯୋଜନା ଅନ୍ତର୍ଭୁକ୍ତ ଅର୍ଥରୁ ୩୬ କୋଟି ୧୦ ଲକ୍ଷ ୫୨ ହଜାର ଟଙ୍କା ବ୍ୟୟ କରାଯିବ । ଗ୍ରାମ୍ୟ ବିଦ୍ୟୁତ୍‌କରଣ ପାଇଁ ମୋଟ୍ ୧୦୭ କୋଟି ୩୮ ଲକ୍ଷ ଟଙ୍କା ମଧ୍ୟରୁ ଉପରୋକ୍ତ ଅର୍ଥ ବ୍ୟୟ କରାଯିବ । ଏହା ମୋଟ୍ ଅର୍ଥ ବରାଦର ଶତକଡ଼ା ୩୪ ଭାଗ ହେବ ।

## କଟକ ଓ ଜୟପୁର ସଘନ ଗୋ-ଉନ୍ନୟନ ଯୋଜନାର ଅଗ୍ରଗତି

କଟକ ସଘନ ଗୋ-ଉନ୍ନୟନ ଯୋଜନା ଅଞ୍ଚଳରେ ଗତ ଅପ୍ରେଲ ମାସରେ ୧,୮୨୧ଟି ଗାଈଙ୍କଠାରେ କୃତ୍ରିମ ପ୍ରଜନନ କରାଯାଇଥିଲା । ପୂର୍ବରୁ ପ୍ରଜନନ କରାଯାଇଥିବା ଗାଈଙ୍କଠାରୁ ଏହି ମାସରେ ୪୭୦ଟି ମାଈ ଓ ୫୦୭ ଟି ଅଣ୍ଡିରା, ଏପରି ମୋଟ୍ ୯୭୬ଟି ଉନ୍ନତ ସଙ୍କର ବାଛୁରୀ ଜନ୍ମିଥିଲେ । ୨,୦୯୭ଟି ଅଣ୍ଡିରା ବାଛୁରୀଙ୍କର ଧରାଣ କରାଯାଇଥିଲା ଏବଂ ୨୩,୩୨୬ଟି ଗୋରୁଙ୍କୁ ସାଧାରଣ ରୋଗ ପାଇଁ ଚିକିତ୍ସା କରାଯିବା ସଙ୍ଗେ ସଙ୍ଗେ ୧,୨୫୬ଟି ଗାଈଙ୍କୁ ବିଭିନ୍ନ ରୋଗର ପ୍ରତିଷେଧକ ଟିକା ଦିଆଯାଇଥିଲା । ଏହା ବ୍ୟତୀତ ୪୦ ଡେସିମିଲ ପରିମିତ ଜମିରେ ୫ଟି ଘାସଗୃଷ କ୍ଷେତ୍ର ଆଗ୍ରହୀ ଚାଷୀମାନେ ପ୍ରସ୍ତୁତ କରିଥିଲେ ଏବଂ ୩,୮୦୦ଟି ଘାସମୂଳ ଆଗ୍ରହୀ ଚାଷୀଙ୍କୁ ଯୋଗାଇ ଦିଆଯାଇଥିଲା ।

ସେହିପରି କୋରାପୁଟ ଜିଲ୍ଲା ଜୟପୁର ସଘନ ଗୋ-ଉନ୍ନୟନ ଯୋଜନା ଅଞ୍ଚଳରେ ଗତ ମଇମାସରେ ୧୪୨ଟି ଗାଈଙ୍କୁ କୃତ୍ରିମ ପ୍ରଜନନ କରାଯାଇଥିଲା । ପୂର୍ବରୁ ପ୍ରଜନନ କରାଯାଇଥିବା ଗାଈଙ୍କଠାରୁ ଏହି ସମୟରେ ୧୫ଟି ମାଈ ଓ ୧୫ଟି ଅଣ୍ଡିରା, ଏପରି ମୋଟ୍ ୩୦ଟି ଉନ୍ନତ ସଙ୍କର ବାଛୁରୀ ଜନ୍ମିଥିଲେ । ଏହା ବ୍ୟତୀତ ୭,୩୫୫ଟି ଗୋରୁଙ୍କୁ ସାଧାରଣ ରୋଗ ପାଇଁ ଚିକିତ୍ସା କରାଯାଇଥିବା ବେଳେ ୨୩୬ଟି ଅଣ୍ଡିରା ବାଛୁରୀଙ୍କୁ ଧରାଣ କରାଯାଇଥିଲା ।

## କୁଆଖାଇ ସେତୁ ଦୁଇ ବର୍ଷ ପରେ ସଂପୂର୍ଣ୍ଣ ହେବ

ବାଲିହୁଡା ନିକଟସ୍ଥ ୫ ନମ୍ବର ଜାତୀୟ ରାଜପଥଠାରୁ ୪ କି: ମି: ଦୂରରେ କଟକ-ବାଙ୍କୀ ରାସ୍ତାରେ ନିର୍ମିତ ହେଉଥିବା କୁଆଖାଇ

ଏହି ସେତୁକୁ ୧୯୮୮ ମସିହା ଜୁନ୍ ଶେଷ ସୁଦ୍ଧା ସଂପୂର୍ଣ୍ଣ କରିବାକୁ ଲକ୍ଷ୍ୟ ଧାର୍ଯ୍ୟ ହୋଇଛି । ୧୯୮୪ ନଭେମ୍ବର ମାସଠାରୁ ଓଡ଼ିଶା ସେତୁ ନିର୍ମାଣ ନିଗମ ଏହାର ନିର୍ମାଣ କାର୍ଯ୍ୟ ଆରମ୍ଭ କରିଥିଲେ ।

୩ କୋଟି ୯୬ ଲକ୍ଷ ୯୬ ହଜାର ଟଙ୍କା ବ୍ୟୟ ଅଟକଳରେ ନିର୍ମିତ ହେଉଥିବା ଏହି ସେତୁ ପାଇଁ ଷ୍ଟେଟ୍ ବ୍ୟାଙ୍କ ୫୦ ଲକ୍ଷ ଟଙ୍କା ଋଣ ମଞ୍ଜୁର କରିଛନ୍ତି ଏବଂ ଅଧିକ ୫୦ ଲକ୍ଷ ଟଙ୍କା ଋଣ ଦେବା ଲାଗି ବ୍ୟବସ୍ଥା ହେଉଛି । ରାଜ୍ୟ ସରକାର ଏଥିପାଇଁ ୨ କୋଟି ୭୫ ଲକ୍ଷ ଟଙ୍କା ଯୋଗାଇ ଦେବାର କାର୍ଯ୍ୟକ୍ରମ ରହିଛି ଏବଂ ଚଳିତ ଆର୍ଥିକ ବର୍ଷରେ ୨୦ ଲକ୍ଷ ଟଙ୍କା ବ୍ୟୟ ବରାଦ କରାଯାଇଛି । ସେତୁ ନିର୍ମାଣ ନିଗମ ନିଜସ୍ୱ ସମ୍ବଳରୁ ୨ ଲକ୍ଷ ୯୬ ହଜାର ଟଙ୍କା ବିନିଯୋଗ କରିବେ । ଏହି ସେତୁର ଦୈର୍ଘ୍ୟ ହେବ ୫୫୮ ମିଟର ଏବଂ ଏଥିରେ ୧୬ଟି ଫୁକାର ରହିବ ।

ସଂପ୍ରତି ପୂର୍ତ୍ତ ରାଷ୍ଟ୍ରମନ୍ତ୍ରୀ ମହମ୍ମଦ ମୁଜାଫର୍ ହୋସେନ୍ ଖାଁ ସେତୁର ନିର୍ମାଣ କାର୍ଯ୍ୟ ଅନୁଧ୍ୟାନ କରିବାକୁ ସେଠାକୁ ପରିଦର୍ଶନରେ ଯାଇଥିଲେ । ବିଭାଗୀୟ ଶାସନ ସଚିବ ଶ୍ରୀ ଭୁବନ ମୋହନ ଦାସ, ଏସ୍. ଇ. ଶ୍ରୀ ପି. କେ. ରାଓ ଏବଂ ନିଗମର ପରିଚାଳନା ନିର୍ଦ୍ଦେଶକ ଶ୍ରୀ ଦୀନବନ୍ଧୁ ମିଶ୍ର ପ୍ରମୁଖ ପଦସ୍ଥ ଯନ୍ତ୍ରୀମାନେ ପୂର୍ତ୍ତମନ୍ତ୍ରୀଙ୍କ ସହିତ ଯାଇଥିଲେ ।

ସେତୁର ୧୬ଟି କୂପ ମଧ୍ୟରୁ ୧୧ଟି କୂପ ଖନନ ହୋଇସାରିଛି ଏବଂ ୩ଟି ତୁଳେଇ ଖୁଣ୍ଟର ନିର୍ମାଣ କାର୍ଯ୍ୟ ଚାଲିଛି । ଆସନ୍ତା ବର୍ଷ ଜୁନ୍ ସୁଦ୍ଧା କୂପଗୁଡ଼ିକର ଖନନ କାର୍ଯ୍ୟ, ୧୨ଟି ଖୁଣ୍ଟର ନିର୍ମାଣ ଏବଂ ୮ଟି ଫୁକାରର ନିର୍ମାଣ ସଂପୂର୍ଣ୍ଣ କରିବାକୁ ଲକ୍ଷ୍ୟ ଧାର୍ଯ୍ୟ ହୋଇଛି ।

ସେତୁଟି ପୂର୍ଣ୍ଣାଙ୍ଗ ହେଲେ କଟକରୁ ବାଙ୍କୀର ଦୂରତ୍ୱ ୪୫ କି. ମି ହ୍ରାସ ପାଇବ । ଏହା ବ୍ୟତୀତ କଟକରୁ ବାରଙ୍ଗ, ଚନ୍ଦକା ଶିବାଞ୍ଚଳ, ନନ୍ଦନକାନନ ଏବଂ ଭୁବନେଶ୍ୱରକୁ ବର୍ଷସାରା ସହଜରେ ଯାତାୟତ କରିହେବ । ଏହି ସେତୁରେ ବିଭିନ୍ନ ଯାନବାହନ ଚଳାଚଳ ପାଇଁ ଟୋଲ ଆଦାୟ କରାଯିବ ଏବଂ ବାର୍ଷିକ ପ୍ରାୟ ୨୫ ଲକ୍ଷ ଟଙ୍କା ଏ ବାବଦରେ ମିଳିବ ।

---

## ଦାରିଦ୍ର୍ୟ ଦୂରୀକରଣ ଯୋଜନାରେ

୧୯୮୫-୮୬ ଆର୍ଥିକ ବର୍ଷରେ ବିଭିନ୍ନ ଦାରିଦ୍ର୍ୟ ଦୂରୀକରଣ ଯୋଜନା ମାଧ୍ୟମରେ ଏକ ଲକ୍ଷ ୬୪ ହଜାର ଆଦିବାସୀ ଓ ହରିଜନ ପରିବାରଙ୍କୁ ଉପକୃତ କରାଇବାର ଲକ୍ଷ୍ୟ ଧାର୍ଯ୍ୟ ଥିବାସ୍ଥଳେ ୨ ଲକ୍ଷ ୩ ହଜାର ୯୦୨ଟି ଏପରି ପରିବାର ଉପକୃତ ହୋଇ-ପାରିଛନ୍ତି । ଏଥିମଧ୍ୟରୁ ଏକ ଲକ୍ଷ ୨୩ ହଜାର ୨୭୮ଟି ଆଦିବାସୀ ଓ ୮୦,୬୨୪ଟି ହରିଜନ ପରିବାର ଅଛନ୍ତି ।

ଏହି କାର୍ଯ୍ୟକ୍ରମ ମଧ୍ୟରୁ ଆଇ. ଆର. ଡ଼ି. ପି. ଯୋଜନାରେ ୪୬,୫୨୨ଟି ଆଦିବାସୀ ଓ ୩୭,୫୯୭ଟି ହରିଜନ ପରିବାର ଏବଂ ଇ. ଆର୍. ଆର୍. ପି. ଯୋଜନାରେ ୨୨,୪୪୬ଟି ଆଦିବାସୀ ଓ ୧୩,୧୧୨ଟି ହରିଜନ ପରିବାର ଉପକୃତ ହୋଇପାରିଛନ୍ତି ।

ଚଳିତ ଆର୍ଥିକ ବର୍ଷରେ ୯୮ ହଜାର ଆଦିବାସୀ ଓ ୬୩ ହଜାର ହରିଜନ ପରିବାରଙ୍କୁ ବିଭିନ୍ନ ଦାରିଦ୍ର୍ୟ ଦୂରୀକରଣ ଯୋଜନାରେ ଉପକୃତ କରାଇବାକୁ ଲକ୍ଷ୍ୟ ଧାର୍ଯ୍ୟ ହୋଇଛି ।

## ଗୋ-ଖାଦ୍ୟ ପାଇଁ ଘାସ ଚାଷ

ଚଳିତ ବର୍ଷା ଋତୁରେ ରାଜ୍ୟର ସବୁ ଜିଲ୍ଲାରେ ଗୋ-ଖାଦ୍ୟ ଉନ୍ନୟନ ଯୋଜନା ଅନୁଯାୟୀ ୨,୨୦୦ଟି ଘାସଚାଷ ପ୍ରଦର୍ଶନ କ୍ଷେତ୍ର ପାଇଁ ୬୬ ହଜାର ଟଙ୍କା ମଞ୍ଜୁର କରାଯାଇଛି । କଟକ, ପୁରୀ, ବାଲେଶ୍ୱର, ଗଞ୍ଜାମ, ସମ୍ବଲପୁର, ଢେଙ୍କାନାଳ, ବଲାଙ୍ଗୀର ଓ କଳାହାଣ୍ଡି ଜିଲ୍ଲାରେ ୨୦୦ଟି କରି, ସୁନ୍ଦରଗଡ଼ ଓ କୋରାପୁଟ ଜିଲ୍ଲାରେ ୧୫୦ଟି କରି ଏବଂ କେନ୍ଦୁଝର, ମୟୂରଭଞ୍ଜ ଓ ଫୁଲବାଣୀ ଜିଲ୍ଲାରେ ୧୦୦ଟି କରି ଏହି ପ୍ରଦର୍ଶନ କ୍ଷେତ୍ର ହେବ । ୨୫ ଡେସିମିଲ କରି ଏହି ପ୍ରଦର୍ଶନ କ୍ଷେତ୍ର ବର୍ଷା ବା ଖରିଫ୍ ଋତୁରେ ଚାଷୀଙ୍କ ଜମିରେ ହେବ ଏବଂ ଏଥିପାଇଁ ସରକାରଙ୍କ ତରଫରୁ ଚାଷୀଙ୍କୁ ମାଗଣାରେ ଘାସ ମଞ୍ଜି ଓ ସାର ଯୋଗାଯିବା ବାବଦରେ ୩୦ ଟଙ୍କା କରି ଖର୍ଚ୍ଚ ହେବ । ବର୍ଷାଋତୁରେ ଏମ୍. ପି. ଚେରୀ ଓ ବରଗୁଡ଼ି ଅଥବା ମକା ଏଥିରେ ଚାଷ ହେବା ପାଇଁ ସ୍ଥିର ହୋଇଛି । ଏହି ପ୍ରଦର୍ଶନ କ୍ଷେତ୍ର-ଗୁଡ଼ିକ ସାଧାରଣତଃ ରାସ୍ତାକଡ଼ ଜମି ଓ ରାସ୍ତା ପାଖ ଗ୍ରାମଗୁଡ଼ିକରେ ହେବାପାଇଁ ସ୍ଥିର ହୋଇଛି ।

## ବ୍ରହ୍ମପୁର ସଘନ ଗୋ-ଉନ୍ନୟନ ଯୋଜନା

ବ୍ରହ୍ମପୁର ସଘନ ଗୋ-ଉନ୍ନୟନ ଯୋଜନା ଅଞ୍ଚଳରେ ଗତ ମଇ ମାସରେ ୭୯୧ଟି ଗାଈଙ୍କଠାରେ କୃତ୍ରିମ ପ୍ରଜନନ କରାଯାଇଥିଲା ଏବଂ ପୂର୍ବରୁ ପ୍ରଜନନ କରାଯାଇଥିବା ଗାଈଙ୍କଠାରୁ ୧୧୪ଟି ଅଣ୍ଡିରା ଓ ୧୦୬ଟି ମାଈ, ଏପରି ମୋଟ୍ ୨୨୦ଟି ଉନ୍ନତ ସଙ୍କର ବାଛୁରୀ ଜନ୍ମିଥିଲେ । ଏହି ମାସରେ ୧,୪୩୦ଟି ଅଣ୍ଡିରା ବାଛୁରୀଙ୍କର ଧରାଣ କରାଯିବା ସଙ୍ଗେ ସଙ୍ଗେ ୧୬,୬୧୫ଟି ଗୋରୁଙ୍କୁ [illegible] ରୋଗର ପ୍ରତିଷେଧକ ଟିକା ଦିଆଯାଇଥିଲା । ଏହି ସମୟରେ [illegible] ଯୋଜନା ଅଞ୍ଚଳରେ ୧୦,୩୫୫ଟି ଗୋରୁଙ୍କର ସାଧାରଣ ରୋଗର ଚିକିତ୍ସା କରାଯାଇଥିଲା ଓ ୨ଟି ବୁଢ଼ାଷଣ୍ଢଙ୍କୁ ଅପସାରଣ କରାଯାଇଥିଲା ।

## ତନ୍ତୁବାୟ ସହଯୋଗ ସମିତି

ଗତ ଫେବୃଆରୀ ମାସ ମଧ୍ୟରେ ୨୬୮ଟି ଅତିରିକ୍ତ ତନ୍ତକୁ ସମବାୟ ପରିସରଭୁକ୍ତ କରିବା ସଙ୍ଗେ ସଙ୍ଗେ ୫୩୬ ଜଣ ନୂତନ ବୁଣାକାରଙ୍କୁ ପ୍ରତ୍ୟକ୍ଷ ଭାବରେ କାମ ଯୋଗାଇ ଦିଆଯାଇ ପାରିଛି । ଏହା ଫଳରେ ଗତ ଫେବୃଆରୀ ମାସ ସୁଦ୍ଧା ସମବାୟ ପରିସରଭୁକ୍ତ ହୋଇଥିବା ତନ୍ତୁବାୟ ସହଯୋଗ ସମିତିର ସଂଖ୍ୟା ୭୦୬ରେ ପହଞ୍ଚି ପାରିଛି ଓ ଏହାର ସଭ୍ୟ ସଂଖ୍ୟା ୭୨,୪୨୪ ହୋଇଛି ।

## ମାଆ ଓ ଶିଶୁ ସ୍ୱାସ୍ଥ୍ୟ ସମ୍ପର୍କରେ ପ୍ରଚାର କର୍ମଶାଳା

ମାଆ ଓ ଶିଶୁମାନଙ୍କ ସ୍ୱାସ୍ଥ୍ୟର ବିକାଶ ସମ୍ପର୍କରେ ଏକ ପ୍ରଚାର କର୍ମଶାଳା କଟକସ୍ଥ ପାନ୍ଥନିବାସଠାରେ ଅନୁଷ୍ଠିତ ହୋଇଥିଲା । ରାଜ୍ୟ ସରକାର, କେନ୍ଦ୍ର ସୂଚନା ଓ ପ୍ରସାରଣ ମନ୍ତ୍ରଣାଳୟ ଏବଂ 'ୟୁନିସେଫ'ର ମିଳିତ ଉଦ୍ୟମରେ ଏହି କର୍ମଶାଳାର ଆୟୋଜନ କରାଯାଇଥିଲା । ଶିଶୁରୋଗ, ଶିଶୁରୋଗ ପ୍ରତିରୋଧ ବ୍ୟବସ୍ଥା ଓ ଶିଶୁ [illegible] ଯତ୍ନ ସମ୍ପର୍କରେ ମାଆମାନଙ୍କୁ ସଚେତନ କରିବା କ୍ଷେତ୍ରରେ ବିଭାଗୀୟ କର୍ମଚାରୀମାନେ ଯେଉଁ ସମସ୍ୟାର ସମ୍ମୁଖୀନ ହେଉଛନ୍ତି, ତାହା ପ୍ରଚାର କର୍ମଚାରୀ, ଦୂରଦର୍ଶନ କର୍ମ[illegible] ହେତାର କର୍ମଚାରୀ ଓ ଏବଂ ପ୍ରଚାର କାର୍ଯ୍ୟରେ

ନିଯୁକ୍ତ ଅନ୍ୟ କର୍ମଚାରୀମାନେ କିପରି ସଫଳତାର ସହିତ ଅଂଶଗ୍ରହଣ କରି ପାରିବେ, ସେ ସମ୍ପର୍କରେ ଏହି କର୍ମଶାଳାରେ ଆଲୋଚନା କରାଯିବ । ସେମାନେ ପ୍ରତ୍ୟକ୍ଷ ଜ୍ଞାନ ଅର୍ଜନ କରିବା ପାଇଁ ଗାଁ ଗହଳକୁ ଯାଇ ମାଆମାନଙ୍କୁ ଭେଟିବେ । ଏହା ଫଳରେ ସେମାନେ ଉଦ୍ଦିଷ୍ଟ ପ୍ରସାରର ଭଙ୍ଗୀ ଓ ଆଭିମୁଖ୍ୟର ପରିବର୍ତ୍ତନ ପାଇଁ ସୁଯୋଗ ପାଇବେ ଏବଂ ବାସ୍ତବ କାର୍ଯ୍ୟକ୍ରମମାନ ପ୍ରସ୍ତୁତ କରିବାକୁ ସକ୍ଷମ ହେବେ । ଏହାପରେ ଗ୍ରାମାଞ୍ଚଳକୁ ଯାଇ ଯେଉଁଠାରେ ସାର୍ବଜନୀନ ରେଡିଓ ଓ ଦୂରଦର୍ଶନର ସୁବିଧା ଅଛି, ସେଠାରେ ମାଆମାନଙ୍କର ଶ୍ରୋତା ମଣ୍ଡଳୀମାନ ଗଠନ କରିବେ । ଶ୍ରୋତାମାନଙ୍କର ପ୍ରତିକ୍ରିୟା ସମ୍ପର୍କରେ ନଜର ଦିଆଯିବ ଓ ସମୀକ୍ଷା କରାଯିବ ।

ଷଷ୍ଠ ଯୋଜନା ପ୍ରାରମ୍ଭରୁ ମାଆ ଓ ଶିଶୁମାନଙ୍କର ସ୍ୱାସ୍ଥ୍ୟର ବିକାଶ ଉପରେ ବିଶେଷ ଗୁରୁତ୍ୱ ଆରୋପ କରାଯାଉଛି । ମାଆ ଓ ଶିଶୁର ସ୍ୱାସ୍ଥ୍ୟ ବିକାଶ ପାଇଁ ଆଇ: ସି: ଡି: ସି: ଭଳି ବହୁମୁଖୀ ସେବା କାର୍ଯ୍ୟକ୍ରମଠାରୁ ଆରମ୍ଭକରି ସମୂହ ରୋଗ ନିରୋଧକ ଆୟୋଜନ ଏବଂ ଗ୍ରାମାଞ୍ଚଳ ସ୍ୱାସ୍ଥ୍ୟ କାର୍ଯ୍ୟକ୍ରମର ଭିତ୍ତିଭୂମିକୁ ସୁଦୃଢ଼ କରାଗଲା । ଏଥି ସଙ୍ଗେ ସଙ୍ଗେ ଗ୍ରାମାଞ୍ଚଳରେ ବସବାସ କରୁଥିବା ମାଆମାନଙ୍କୁ ସ୍ୱାସ୍ଥ୍ୟ ଓ ପୁଷ୍ଟିକର ଖାଦ୍ୟ କାର୍ଯ୍ୟକ୍ରମ ସମ୍ପର୍କରେ ସଚେତନ କରାଇବା ଏକାନ୍ତ ଜରୁରୀ । ଏହା ନ ହେଲେ ଏହି କାର୍ଯ୍ୟକ୍ରମରୁ ସୁଫଳ ମିଳିବା ଅସମ୍ଭବ ।

## ଏଣ୍ଡିଚାଷ ମାଧ୍ୟମରେ ଦୁର୍ବଳ ଶ୍ରେଣୀର ଉପକୃତ

ରାଜ୍ୟର ଗରିବ ତଥା ଆର୍ଥିକ ଦୁର୍ବଳ ଶ୍ରେଣୀର ଲୋକ-ମାନଙ୍କ ନିମନ୍ତେ ଏଣ୍ଡିଚାଷ ଏକ ସାମୟିକ ବୃତ୍ତି । ଗଡଚାଷ କରିଥିବା ବ୍ୟକ୍ତିମାନଙ୍କ ଘରେ ଏଣ୍ଡିପୋକ ପ୍ରାଳନ ଦ୍ୱାରା ୩ ବା ୪ମାସ ମଧ୍ୟରେ ୫୦୦ ଟଙ୍କା ଉପାର୍ଜନ କରିବାକୁ ସକ୍ଷମ ହୋଇ ପାରିବେ । ଏହି କାର୍ଯ୍ୟକ୍ରମ ଦ୍ୱାରା ରାଜ୍ୟର କଟକ, ଗଞ୍ଜାମ, କୋରାପୁଟ, କେନ୍ଦୁଝର, ଫୁଲବାଣୀ ଓ ସୁନ୍ଦରଗଡ଼ ଜିଲ୍ଲାର ୨ ହଜାର ଆର୍ଥିକ ଦୁର୍ବଳ ଶ୍ରେଣୀର ଲୋକ ଉପକୃତ ହୋଇଛନ୍ତି । ଏହି ଚାଷକୁ ଅଧିକ ଲୋକପ୍ରିୟ କରିବା ନିମନ୍ତେ ଉପରୋକ୍ତ ଜିଲ୍ଲାଗୁଡ଼ିକରେ ୨୬ ଗୋଟି ଏଣ୍ଡି ବିହନ ଓ କୋଷା ଉତ୍ପାଦନ କେନ୍ଦ୍ର ଖୋଲାଯାଇଛି । ଏଗୁଡ଼ିକରେ ଚାଷୀମାନଙ୍କୁ ଆବଶ୍ୟକ ତାଲିମ ଦେବା ବ୍ୟବସ୍ଥା ମଧ୍ୟ କରାଯାଇଛି । ୧୯୮୬ ମସିହା ଜାନୁୟାରୀ ମାସ ଶେଷ ସୁଦ୍ଧା ଏହି କେନ୍ଦ୍ରଗୁଡ଼ିକରୁ ୮,୮୯୫ କେ: ଜି: ଏଣ୍ଡିସୂତା ଉତ୍ପାଦନ କରାଯାଇଛି ।

## ପ୍ରକୃତି ମିତ୍ର ପୁରସ୍କାର ଯୋଜନା

ରାଜ୍ୟ ବିଜ୍ଞାନ, କାରିଗରୀ ଓ ପରିବେଶ ବିଭାଗ ତରଫ ପରିବେଶ ସୁରକ୍ଷା ତଥା ପରିବେଶ ସମ୍ପର୍କରେ ଜନ ଚେତନା ସୃଷ୍ଟି କ୍ଷେତ୍ରରେ ରାଜ୍ୟର ସ୍ୱେଚ୍ଛାସେବୀ ଅନୁଷ୍ଠାନ ତଥା ଜନସାଧାରଣଙ୍କୁ ଉତ୍ସାହିତ କରିବା ପାଇଁ ପ୍ରତି ଜିଲ୍ଲା ନିମନ୍ତେ ୫ ହଜାର ଟଙ୍କାର ଦୁଇଟି କରି 'ପ୍ରକୃତି ମିତ୍ର' ପୁରସ୍କାର ପ୍ରଦାନ ବ୍ୟବସ୍ଥା କରାଯାଇଛି । ଜଙ୍ଗଲ ଓ ପରିବେଶ ସୁରକ୍ଷା ତଥା ଏ ସମ୍ପର୍କରେ ଜନ ଚେତନା ସୃଷ୍ଟି କ୍ଷେତ୍ରରେ ଉଲ୍ଲେଖନୀୟ ଅବଦାନ ପାଇଁ ପ୍ରତି ଜିଲ୍ଲାରେ ସର୍ବୋତ୍କୃଷ୍ଟ ବିବେଚିତ ଗୋଟିଏ ରେଜିଷ୍ଟ୍ରିକୃତ ସ୍ୱେଚ୍ଛାସେବୀ ଅନୁଷ୍ଠାନ ଏବଂ ଗୋଟିଏ ଗ୍ରାମ ଏହି ପୁରସ୍କାର ପାଇବେ ।

ସ୍ଥାନୀୟ ବ୍ଲକ ଉନ୍ନୟନ ଅଧିକାରୀ, ଜଙ୍ଗଲ ବିଭାଗ ବା ମୃତ୍ତିକା ସଂରକ୍ଷଣ ବିଭାଗର ସ୍ଥାନୀୟ କର୍ମକର୍ତ୍ତା, ସମ୍ପୃକ୍ତ ଜିଲ୍ଲାର ନେହେରୁ ଯୁବ କେନ୍ଦ୍ରର ସଂଯୋଜକ ବା ସମ୍ପୃକ୍ତ ଜିଲ୍ଲାର ଗୋଟିଏ ସ୍ୱେଚ୍ଛାସେବୀ ଅନୁଷ୍ଠାନ ସମ୍ପର୍କରେ ଅନ୍ୟ ଏକ ସ୍ୱେଚ୍ଛାସେବୀ ଅନୁଷ୍ଠାନ ବିଭାଗ ଦ୍ୱାରା ନିର୍ଦ୍ଧାରିତ ଫର୍ମରେ ମନୋନୟନ କରିପାରିବେ ।

ସମ୍ପୃକ୍ତ ଜିଲ୍ଲାର ଜିଲ୍ଲାପାଳ ତଥା ଚେୟାରମ୍ୟାନ, ଜିଲ୍ଲା ପରିବେଶ ସମିତି ବା ଶାସନ ସଚିବ, ବିଜ୍ଞାନ, କାରିଗରୀ ଓ ପରିବେଶ ବିଭାଗ, ସେକ୍ରେଟାରିଏଟ, ଭୁବନେଶ୍ୱରଙ୍କଠାରୁ ମନୋନୟନ ପତ୍ର ମିଳିପାରିବ । ପୂରଣ ହୋଇଥିବା ମନୋନୟନ ଫର୍ମ ସମ୍ପୃକ୍ତ ଜିଲ୍ଲାର ଜିଲ୍ଲାପାଳ ତଥା ପରିବେଶ ସମିତି ଚେୟାରମ୍ୟାନଙ୍କ ନିକଟରେ ନିର୍ଦ୍ଦିଷ୍ଟ ସମୟ ମଧ୍ୟରେ ପହଞ୍ଚିବା ଆବଶ୍ୟକ ।

ପରିବେଶ ସୁରକ୍ଷା ପାଇଁ କେଉଁ କେଉଁ କ୍ଷେତ୍ରରେ ଗୋଟିଏ ଗ୍ରାମ ବା ସ୍ୱେଚ୍ଛାସେବୀ ଅନୁଷ୍ଠାନ କାର୍ଯ୍ୟ କରିପାରେ, ତାହା ମନୋନୟନ ଫର୍ମରେ ଦର୍ଶାଯାଇଛି । ପୁରସ୍କାର ପାଇଁ ଏକାଧିକ କାର୍ଯ୍ୟ ହୋଇଥିବା ଆବଶ୍ୟକ । ମନୋନୟନ ପତ୍ରରେ ଦିଆଯାଇଥିବା ତଥ୍ୟକୁ ଭିତ୍ତିକରି ଅନ୍ତତଃ ପ୍ରଥମ ତିନିସ୍ଥାନ ଅଧିକାର କରିଥିବା ଅନୁଷ୍ଠାନ/ଗ୍ରାମକୁ ଆବଶ୍ୟକସ୍ଥଳେ ମନେ କଲେ ଜିଲ୍ଲା ପରିବେଶ ସମିତିର କର୍ମକର୍ତ୍ତା କ୍ଷେତ୍ର ପରିଦର୍ଶନ କରି ସରକାରଙ୍କୁ ଜିଲ୍ଲା ପାଇଁ କେବଳ ଗୋଟିଏ ଗ୍ରାମ ଓ ଅନୁଷ୍ଠାନର ନାମ ନିର୍ଦ୍ଧାରିତ ଫର୍ମରେ ସୁପାରିଶ କରିବେ ।

ସଂପୃକ୍ତ ଜିଲ୍ଲାପାଳଙ୍କ ନିକଟରେ ମନୋନୟନ ପତ୍ର ପହଞ୍ଚିବା ସମୟ ଅଗଷ୍ଟ ୧୬, ୧୯୮୬ ଓ ପରିବେଶ ସମିତିର ସୁପାରିଶ ସରକାରଙ୍କଠାରେ ପହଞ୍ଚିବା ସମୟ ସେପ୍ଟେମ୍ବର ୧୦, ୧୯୮୬ ରଖାଯାଇଛି । ଭୁବନେଶ୍ୱରସ୍ଥ ସୂଚନା ଭବନଠାରେ ୧୯୮୬ ମସିହା ଅକ୍ଟୋବର ୨ ତାରିଖରେ ଏହି ପୁରସ୍କାର ପ୍ରଦାନ କରାଯିବ ।

## ଅଧିକ ଗୋ-ଖାଦ୍ୟ ଉତ୍ପାଦନ ପାଇଁ ଘାସଚାଷ

କୋରାପୁଟ ଜିଲ୍ଲା ଜୟପୁର ସଘନ ଗୋ-ଉନ୍ନୟନ ଯୋଜନାଞ୍ଚଳରେ ଆଦିବାସୀ ଉପ-ଯୋଜନା ଅନ୍ତର୍ଗତ ଗୋ-ଖାଦ୍ୟ ପାଇଁ ଘାସବୃଦ୍ଧି ଯୋଜନାରେ ଚଳିତବର୍ଷ ୬,୧୦୦ ଟଙ୍କା ମଞ୍ଜୁର ହୋଇଛି । ଏହି ଅର୍ଥରେ ଗୋପାଳକମାନଙ୍କୁ ନିଜ ଜମିରେ ଖରିଫ ଋତୁରେ ମକା ଓ ବରଗୁଡ଼ି ବା ଏମ୍: ପି: ଚରୀ ଓ ବରଗୁଡ଼ି ଚାଷପାଇଁ ଚାଷୀମାନଙ୍କୁ ବିହନ ଓ ସାର ମୁଣାମାନ ଯୋଗାଇ ଦିଆଯିବାର ବ୍ୟବସ୍ଥା ହୋଇଛି ।

ସେହିପରି ଢେଙ୍କାନାଳ ଜିଲ୍ଲା କାଇମାଟି ଘାସ ଫାର୍ମରେ ଗୋ-ଖାଦ୍ୟ ଉନ୍ନୟନ ଯୋଜନାରେ ଚଳିତବର୍ଷ ୪ ହଜାର ଟଙ୍କା ଖର୍ଚ୍ଚ ହେବ । ଏହି ଅର୍ଥରେ ଚଳିତ ବର୍ଷା ଋତୁରେ ୧୦ ଏକର ଜମିରେ ସ୍ତାଇଲୋ ଓ ଦୀନାନାଥ ଘାସଚାଷ କରାଯିବ ।

ଏହା ବ୍ୟତୀତ ଏଠାରେ ଦୁଇ କୁଇଣ୍ଟାଲ ଘାସମଞ୍ଜି ଉତ୍ପାଦନ କରିବାର କାର୍ଯ୍ୟକ୍ରମ ଅଛି । ବିଭିନ୍ନ ଯୋଜନାରେ ଦୁଧିଆଳୀ ଗାଈ ପାଳିଥିବା ଚାଷୀଙ୍କୁ ଏଠାରୁ ଉତ୍ପନ୍ନ ଘାସ ସୁଲଭ ମୂଲ୍ୟରେ ଯୋଗାଇ ଦିଆଯିବାର ବ୍ୟବସ୍ଥା ହୋଇଛି ।

## ସନ୍ତାନ ଜନ୍ମରେ ବ୍ୟବଧାନ ରକ୍ଷା ନିମନ୍ତେ ସ୍ୱତନ୍ତ୍ର ଅଭିଯାନ

ଗତ ମାସ ୧୫ ତାରିଖଠାରୁ ଆମ ରାଜ୍ୟରେ ପରିବାର କଲ୍ୟାଣର ଏକ ବିଶେଷ ଅଭିଯାନ ଆରମ୍ଭ ହୋଇଛି । ଏହି ଅଭିଯାନ କାଳରେ ସନ୍ତାନ ଜନ୍ମରେ ବ୍ୟବଧାନପାଇଁ ଉଦ୍ଦିଷ୍ଟ ପଦ୍ଧତି ଗ୍ରହଣ ଉପରେ ଗୁରୁତ୍ୱ ଆରୋପ କରାଯିବ । ଏହା ଅଗଷ୍ଟମାସ ଶେଷ ସୁଦ୍ଧା ଚାଲିବ । ଏହି ଅଭିଯାନର ସଫଳତା ଲାଗି କେନ୍ଦ୍ର ସରକାରଙ୍କ ସ୍ୱାସ୍ଥ୍ୟ ଓ ପରିବାର କଲ୍ୟାଣ ମନ୍ତ୍ରଣାଳୟ କେବଳ ଆମ ରାଜ୍ୟ ନୁହେଁ, ଭାରତର ଅନ୍ୟାନ୍ୟ ସମସ୍ତ ରାଜ୍ୟକୁ ମଧ୍ୟ ଅନୁରୋଧ କରିଛନ୍ତି । ଗୋଟିଏ ସନ୍ତାନ ଲାଭ କରିଥିବା ଦଂପତି ଦ୍ୱିତୀୟ ସନ୍ତାନଟିକୁ ବିଳମ୍ବରେ ଲାଭ କରିବାକୁ ଚାହୁଁଥିଲେ ବା ନବ ବିବାହିତ ଦଂପତି ଠିକ୍ ବିବାହର ପରେପରେ ସନ୍ତାନ ଜନ୍ମ ନଚାହୁଁଥିଲେ, ସାମୟିକ ଗର୍ଭ ନିରୋଧ ପଦ୍ଧତି ଗ୍ରହଣ କରିଥାନ୍ତି । ସନ୍ତାନ ଜନ୍ମରେ ବ୍ୟବଧାନ ରକ୍ଷା କରିବା ଲାଗି ନିରୋଧ, ଲୁପ୍, କପ୍‌ର–ଟି, ବଟିକା ସେବନ (ଓରାଲ ପିଲ୍) ଆଦି ପଦ୍ଧତିମାନ ରହିଛି । ବିନା ମୂଲ୍ୟରେ ଏହା ଆଗ୍ରହୀ ଦଂପତିମାନଙ୍କୁ ଯୋଗାଇ ଦିଆଯାଏ । ଏହି ସରଳ ସୁଲଭ ଓ ନିର୍ଭରଯୋଗ୍ୟ ପଦ୍ଧତିଗୁଡ଼ିକୁ ବ୍ୟବହାର କରି ଆମ ଦେଶ ତଥା ପୃଥିବୀର କୋଟି କୋଟି ଲୋକ ସାମୟିକ ଭାବେ ଗର୍ଭ ସଂଚାରକୁ ଏଡ଼ାଇ ଦେବାକୁ ସମର୍ଥ ହେଉଛନ୍ତି । ଏହି ସ୍ୱତନ୍ତ୍ର ଅଭିଯାନ କାଳରେ ଦଂପତି ନିଜର ପସନ୍ଦ ମୁତାବକ ଯେ କୌଣସି ଅସ୍ଥାୟୀ ପଦ୍ଧତି ବ୍ୟବହାର କରିପାରନ୍ତି ।

ଏଣୁ, ରାଜ୍ୟର ସମସ୍ତ ସନ୍ତାନ ଜନ୍ମକ୍ଷମ ଦଂପତିଙ୍କୁ ଅନୁରୋଧ କରାଯାଉଛି ଯେ ସେମାନେ ସେମାନଙ୍କର ନିକଟସ୍ଥ ଗ୍ରାମାଞ୍ଚଳ ସ୍ୱାସ୍ଥ୍ୟକେନ୍ଦ୍ର ଓ ଉପକେନ୍ଦ୍ରରେ ଥିବା ଡାକ୍ତର ତଥା ସ୍ୱାସ୍ଥ୍ୟକର୍ମୀ ଓ ଗ୍ରାମ୍ୟ ସ୍ୱାସ୍ଥ୍ୟ ସ୍ୱେଚ୍ଛାସେବୀମାନଙ୍କସହ ସଂପର୍କ ସ୍ଥାପନ କଲେ, ଏଥିନିମନ୍ତେ ସବିଶେଷ ବିବରଣୀ ଓ ପରାମର୍ଶ ତଥା ସେବା ବିନା ମୂଲ୍ୟରେ ପାଇପାରିବେ । ସହରାଞ୍ଚଳରେ ବସବାସ କରୁଥିବା ଦଂପତିମାନେ ପରିବାର କଲ୍ୟାଣ କେନ୍ଦ୍ର ଏବଂ ମାତୃ ମଙ୍ଗଳ କେନ୍ଦ୍ରଗୁଡ଼ିକ ସହ ଏଥିନିମନ୍ତେ ଯୋଗାଯୋଗ ସ୍ଥାପନ କରନ୍ତୁ ।

## ବାଉଣି ହଜାରରୁ ଊର୍ଦ୍ଧ୍ୱ ଗୋରୁଗାଈ ଚିକିତ୍ସିତ

କଟକ ସଘନ ଗୋ-ଉନ୍ନୟନ ଯୋଜନା ଅଞ୍ଚଳରେ ଗତ ମଇ ମାସରେ ୨,୦୩୬ଟି ଗାଈଙ୍କର କୃତ୍ରିମ ପ୍ରଜନନ ପ୍ରକ୍ରିୟାରେ ଗର୍ଭାଧାନ କରାଯିବା ସଙ୍ଗେ ସଙ୍ଗେ ପୂର୍ବରୁ ପ୍ରଜନନ କରାଯାଇଥିବା ଗାଈଙ୍କଠାରୁ ୪୬୯ଟି ମାଈ ଓ ୪୭୭ଟି ଅଣ୍ଡିରା ଏପରି ମୋଟ ୯୪୬ଟି ଉନ୍ନତ ସଂକର ବାଛୁରୀ ଜନ୍ମିଛନ୍ତି । ଉକ୍ତ ମାସରେ ୨୨,୮୦୩ଟି ଗୋରୁଙ୍କର ସାଧାରଣ ରୋଗର ଚିକିତ୍ସା କରାଯିବା ସଙ୍ଗେ ସଙ୍ଗେ ୩୦୦୫ଟି ଗୋରୁଙ୍କୁ ବିଭିନ୍ନ ସଂକ୍ରାମକ ରୋଗର ପ୍ରତିଷେଧକ ଟିକା ଦିଆଯାଇଛି ଏବଂ ୯୫୫ଟି ଅଣ୍ଡିରା ବାଛୁରୀଙ୍କର ଧରାଣ କରାଯାଇଛି । ଏହା ବ୍ୟତୀତ ୫ ହଜାର ଘାସମୂଳ ଯୋଗାଇ ଦିଆଯାଇ ଚାଷୀଙ୍କ ଅଧ ଏକର ପରିମିତ ଜମିରେ ୬ଟି ଘାସଚାଷ କ୍ଷେତ୍ର ଆରମ୍ଭ କରାଯାଇଛି ।

## ବିକଳାଙ୍ଗଙ୍କୁ କୃତ୍ରିମ ଅଙ୍ଗପ୍ରତ୍ୟଙ୍ଗ ଯୋଗାଣ

ଗତ ଜୁଲାଇ ୨ ତାରିଖ ଦିନ ଅବକାରୀ ରାଷ୍ଟ୍ରମନ୍ତ୍ରୀ ଶ୍ରୀ ନାଗାର୍ଜୁନ ପ୍ରଧାନ ଫୁଲବାଣୀ ଜିଲ୍ଲା ବାଲିଗୁଡ଼ା ବନବାସୀ ସେ୍ୱଚ୍ଛାସେବୀ ଅନୁଷ୍ଠାନ ସହଯୋଗରେ ଜାତୀୟ ପୁନର୍ବାସ ପ୍ରଶିକ୍ଷଣ ଓ ଗବେଷଣା ପ୍ରତିଷ୍ଠାନ ଆନୁକୂଲ୍ୟରେ ପରିଚାଳିତ ହେଉଥିବା ନିର୍ମାଣ ଶିବିର ପରିଦର୍ଶନ କରିଥିଲେ । ସରକାରୀ ସଂସ୍ଥା ଓ ସ୍ୱେଚ୍ଛାସେବୀ ସଂସ୍ଥାମାନେ ପରସ୍ପର ମଧ୍ୟରେ ସମନ୍ୱୟ ରକ୍ଷା କରି ଏପରି ଜନହିତକର କାର୍ଯ୍ୟ ଶୃଙ୍ଖଳିତ ରୂପେ କରିପାରିବେ ବୋଲି ସେ ଆଶା ପ୍ରକାଶ କରିଥିଲେ । ଉକ୍ତ ଅନୁଷ୍ଠାନ ଗତ ଜୁନ୍ ୨୩ ତାରିଖଠାରୁ ଶାରୀରିକ ବିକଳାଙ୍ଗ ଲୋକଙ୍କୁ ଚିହ୍ନଟ କରି ସେମାନଙ୍କୁ କୃତ୍ରିମ ଅଙ୍ଗ ପ୍ରତ୍ୟଙ୍ଗ ଯୋଗାଇ ଦେବା ଓ ସେଗୁଡ଼ିକର ବ୍ୟବହାର ସଂପର୍କୀୟ ତାଲିମ ଦେବା ବ୍ୟବସ୍ଥା କରୁଛନ୍ତି । ଇତିମଧ୍ୟରେ ଏହି ଅନୁଷ୍ଠାନ ତରଫରୁ ୬୦ଜଣ ବିକଳାଙ୍ଗ ଲୋକଙ୍କୁ ଚିହ୍ନଟ କରାଯାଇ ୩୬ ଜଣଙ୍କୁ କୃତ୍ରିମ ଅଙ୍ଗ ପ୍ରତ୍ୟଙ୍ଗ ଯୋଗାଇ ଦିଆଯାଇ ସାରିଲାଣି । ଅନ୍ୟ କେତେକ ବିଶେଷ କ୍ଷେତ୍ରରେ ଅଧିକ ଚିକିତ୍ସା ନିମନ୍ତେ ରୋଗୀମାନଙ୍କୁ କଟକ ଜିଲ୍ଲାର ଓଲଟପୁରସ୍ଥିତ ଚିକିତ୍ସାଳୟକୁ ପଠାଇବାର ବ୍ୟବସ୍ଥା ମଧ୍ୟ କରାଯାଉଛି । ଆଦିବାସୀ ରୋଗୀମାନଙ୍କୁ ବାଲିଗୁଡ଼ା ଆଇ. ଟି. ଡି. ଏ. ତରଫରୁ ଯାତାୟାତ ଖର୍ଚ୍ଚ ଇତ୍ୟାଦି ଯୋଗାଇ ଦିଆଯାଉଛି ।

ପୂର୍ବଦିନ ଶ୍ରୀ ପ୍ରଧାନ ରାଇକିଆ ବ୍ଲକ ଅନ୍ତର୍ଗତ ପେଟାପାଂଗା ଓ ଜି. ଉଦୟଗିରି ବ୍ଲକର ଲିଂଗାଗଡ଼ଠାରେ ଦୁଇଟି ଆୟୁର୍ବେଦ ଚିକିତ୍ସାଳୟ ଉଦ୍‌ଘାଟନ କରି ଏହି ଉପଲକ୍ଷେ ଆୟୋଜିତ ସଭାରେ ବିଂଶସୂତ୍ରୀ କାର୍ଯ୍ୟକ୍ରମ ତଥା କାର୍ଯ୍ୟକାରୀ କରାଯାଉଥିବା ଅନ୍ୟାନ୍ୟ କାର୍ଯ୍ୟକ୍ରମଗୁଡ଼ିକର ସଫଳ ରୂପାୟନ ପାଇଁ ଜନ ସହଯୋଗ କାମନା କରିଥିଲେ ।

---

## ମୁଣ୍ଡଲୀଠାରେ ମହାନଦୀ ସେତୁ ନିର୍ମାଣ

ଓଡ଼ିଶା ସେତୁ ନିର୍ମାଣ ନିଗମର ଉଦ୍ୟମରେ ମୁଣ୍ଡଳୀଠାରେ ମହାନଦୀ ଉପରେ ଏକ ଉଚ୍ଚ ସେତୁର ନିର୍ମାଣ କାର୍ଯ୍ୟ ତ୍ୱରାନ୍ୱିତ ହେଉଛି । ଏହି ସେତୁର ଦୈର୍ଘ୍ୟ ହେବ ୧୨୬୮ ମିଟର ଏବଂ ଏଥିରେ ପ୍ରାୟ ୧୯ ମିଟର ଦୈର୍ଘ୍ୟର ୬୬ଟି ଫୁକାର ରହିବ । ଏହିସବୁ ଫୁକାର ମଧ୍ୟରୁ ଜଳସେଚନ ବିଭାଗ ପୂର୍ବରୁ ୧୦ଟି ଫୁକାର ନିର୍ମାଣ କରିସାରିଛନ୍ତି ଏବଂ ଅବଶିଷ୍ଟ ୫୬ଟି ଫୁକାରର ନିର୍ମାଣ ଦାୟିତ୍ୱ ସେତୁ ନିଗମ ବହନ କରିଛନ୍ତି । ଆସନ୍ତା ନଭେମ୍ବର ମାସଠାରୁ ୧୯୮୭ ଜୁନ୍ ମଧ୍ୟରେ ନିଗମ ୨୫ଟି ତଳେଇ ଖୁଣ୍ଟିର ନିର୍ମାଣ କରିବେ । ୧୯୮୭ ନଭେମ୍ବର ମାସ ପୂର୍ବରୁ କେତେକ ଫୁକାରର ନିର୍ମାଣ ସଂପୂର୍ଣ୍ଣ କରିବାର କାର୍ଯ୍ୟକ୍ରମ ରହିଛି । ୧୯୮୮ ଜୁନ୍ ମାସ ସୁଦ୍ଧା ୨୪ଟି ଖୁଣ୍ଟ ଓ ୨୩ଟି ଫୁକାରର ନିର୍ମାଣ କାର୍ଯ୍ୟ ସଂପୂର୍ଣ୍ଣ କରିବାକୁ ଲକ୍ଷ୍ୟ ଧାର୍ଯ୍ୟ ହୋଇଛି ।

୪ କୋଟି ୭୪ଲକ୍ଷ ୫୦ ହଜାର ଟଙ୍କା ବ୍ୟୟ ଅଟକଳରେ ସେତୁ ନିର୍ମାଣ ନିଗମ ଗତ ଫେବୃୟାରୀ ମାସଠାରୁ ସେତୁର ନିର୍ମାଣ କାର୍ଯ୍ୟ ହାତକୁ ନେଇଛନ୍ତି । ଚଳିତ ଆର୍ଥିକ ବର୍ଷରେ ରାଜ୍ୟ ସରକାର ଏଥିପାଇଁ ଅର୍ଥ ମଞ୍ଜୁର କରିବେ । ଏହା ବ୍ୟତୀତ ୟୁନିୟନ ବ୍ୟାଙ୍କ ଅଫ୍ ଇଣ୍ଡିଆ ଏକ କୋଟି ଟଙ୍କା ଋଣ ମଞ୍ଜୁର କରି ଗତ ଆର୍ଥିକ ବର୍ଷରେ ୪୨ ଲକ୍ଷ ଟଙ୍କା ଯୋଗାଇ ଦେଇଛନ୍ତି ।

ସଂପ୍ରତି ପୂର୍ତ୍ତ ରାଷ୍ଟ୍ରମନ୍ତ୍ରୀ ମହମଦ୍ ମୁଜାଫର୍ ହୋସେନ୍ ଖାଁ ବିଭାଗୀୟ ପଦସ୍ଥ ଯନ୍ତ୍ରୀମାନଙ୍କ ଗହଣରେ ସେତୁ ନିର୍ମାଣ ଅଗ୍ରଗତି ସଂପର୍କରେ ଅନୁଧ୍ୟାନ କରିବାକୁ ମୁଣ୍ଡଳୀ ଗସ୍ତରେ ଯାଇଥିଲେ । ଏହି ସେତୁ ସଂପୂର୍ଣ୍ଣ ହେଲେ ଭୁବନେଶ୍ୱରଠାରୁ ଢେଙ୍କାନାଳ, ଅନୁଗୁଳ ଓ ସମ୍ବଲପୁର ପ୍ରଭୃତି ସ୍ଥାନକୁ ପ୍ରାୟ ୨୫ କି: ମି: ଦୂରତ୍ୱ କମିଯିବ ।

## କୋଣାର୍କ ଅଞ୍ଚଳର ଉନ୍ନୟନ

ଆନ୍ତର୍ଜାତିକ ପର୍ଯ୍ୟଟନ କେନ୍ଦ୍ର କୋଣାର୍କ ଅଞ୍ଚଳରେ ବିଭିନ୍ନ ଉନ୍ନୟନ ଯୋଜନା କାର୍ଯ୍ୟକାରୀ କରିବା ଲାଗି ସରକାର ସ୍ଥାନୀୟ ଏନ୍: ଏ: ସି: କୁ ସଂପ୍ରତି ୫ ଲକ୍ଷ ୭୭୫ ଟଙ୍କା ଅନୁଦାନ ମଞ୍ଜୁର କରିଛନ୍ତି । ତନ୍ମଧ୍ୟରେ ଗତ ଆର୍ଥିକ ବର୍ଷରେ ମଞ୍ଜୁର ହୋଇଥିବା ୪ ଲକ୍ଷ ୧୭ ହଜାର ୬୦୦ ଟଙ୍କା ଅନ୍ତର୍ଭୁକ୍ତ । ଏହି ଅର୍ଥ ମଧ୍ୟରେ ଏନ୍: ଏ: ସି: କର୍ମଚାରୀଙ୍କ ବେତନ ଓ କାର୍ଯ୍ୟାଳୟ ନିର୍ମାଣ ବାବଦରେ ମୋଟ୍ ୫୫ ହଜାର ଟଙ୍କା, ନଳକୂପ ଖନନ ପାଇଁ ୧୫ ହଜାର ଟଙ୍କା, ମାଘ ସପ୍ତମୀ ମେଳା ପାଇଁ ୨୫ ହଜାର ଟଙ୍କା ମଞ୍ଜୁର ହୋଇଥିଲା । ସେହିପରି ରାସ୍ତା ନିର୍ମାଣ ଓ ରକ୍ଷଣାବେକ୍ଷଣ ପାଇଁ ମୋଟ୍ ଏକଲକ୍ଷ ୬୨ ହଜାର ୬୦୦ ଟଙ୍କା, ପାର୍କ ନିର୍ମାଣ ପାଇଁ ୧୦ ହଜାର ଟଙ୍କା, ବନ୍ୟା କ୍ଷତିଗ୍ରସ୍ତ ରାସ୍ତାଘାଟ ଇତ୍ୟାଦି ମରାମତି ପାଇଁ ୫୦ ହଜାର ଟଙ୍କା ଏବଂ ସୁଲଭ ଶୌଚାଳୟ ନିର୍ମାଣ ପାଇଁ ଏକଲକ୍ଷ ଟଙ୍କା ଅନୁଦାନ ମଞ୍ଜୁର କରାଯାଇଛି ।

ଏହା ବ୍ୟତୀତ ଚଳିତ ଆର୍ଥିକ ବର୍ଷରେ ରାସ୍ତା ଉନ୍ନୟନ ଓ ରକ୍ଷଣାବେକ୍ଷଣ ବାବଦରେ ସମୁଦାୟ ୭୩ ହଜାର ୧୭୫ ଟଙ୍କା ଏବଂ ଏନ୍: ଏ: ସି: କର୍ମଚାରୀଙ୍କ ବେତନ ବାବଦରେ ୧୦ ହଜାର ଟଙ୍କା ମଞ୍ଜୁର କରାଯାଇଛି । ସୁଲଭ ଶୌଚାଳୟ ନିର୍ମାଣ ବାବଦରେ ମଧ୍ୟ ଅଧିକ ୨୫ ହଜାର ଟଙ୍କା ଅନୁଦାନ ମଞ୍ଜୁର କରିବାକୁ ବ୍ୟବସ୍ଥା ହେଉଛି ।

## ଭୁବନେଶ୍ୱରରେ କଂପ୍ୟୁଟର ତାଲିମ

ବିଜ୍ଞାନ, କାରିଗରୀ ଓ ପରିବେଶ ବିଭାଗ ଆନୁକୂଲ୍ୟରେ ଓଡ଼ିଶା କଂପ୍ୟୁଟର ଆପ୍ଲିକେସନ ସେଣ୍ଟର ଏବଂ ଭାରତ ସରକାରଙ୍କ ନେସନ୍ୱାଲ ଇନ୍‌ଫରମାଟିକ୍ ସେଣ୍ଟର ପକ୍ଷରୁ ଭୁବନେଶ୍ୱରଠାରେ ଏକ ୧୮ଦିନିଆ କଂପ୍ୟୁଟର ତାଲିମ ପାଠ୍ୟକ୍ରମର ଆୟୋଜନ କରାଯାଇଛି । ରାଜସ୍ୱ ପର୍ଷଦ ସଭ୍ୟ ଶ୍ରୀ କେ: ଶ୍ରୀନିବାସନ୍ ଏହି ପାଠ୍ୟକ୍ରମ ଉଦ୍‌ଘାଟନ କରି ସରକାରୀ କାର୍ଯ୍ୟାଳୟ ଏବଂ ଅନ୍ୟାନ୍ୟ ସରକାରୀ ସଂସ୍ଥାଗୁଡ଼ିକରେ ତୁରନ୍ତ ତଥ୍ୟ ସଂଗ୍ରହ ପାଇଁ କଂପ୍ୟୁଟର ଯନ୍ତ୍ର ବ୍ୟବହାରର ଉପାଦେୟତା ଓ ଆବଶ୍ୟକତା ସଂପର୍କରେ ଗୁରୁତ୍ୱ ଆରୋପ କରିଥିଲେ । ଏ କ୍ଷେତ୍ରରେ ଆମ ଦେଶ ଅଚିରେ ଆନ୍ତର୍ଜାତିକ ସ୍ତରରେ ଉପଯୁକ୍ତ ମାନ ଓ ଦକ୍ଷତା ହାସଲ କରିବା ଉଚିତ ବୋଲି ସେ ମତ ପ୍ରକାଶ କରିଥିଲେ ।

କଂପ୍ୟୁଟର ଆପ୍ଲିକେସନ୍ କେନ୍ଦ୍ରର ଚିଫ୍ ଏକ୍‌ଜିକ୍ୟୁଟିଭ୍ ଶ୍ରୀ ଏନ୍. ସି. ପାଢ଼ୀ ଏହି ପାଠ୍ୟକ୍ରମର ଉଦ୍ଦେଶ୍ୟ ସଂପର୍କରେ ସୂଚନା ଦେଇଥିଲେ । ସିନିୟର ସାଇଣ୍ଟିଷ୍ଟ ଡକ୍ଟର ଏସ୍. ତରାସିଆ ତାଲିମ କାର୍ଯ୍ୟକ୍ରମର ସମନ୍ୱୟ ରକ୍ଷା କରୁଛନ୍ତି । ବିଭିନ୍ନ ସରକାରୀ ବିଭାଗରୁ ପ୍ରାୟ ୬୦ ଜଣ ବ୍ୟକ୍ତି ଏଥିରେ ଅଂଶ ଗ୍ରହଣ କରୁଛନ୍ତି ।

## ଅଣ-କୁଶଳୀ ଶ୍ରମିକଙ୍କ ସର୍ବନିମ୍ନ ମଜୁରୀ ବୃଦ୍ଧି

ରାଜ୍ୟସରକାରଙ୍କ ଶ୍ରମ ଓ ନିଯୋଜନ ବିଭାଗ ୩୫ଟି ନିଯୋଜନରେ ନିଯୁକ୍ତ ସମସ୍ତ ଶ୍ରେଣୀର ଅଣ-କୁଶଳୀ ଶ୍ରମିକଙ୍କ ସର୍ବନିମ୍ନ ଦୈନିକ ମଜୁରୀ ୮ଟ ୭.୫୦ ପଇସାରୁ ୧୦ ଟଙ୍କାକୁ ବୃଦ୍ଧି କରିଛନ୍ତି । ଏହା ବ୍ୟତୀତ ପ୍ରଥମ ଥର ପାଇଁ ଛୋଟ ଓ ଛୋଟ ସୂତୁଲୀ ଶିଳ୍ପରେ ନିଯୁକ୍ତି ଏହି ଶ୍ରେଣୀର ଶ୍ରମିକଙ୍କ ସର୍ବନିମ୍ନ ଦୈନିକ ମଜୁରୀ ୧୦ ଟଙ୍କା ଧାର୍ଯ୍ୟ ହୋଇଛି । ଏହି ବର୍ଦ୍ଧିତ ଓ ନିର୍ଦ୍ଧାରିତ ହାର ସମଗ୍ର ରାଜ୍ୟରେ ଚଳିତ ଜୁଲାଇ ୧୫ ତାରିଖଠାରୁ କାର୍ଯ୍ୟକାରୀ ହେବ । ଏହି ବର୍ଦ୍ଧିତ ମଜୁରୀ ପାଇଁ ଜଣେ ବୟସ୍କ ଶ୍ରମିକଙ୍କୁ ଦୈନିକ ୮ ଘଣ୍ଟା କାର୍ଯ୍ୟ କରିବାକୁ ପଡ଼ିବ । ୧୯୮୪ ମସିହା ନଭେମ୍ବର ମାସରେ ଏହି ସମସ୍ତ ନିଯୋଜନର ଅଣ-କୁଶଳୀ ଶ୍ରମିକଙ୍କ ମଜୁରୀ ବୃଦ୍ଧି କରାଯାଇଥିଲା ।

ଯେଉଁ ନିଯୋଜନର ଅଣ-କୁଶଳୀ ଶ୍ରମିକଙ୍କ ମଜୁରୀ ବୃଦ୍ଧି କରାଯାଇଛି, ସେଗୁଡ଼ିକ ହେଲା :–ନଡ଼ିଆ କତା ଶିଳ୍ପ, ଯନ୍ତ୍ରଚାଳିତ ତନ୍ତ ଶିଳ୍ପ, ଟ୍ରଙ୍କ୍, ସୁଟ୍‌କେଶ୍ ଓ ବାଲ୍‌ଟି ତିଆରି ଶିଳ୍ପ, କଟନ୍ ସ୍ପିନିଂ ଓ ପ୍ରୋସେସିଂ ଶିଳ୍ପ, ବ୍ରାସ୍ ଓ ଧାତୁ ତିଆରି ଶିଳ୍ପ, କୋକ୍ ଓ ଜାଳେଣି କୋଇଲା ପ୍ରସ୍ତୁତି ଶିଳ୍ପ, ପାଉରୁଟି, ମିଷ୍ଟାନ୍ନ ଓ ବିସ୍କୁଟ୍ ତିଆରି ଶିଳ୍ପ, ବ୍ରାସ ଓ ଧାତୁ ତିଆରି ଶିଳ୍ପ, ଖେଳଣା ସମେତ ପ୍ଲାଷ୍ଟିକ୍ ଜିନିଷ ପ୍ରସ୍ତୁତି ଶିଳ୍ପ, ରଙ୍ଗ ଓ ବାର୍ଣ୍ଣିସ୍ ପ୍ରସ୍ତୁତି ଶିଳ୍ପ, ସିମେଣ୍ଟ ପାଇପ୍ ଓ ଆନୁଷଙ୍ଗିକ ଉତ୍ପାଦନ ଶିଳ୍ପ, ଖଦୀ ଓ ଗ୍ରାମୋଦ୍ୟୋଗ ଶିଳ୍ପ ସମେତ ଖଣ୍ଡସାରୀ ଓ ଆନୁଷଙ୍ଗିକ ଜିନଷ ପ୍ରସ୍ତୁତି ଶିଳ୍ପ, ଥଣ୍ଡା ପାନୀୟ, ସୋଡା ଓ ଅନ୍ୟାନ୍ୟ ଆନୁଷଙ୍ଗିକ ପ୍ରସ୍ତୁତି ଶିଳ୍ପ, ପେଟ୍ରୋଲ ଓ ଡିଜେଲ ପଂପ, ଗାଲିଚା ବୁଣିବା ଶିଳ୍ପ, ବିଦ୍ୟୁତ୍ ବଲବ ତିଆରି ଶିଳ୍ପ, କାଚ ଶିଳ୍ପ, ଆୟୁର୍ବେଦ୍ ଓ ୟୁନାନୀ ଫର୍ମାସୀ, କଂସା ଓ ପିତଳ ବାସନ ଶିଳ୍ପ, ଲଣ୍ଡ୍ରି ଓ ଡ୍ରାଇଓାସିଂ ସାବନ ଓ ଧୁଲେଇ ଗୁଣ୍ଡ ପ୍ରସ୍ତୁତି ଶିଳ୍ପ, କାଠକାମ ଓ ଆସବାବ ପତ୍ର ତିଆରି ସଂସ୍ଥା, କାଜୁବାଦାମ ପ୍ରୋସେସିଂ ସଂସ୍ଥା, ଦରି ତିଆରି ଶିଳ୍ପ, ସୂତା ମାଜିବା ଓ ରଙ୍ଗ କରିବା, ସିଲେଇ କରିବା ଓ ଏମ୍ବ୍ରୋଡେରୀ ଶିଳ୍ପ, କଣ୍ଟା ଓ ପିନ୍ ତିଆରି ଶିଳ୍ପ, ଲୁହା ଢ଼ଳେଇ କାରଖାନା, ବରଫ କଳ ଓ ଶୀତଳ ଭଣ୍ଡାର, ରେଡିଓ ତିଆରି ଶିଳ୍ପ, ଆଲୁମିନିୟମ୍ ଓ ଇଣ୍ଡାଲିୟମ୍ ବାସନ ତିଆରି କାରଖାନା, ନିୟନ୍ତ୍ରିତ ବଜାର, ବାଣିଜ୍ୟ ସମିତି, ସମବାୟ ସମିତି ଓ ବ୍ୟାଙ୍କ, ମାଟିପାତ୍ର ଶିଳ୍ପ, ଦିଆସିଲି, ବାଣ ଓ ବସଫୋରକ ତିଆରି ସଂସ୍ଥା, କାଗଜ ଓ କାର୍ଡବୋର୍ଡ ଶିଳ୍ପ ଏବଂ ମତ୍ସ୍ୟ ଓ ସମୁଦ୍ରଜାତ ଖାଦ୍ୟଶିଳ୍ପ । ○




ଶ୍ରୀ ବିଚିତ୍ରାନନ୍ଦ କର

ସମ୍ବାଦ ପତ୍ର କହିଲେ, ଇଂରାଜୀରେ ବର୍ତ୍ତମାନ ଯାହାକୁ 'ପ୍ରେସ୍' ବୋଲି କହୁଛନ୍ତି । ଅବଶ୍ୟ, ଏଇ ଇଂରାଜୀ 'ପ୍ରେସ୍' ଶବ୍ଦର ଅର୍ଥ ମୁଦ୍ରଣ ଯନ୍ତ୍ର । କିନ୍ତୁ, ଆନ୍ତର୍ଜାତିକ କ୍ଷେତ୍ରରେ 'ପ୍ରେସ୍' ଅର୍ଥ ସମ୍ବାଦ ପତ୍ର ବୋଲି ଗୃହୀତ ହୋଇଗଲାଣି । ଏଇ ସମ୍ବାଦ ପତ୍ର ଏକ ଗଣ ମାଧ୍ୟମ । ଅତିଶୀଘ୍ର ସମ୍ବାଦ ପରିବେଷଣ, ପ୍ରଚାର ଓ ପ୍ରସାର ପାଇଁ ଏହି ସବୁ ଗଣ ମାଧ୍ୟମ ଯଦିଓ ବ୍ୟବହୃତ ଓ ଖେଳ ବିବରଣୀ ତଥା ନେତାଙ୍କ ଭାଷଣ ସାଙ୍ଗକୁ ଚିତ୍ର ଯଦିଓ ଟେଲିଭିଜନରେ ଆମେ ଦେଖି ପାରୁଛୁ ଏବଂ ଏଥିପାଇଁ ଖୁବ୍ ଭିଡ ଜମୁଛି ଓ ଆଗ୍ରହ ବଢୁଛି, ତଥାପି ସମ୍ବାଦ ପତ୍ରର ଆବଶ୍ୟକତା ଓ ଆଦର ଆଦୌ ଊଣା ହୋଇ ନାହିଁ । କାରଣ ସମ୍ବାଦ କିମ୍ବା ଘଟଣାର ବିବରଣୀ ବିସ୍ତୃତ ଭାବରେ ପଢ଼ିବା ପାଇଁ, ମତାମତଗୁଡ଼ିକ ଜାଣିବା ପାଇଁ ଓ ପରବର୍ତ୍ତୀ ରେଫରେନ୍ସ ପାଇଁ ସମ୍ବାଦ ପତ୍ରର ପ୍ରୟୋଜନ ରହିଛି ।

ସମ୍ବାଦ ପରିବେଷଣ କରେ ବୋଲି ଏହାର ନାମ ସମ୍ବାଦ ପତ୍ର । ଅବଶ୍ୟ କେବଳ ସମ୍ବାଦ ନୁହେଁ; ମତାମତ, ଆଲୋଚନା ଓ ବିଭିନ୍ନ ବିଷୟକ ବିବରଣୀ ସମ୍ବାଦ ପତ୍ରରେ ଏବେ ରହୁଛି । କିନ୍ତୁ ସମ୍ବାଦ ହିଁ ମୁଖ୍ୟ । ତାହାହେଲେ ସମ୍ବାଦ କିଏ ?

ମଣିଷ ଖାଦ୍ୟ ଖାଏ, ଏହା ସମ୍ବାଦ ନୁହେଁ । ମଣିଷ ଯଦି ଖାଦ୍ୟାଭାବରୁ ଅନାହାରରେ ରହି ମୃତ୍ୟୁ ଲଭିଲା, ତେବେ ତାହା ସମ୍ବାଦ । ବାଘ ବଣରେ କିମ୍ବା ଚିଡ଼ିଆଖାନାରେ ରହେ, ସମ୍ବାଦ ନୁହେଁ । ବାଘ ଯଦି ମଣିଷ ସହ ଏକାଠି ବାସ କରେ, ତେବେ ତାହା ଚମତ୍କାର ସମ୍ବାଦ । ନାରୀର ସନ୍ତାନ ପ୍ରସବ ସମ୍ବାଦ ନୁହେଁ, ମାତ୍ର ଟେଷ୍ଟଟ୍ୟୁବ୍ ସନ୍ତାନ ଏକ ଚମକପ୍ରଦ ସମ୍ବାଦ । ଦିନେ ସାଇକେଲ୍, ଗ୍ରାମଫୋନ୍, କାର୍, ଟେଲିଫୋନ୍, ରେଡ଼ିଓର ଆବିଷ୍କାର ସମ୍ବାଦ ସୃଷ୍ଟି କରିଥିଲା, ଏବେ ନୁହେଁ । ମାଟିତଳୁ ପଥର ଓ ହାଡ ବାହାରିବା ସମ୍ବାଦ ନୁହେଁ, କିନ୍ତୁ ମାଟିଗର୍ଭରୁ ପ୍ରାଚୀନ କୀର୍ତ୍ତି କିମ୍ବା ମୂଲ୍ୟବାନ ଧାତୁର ସନ୍ଧାନ ଚହଳ ସୃଷ୍ଟିକାରୀ ସମ୍ବାଦ । ଦେଶରେ ଶାନ୍ତ ଅବସ୍ଥା କିମ୍ବା ସ୍ଥିତାବସ୍ଥା ସାଧାରଣତଃ ସମ୍ବାଦ ନୁହେଁ; ମାତ୍ର ଅଶାନ୍ତି, ଅସନ୍ତୋଷ, ଗଣ୍ଡଗୋଳ, ହିଂସାକାଣ୍ଡ ଯଦି ଘଟେ, କିମ୍ବା ଦେଶ ଯଦି ଅନ୍ୟ ଦ୍ୱାରା ଆକ୍ରାନ୍ତ ହୁଏ ଏବଂ ଦୁର୍ଯୋଗ ଦୁର୍ବିପାକ ଯଦି ସଂଘଟିତ ହୁଏ, ତେବେ ତାହା ନିଶ୍ଚିତ ଭାବରେ ସମ୍ବାଦ ।

ଘଟିଥିବା କିମ୍ବା ଘଟୁଥିବା ଘଟଣାର ବିବରଣୀ ତ ସମ୍ବାଦ; ଘଟଣାର ପୂର୍ବ ପ୍ରସ୍ତୁତି ଓ ପରିସ୍ଥିତିର ବର୍ଣ୍ଣନା ମଧ୍ୟ ସମ୍ବାଦ । ଆଉ ମଧ୍ୟ ସାମ୍ବାଦିକ ନିଜର ବୁଦ୍ଧି ଖଟାଇ, ଲେଖନି ଚଳାଇ ସମ୍ବାଦ ସୃଷ୍ଟି କରିଥାଏ । ଜଣେ ଲେଖକର ଲେଖନୀ ମୁନରେ ଯେପରି ଆଲୋଡନ ସୃଷ୍ଟି ହୋଇପାରେ ସେହିଭଳି ସମ୍ବାଦ ପତ୍ର ମାଧ୍ୟମରେ ସତ୍ୟ ସମ୍ବାଦ ଓ ଦୃଢ ମତ ଦ୍ୱାରା ସକ୍ରିୟ ଆଲୋଡନ ଓ ଆନ୍ଦୋଳନ ସମ୍ଭବ ହୋଇଥାଏ । ପ୍ରବଳ ପ୍ରତିକ୍ରିୟା ସୃଷ୍ଟି ହୋଇଥାଏ । ଜନମତ ଜାଗ୍ରତ ହୋଇଥାଏ । ରେଡ଼ିଓ, ଟେଲିଭିଜନ ଯଦିଓ ସମ୍ବାଦ ପରିବେଷଣ କରିଥାନ୍ତି; ମାତ୍ର ବିଭିନ୍ନ ଧରଣର ସମ୍ବାଦ ଓ ମତାମତ ପରିବେଷଣ କରିବାରେ ଟେଲିଭିଜନ ଓ ରେଡ଼ିଓରେ ସୁବିଧା ସୁଯୋଗ, ସମ୍ବାଦ ପତ୍ରଠାରୁ ସୀମିତ ' ହେଣୁ, ସମ୍ବାଦପତ୍ର ଗୁରୁତ୍ୱ ବଢୁଛି ।

ଏହା ନିଶ୍ଚିତ କଥା ଯେ, ଜନସଂଖ୍ୟା ବୃଦ୍ଧି ପାଉଛି ଓ ପାଠକ ସଂଖ୍ୟା ବଢୁଛି । ପାଠକ ସଂଖ୍ୟା ବଢିବା ସଂଗେ ସଂଗେ ସମ୍ବାଦ ପତ୍ରର ସଂଖ୍ୟା ଓ ପ୍ରସାର ମଧ୍ୟ ବଢୁଛି । ଦୁଇ ଦଶନ୍ଧି ତଳେ ଯେଉଁଠାରେ ସମ୍ବାଦ ପତ୍ରର ସଂଖ୍ୟା ତିନି ବା ଚାରି ଥିଲା, ଏବେ ସେଠାରେ ପନ୍ଦର ବା କୋଡ଼ିଏ ହେଲାଣି । ଏ ଦିଗରେ ଓଡ଼ିଶାର ଦୃଷ୍ଟାନ୍ତ ଆମ ଆଗରେ । ସମ୍ବାଦ ପତ୍ରର ଗୁରୁତ୍ୱ ବଢ଼ିଛି ଓ ସମ୍ବାଦ ପତ୍ର ପ୍ରକାଶ କରିବାରେ ଆଗ୍ରହ ବଢ଼ିଛି ।

ପାଖେ ଛଅ ବର୍ଷ ତଳେ ପୃଥିବୀରେ ମୁଦ୍ରିତ ସମ୍ବାଦ ପତ୍ର ନଥିଲା । ଅଢେଇ ଶହ ବର୍ଷ ତଳେ ଭାରତ ବର୍ଷରେ ସମ୍ବାଦ ପତ୍ର ପ୍ରକାଶ ପାଇନଥିଲା । ଏପରିକି, ଓଡ଼ିଶାରେ ମୁଦ୍ରିତ ସମ୍ବାଦ ପତ୍ରର ପ୍ରକାଶନ କାଳ ଦେଢ଼ଶହ ବର୍ଷରୁ ବେଶୀ ନୁହେଁ । କୁହାଯାଉଛି ଯେ, ୧୩୩୭ ଖ୍ରୀଷ୍ଟାବ୍ଦରେ ଇଟାଲିର ଭେନିସ୍ ସହରରୁ 'ଗେଜେଟ୍' ନାମକ ଦୈନିକ କାଗଜ ପ୍ରକାଶ ପାଇଲା । ଏହାହିଁ ସମ୍ଭବତଃ, ପ୍ରଥମ ମୁଦ୍ରିତ ସମ୍ବାଦ ପତ୍ର । ଭାରତରେ ସେହିଭଳି ପ୍ରଥମ ମୁଦ୍ରିତ ସମ୍ବାଦ ପତ୍ର ୧୭୮୦ ଖ୍ରୀଷ୍ଟାବ୍ଦରେ କଲିକତାରୁ ପ୍ରକାଶ ପାଇଥିଲା ଏବଂ ତାହାର ନାମ ଥିଲା 'ବେଙ୍ଗଲ୍‌ଗେଜେଟ୍' । ଇଂରେଜ ବ୍ୟକ୍ତି ଜେମ୍ସ ଅଗଷ୍ଟସ୍ ହିକି ଏ ସମ୍ବାଦ ପତ୍ର ପ୍ରକାଶ କରିଥିଲେ । ଭାରତର ପ୍ରେସ କମିଶନ ରିପୋର୍ଟରୁ ଏହା ଜଣାପଡେ ।

### ସମ୍ବାଦ ପତ୍ର ପ୍ରକାଶନର ଉଦ୍ଦେଶ୍ୟ

ଭାରତରେ ଇଂରେଜ ଶାସନ କାଳରେ ମଧ୍ୟ ଅନ୍ୟଜଣେ ଇଂରେଜ ବ୍ୟକ୍ତି ଜେ.ଏସ୍. ବକିଂହାମ୍ 'କାଲକଟା ଜର୍ଣ୍ଣାଲ୍' ନାମରେ ଏକ ଇଂରାଜୀ ଅର୍ଦ୍ଧ ସାପ୍ତାହିକ ପ୍ରକାଶ କରିଥିଲେ । ସେହି ପତ୍ରିକାର ନୀତି ସଂପର୍କରେ ସେ ସୂଚନା ଦେଇଥିଲେ– ଶାସକ ବର୍ଗଙ୍କ କର୍ତ୍ତବ୍ୟ ସମ୍ବନ୍ଧରେ ସେମାନଙ୍କୁ ନିଷ୍ଠୁର ଭାବେ ସତର୍କ କରାଇଦେବା ଏବଂ ଅପ୍ରିୟ ସତ୍ୟକଥା ପ୍ରକାଶ କରିବା । ଭାରତର ବିଶିଷ୍ଟ ସମାଜସେବୀ ତଥା ସମାଜ ସଂସ୍କାରକ ରାଜା ରାମମୋହନ ରାୟ କହିଥିଲେ– ଜନସାଧାରଣଙ୍କୁ ସାମାଜିକ ଉନ୍ନତି ଦିଗରେ ସଚେତନ କରାଇବା ଏବଂ ପ୍ରଜାମାନଙ୍କର ପ୍ରକୃତ ଅବସ୍ଥା ଶାସକ ମଣ୍ଡଳୀକୁ ଜଣାଇବା ଓ ଶାସକ ମଣ୍ଡଳୀର ଆଇନ୍ କାନୁନ୍ ଓ ବ୍ୟବସ୍ଥା ସମ୍ବନ୍ଧରେ ପ୍ରଜାମାନଙ୍କୁ ପରିଚିତ କରାଇବା ତାଙ୍କ ପତ୍ରିକାର ଲକ୍ଷ୍ୟ ।

### ସମାଜ ଓ ଶାସନର ସମାଲୋଚନା

ଅବଶ୍ୟ, ଏହା ଥିଲା ପରବର୍ତ୍ତୀ କାଳରେ ସମ୍ବାଦ ପତ୍ରର ନୀତି, ଲକ୍ଷ୍ୟ ଓ ଉଦ୍ଦେଶ୍ୟ । ମାତ୍ର, ସମ୍ବାଦ ପତ୍ରର ପ୍ରଥମ ପ୍ରକାଶ କାଳରେ ଜନସାଧାରଣଙ୍କୁ କେବଳ ବିଭିନ୍ନ ସମ୍ବାଦ ଜଣାଇବା ଥିଲା ସମ୍ବାଦ ପତ୍ରର କାର୍ଯ୍ୟ । ବିଭିନ୍ନ ଅଞ୍ଚଳର ଓ ଘଟଣାର ନିଚ୍ଛକ ସମ୍ବାଦ ପରିବେଷଣ କରୁଥିଲା ସମ୍ବାଦ ପତ୍ର । କ୍ରମେ, ନିଜର ଗଠନ ମୂଳକ ମତାମତ ପ୍ରକାଶ କରି ସେ ଦିଗରେ ଲୋକଙ୍କୁ ଆଗ୍ରହୀ କରାଇବାର ଭୂମିକା ଗ୍ରହଣ କଲେ ସମ୍ବାଦ ପତ୍ରର ଉଦ୍ୟୋକ୍ତା ବା ସଂପାଦକଗଣ । ପରେ ସମାଜର ଚିନ୍ତାଶୀଳ ଓ ବୁଦ୍ଧିଜୀବିମାନଙ୍କର ମତକୁ ଉପସ୍ଥାପନ କରାଗଲା ସମ୍ବାଦ ପତ୍ରରେ, ଜନସାଧାରଣଙ୍କର ଅବଗତି ଓ ବିଚାର ନିମନ୍ତେ । ଏଥିରେ ଲୋକେ ନିଜ ରୁଚି ଅନୁସାରେ ପ୍ରଭାବିତ ହେଉଥିଲେ, କିମ୍ବା ଏହାକୁ ଉପେକ୍ଷା କରୁଥିଲେ । ସାଧାରଣତଃ ଶାସନ କ୍ଷେତ୍ର ପାଇଁ ଏହା ଉଦ୍ଦିଷ୍ଟ ଥିଲା ଓ ଶାସକମାନଙ୍କୁ ଅଧିକ ସଂଯତ ଓ କର୍ମତତ୍ପର କରାଇବାର ଏକ ଅସ୍ତ୍ର ଥିଲା । ତା'ପରେ କେବଳ ଶାସକ ନୁହନ୍ତି, ସମାଜପତିମାନଙ୍କର ଗର୍ହିତ ଓ ଅନ୍ୟାୟ କାର୍ଯ୍ୟ କଳାପକୁ ମଧ୍ୟ ସମାଲୋଚନା କରାଗଲା । କେହି କେହି ମଧ୍ୟ ହାସ୍ୟୋଦ୍ଦୀପକ ବ୍ୟଙ୍ଗଚିତ୍ର ବା କାର୍ଟୁନ୍ ପ୍ରକାଶ କଲେ । ସମାଜ ଓ ଶାସନକୁ ସମାଲୋଚନା କାର୍ଟୁନ୍ ମାଧ୍ୟମରେ ପ୍ରକାଶିତ ହେଲା । ସଂପୃକ୍ତ ବ୍ୟକ୍ତି ଓ ତାଙ୍କ ସମର୍ଥକଙ୍କ ପାଇଁ ଏହା ଦୃଷ୍ଟିକଟୁ ଓ ଅରୁଚିକର ହେଲେ ମଧ୍ୟ, ସାଧାରଣରେ ଏହା ଆଦୃତ ହେଲା । ବେଶୀ କିଛି ନ ଲେଖି କେବଳ କାର୍ଟୁନ୍ ମାଧ୍ୟମରେ ଅନେକ କିଛି ଦୃଢ଼ ଭାବରେ ପ୍ରକାଶ କରିବା ସମ୍ଭବ ହେଲା ।

### କାମଳ ସାମ୍ବାଦିକତା

ଶାସନରେ ନାମା ପଦବୀରେ ଥିବା ବ୍ୟକ୍ତି ଅଥବା ସମାଜପତିମାନଙ୍କୁ ଯେତେବେଳେ ସମାଲୋଚନା ସମ୍ବାଦ ପତ୍ରରେ ଚାଲିଲା ସେତେବେଳେ କୌଣସି କୌଣସି ସମ୍ବାଦ ପତ୍ର କିଛି ସ୍ୱାର୍ଥ ଉଦ୍ଦେଶ୍ୟରେ ବ୍ୟକ୍ତିଗତ ନିନ୍ଦା ଓ କୁତ୍ସାରଟନା କଲେ, ଅସୂୟାମୂଳକ ତଥା ଉଦ୍ଦେଶ୍ୟ ପ୍ରଣୋଦିତ ସମ୍ବାଦ ଛାପିଲେ । ଚରିତ୍ର ସଂହାର ଚାଲିଲା । ମିଥ୍ୟା, କପୋଳ କଳ୍ପିତ, ଅତିରଞ୍ଜିତ ଓ ବିକୃତ ସମ୍ବାଦ ମଧ୍ୟ ପ୍ରକାଶ ପାଇଲା । ଏହାହିଁ ହେଲା କାମଳ ସାମ୍ବାଦିକତା ବା

କୌଣସି ଧନୀ ବ୍ୟକ୍ତି, ପ୍ରଭାବଶାଳୀ ବା ପଦାଧିକାରୀ ବ୍ୟକ୍ତି କିମ୍ବା କୌଣସି ବ୍ୟବସାୟିକ ସଂସ୍ଥା ବିରୁଦ୍ଧରେ ସମ୍ବାଦ ପ୍ରକାଶ କରିବାର ଧମକ ଦେଇ କେହି କେହି ଅର୍ଥ ଆଦାୟ କଲେ । ଅଥବା, ଅର୍ଥ ଇତ୍ୟାଦିର ଆଶା ଓ ପ୍ରଲୋଭନରେ ସମ୍ବାଦକୁ ସତ ମିଛ ଓ ବିକୃତ କରି ପ୍ରକାଶ କଲେ । ଏହାକୁ ସମ୍ବାଦ ପତ୍ରର 'ବ୍ଲାକ୍ ମେଲିଂ' ବୋଲି କୁହାଯାଏ ।

କାମଳ ସାମ୍ବାଦିକତା ଓ ବ୍ଲାକ୍ ମେଲିଂ ଯୋଗୁଁ ସଂପୃକ୍ତ ସମ୍ବାଦ ପତ୍ର ଗୁଡ଼ିକର ବଦନାମ ହୁଏ । ସେମାନେ ନିନ୍ଦିତ ହୋଇ ଯାଆନ୍ତି ଲୋକ ଚକ୍ଷୁରେ । କାଳକ୍ରମେ ସେହି ସମ୍ବାଦ ପତ୍ରର ମର୍ଯ୍ୟାଦା, ଓ ଭାବମୂର୍ତ୍ତି ନଷ୍ଟ ହୋଇଯାଏ । ଅନ୍ୟ ପକ୍ଷରେ, ଏହି କାମଳ ସାମ୍ବାଦିକତା ତଥା ବ୍ୟକ୍ତିଗତ ନିନ୍ଦା, କୁତ୍ସାରଟନା ତଥା ଚରିତ୍ର ସଂହାର ହେତୁ ଅନେକ ବ୍ୟକ୍ତିଙ୍କର ସାମାଜିକ ପ୍ରତିଷ୍ଠା ନଷ୍ଟ ହୁଏ, ସମ୍ମାନ କ୍ଷୁର୍ଣ୍ଣ ହୁଏ । ଜଣେ ବ୍ୟକ୍ତି ବା ଗୋଟାଏ ସଂସ୍ଥା ବିରୁଦ୍ଧରେ ସତ ମିଛ କଥା ବାରମ୍ବାର ପ୍ରକାଶ କଲେ, କାଳକ୍ରମେ ସେହି ବ୍ୟକ୍ତି ବା ସଂସ୍ଥା ସଂପର୍କରେ ଲୋକଙ୍କ ମନରେ ସନ୍ଦେହ ଜାତ ହୁଏ । 'ହଁ ହୋଇଥିବ; ନିଆଁ ନଥିଲେ ଧୂଆଁ କୁଆଡୁ ଆସନ୍ତା' ଏହିଭଳି ମନ୍ଦ କଥା ପ୍ରଚାରିତ ହୋଇ ଯାଏ । ଜନସାଧାରଣରେ ତାହା ଆଲୋଚନାର ବିଷୟବସ୍ତୁ ହୋଇ ପଡେ । ଲୋକେ ତାର ଭଲ ଗୁଣ ବା ଭଲ କାମକୁ ଭୁଲି ଯାଇ ପ୍ରଚାରିତ ମନ୍ଦ ଗୁଣକୁ ବଢ଼େଇ ଚଢ଼େଇ ବଖାଣିବାରେ ଶତମୁଖ ହୋଇ ଉଠନ୍ତି । ସେଥିପାଇଁ ଯେତେ ଯାହା ପ୍ରତିବାଦ, ଖଣ୍ଡନ ଓ ସ୍ପଷ୍ଟୀକରଣ ଦେଲେ ବି, ମନ୍ଦର ଗନ୍ଧ ଶୀଘ୍ର ଲିଭିଯାଏ ନାହିଁ । କାମଳ ସାମ୍ବାଦିକତା ହେଉଛି, ସଜମାଛରେ ପୋକ ପକାଇବା । କେତେକ କେବଳ "ଡ୍ରେନ୍ ଇନ୍ସପେକ୍ଟର" ଭଳି ନର୍ଦ୍ଦମା ଖୋଜନ୍ତି । ଅନୁଗ୍ରହୀତ ହୋଇ ତାହାର ସ୍ତୁତି ଗାନ କରନ୍ତି, କାହା ପ୍ରତି ଅହେତୁକ ବିମୁଖ ହୋଇ ଟାଣି ଓଟାରି ତାକୁ ସମ୍ବାଦ ଭିତରକୁ ଆଣନ୍ତି ।

ବ୍ୟକ୍ତି ପକ୍ଷରେ ଯାହା, ସମାଜ ଓ ଦେଶ ପକ୍ଷରେ ମଧ୍ୟ ସେହି କଥା; ବ୍ୟକ୍ତିର ସମ୍ମାନକୁ କ୍ଷୁଣ୍ଣ କଲାଭଳି କେତେକ ସମ୍ବାଦ ପତ୍ର ଦେଶର ନିନ୍ଦା କରିବାରେ ଓ ସମ୍ମାନ କ୍ଷୁଣ୍ଣ କରିବାରେ ଆଦୌ କୁଣ୍ଠିତ ହୁଅନ୍ତି ନାହିଁ । ସେମାନଙ୍କ ଆଗରେ ଦେଶ ବଡ ନୁହେଁ, ସ୍ୱାର୍ଥ ବଡ । ଆପଣା ସ୍ୱାର୍ଥକୁ ମୁଖ୍ୟ ଭାବି ଦେଶକୁ ସେମାନେ ଗୌଣ ମନେ କରନ୍ତି ।

### ସମ୍ବାଦ ପତ୍ରର କର୍ତ୍ତବ୍ୟ

ଅବଶ୍ୟ, ସମ୍ବାଦ ପତ୍ରର କର୍ତ୍ତବ୍ୟ ହେଉଛି– ଦେଶର, ସମାଜର ତଥା ଲୋକଙ୍କର ଅଭାବ-ଅସୁବିଧା, ଆପତ୍ତି-ଅଭିଯୋଗ, ଦୁଃଖ ଦୁର୍ଦ୍ଦଶା, ଅନଟନ– ସଙ୍କଟର ଚିତ୍ରକୁ ନିଷ୍ପକ୍ଷ ଭାବରେ ପ୍ରକାଶ କରିବା ଏବଂ ଶାସନର ଅନ୍ୟାୟ– ଅନୀତି, ଦୁର୍ନୀତି-ଦୁଷ୍କର୍ମ, ତ୍ରୁଟି -ବିଚ୍ୟୁତି, ଭୁଲଭ୍ରାନ୍ତି, ଦୋଷ ପ୍ରମାଦ, ଶୋଷଣ କଷଣ, ଅନାଚାର-ବ୍ୟଭିଚାର ଇତ୍ୟାଦି ନିର୍ଭୀକ ଭାବରେ ଲୋକ ଲୋଚନକୁ ଆଣିବା ଓ ଏହାର ପ୍ରତିକାର ଦାବୀ କରିବା । ଅନ୍ୟାୟ ଅବିଚାରର କଠୋର ସମାଲୋଚନା ସମ୍ବାଦ ପତ୍ରର ଧର୍ମ । ଅଶାସନ ବା ଦୁଃଶାସନକୁ ଚେତାଇ ଦେବା ଓ ସୁଧାରିବା ପାଇଁ ଚେଷ୍ଟିତ ହେବା ସମ୍ବାଦ ପତ୍ରର ଗୁରୁ ଦାୟିତ୍ୱ । ତା'ନହେଲେ, ସମ୍ବାଦ ପତ୍ର ତା'ର ନୀତି, ଧର୍ମ ଓ କର୍ତ୍ତବ୍ୟରୁ ବିଚ୍ୟୁତ ହୋଇଯିବ ।

ଯେକୌଣସି ଧରଣର ଶାସନରେ, ବିଶେଷତଃ ଗଣତନ୍ତ୍ର ଶାସନରେ ସମ୍ବାଦ ପତ୍ରର ଆବଶ୍ୟକତା ଯଥେଷ୍ଟ ରହିଛି । ସମ୍ବାଦପତ୍ର କାଳକ୍ରମେ ଖୁବ୍ ପ୍ରଭାବଶାଳୀ ଓ ଶକ୍ତିଶାଳୀ ହୋଇଯିବାରୁ ତାହା ରାଷ୍ଟ୍ରର 'ଚତୁର୍ଥ ଶକ୍ତି' ରୂପେ ବିବେଚିତ ହୋଇଛି । ଶାସନ, ବିଚାର ବିଭାଗ ଓ ଆଇନ ବ୍ୟବସ୍ଥା ଅନ୍ୟ ତିନୋଟି ଶକ୍ତି ରାଷ୍ଟ୍ରର । ପ୍ରଚାର ଶକ୍ତି ଦୃଷ୍ଟିରୁ ସମ୍ବାଦ ପତ୍ର ତତ୍ ଅଧିକ ପ୍ରଭାବଶାଳୀ । ଗଣତନ୍ତ୍ର ଶାସନରେ ସମ୍ବାଦପତ୍ର ଏକ ସତର୍କ ତଥା ଜାଗ୍ରତ ପ୍ରହରୀ । ଶାସନ ପରିଚାଳନାରେ ଏହା ଏକ ଅଙ୍କୁଶ ସମ । ସମ୍ବାଦ ପତ୍ର ନଥିଲେ ଓ ନିରପେକ୍ଷ ସମ୍ବାଦ ଓ ସମାଲୋଚନା ପ୍ରକାଶ ନପାଇଲେ, ଶାସନ ନିରଙ୍କୁଶ ଓ ମନମୁଖୀ ହୋଇଯିବାର ଆଶଙ୍କା ଅନେକ । ସେଥିପାଇଁ, ଶାସନ ଯେତେବେଳେ ନିରଙ୍କୁଶ ହେବାକୁ ଇଚ୍ଛା କରିଛି, ସେତେବେଳେ ସମ୍ବାଦ ପତ୍ରର ସ୍ୱାଧୀନତା ଉପରେ କଟକଣା ଜାରି କରାଯାଇଛି, ଶାସନ ପକ୍ଷରୁ ନିୟନ୍ତ୍ରଣର ଅଙ୍କୁଶ ପ୍ରୟୋଗ କରାଯାଇଛି । ପରାଧୀନ ଭାରତରେ ବ୍ରିଟିଶ ଶାସନରେ ସମ୍ବାଦ ପତ୍ର ଉପରେ ନିୟନ୍ତ୍ରଣ ଥିଲା । ସ୍ୱାଧୀନ ଭାରତରେ ଇମର୍ଜେନ୍ସି କାଳରେ ସମ୍ବାଦପତ୍ରକୁ କଟକଣାଭୁକ୍ତ କରାଯାଇଥିଲା । ସେତେବେଳେ ଅବିଚାରିତ ସମ୍ବାଦ ଓ ଅଭିମତ ପ୍ରକାଶ କରିବାର ଅବାରିତ ସ୍ୱାଧୀନତା ସମ୍ବାଦ ପତ୍ରର ନଥିଲା । ଶାସନ ପକ୍ଷରୁ ଯାଞ୍ଚ ଓ ଅନୁମୋଦନ ପରେ ଯାଇ ସମ୍ବାଦ ବା ଅଭିମତ ପ୍ରକାଶ ପାଇବାରେ ଏଭଳି କଟକଣା ପାଇଁ ତୀବ୍ର ସମାଲୋଚନା ହେଲା ।

**ସମ୍ବାଦ ପତ୍ରର ସ୍ୱାଧୀନତା**

ସମ୍ବାଦପତ୍ର ଜନମତର ପ୍ରକାଶକ । ଜନମତ ଓ ସମ୍ବାଦକୁ ଅବିକଳ ଓ ଅବିକୃତ ପ୍ରକାଶ କରିବା ସମ୍ବାଦ ପତ୍ରର ଧର୍ମ । ତା'ହେଲେ ଲୋକେ ଜନମତ ବିସ୍ତାର କରିବେ । ଶାସନ ମଧ୍ୟ ସଂଯତ ଓ ସଜାଗ ହେବ । ସତ୍ୟ ସମ୍ବାଦ ଓ ବାସ୍ତବ ଘଟଣାକୁ ଯଦି ଚପି ଦିଆଯାଏ, ଜନମତକୁ ଯଦି ଲୁଚି ଦିଆଯାଏ, ତେବେ ପ୍ରକୃତ କଥା ଗୁପ୍ତ ବା' ଅପ୍ରକଟ ରହିଯାଇପାରେ । ଅନ୍ୟାୟ–ଅବିଚାର, ଦୋଷ ଦୁର୍ନୀତି, ଶୋଷଣ–ମୁଣ୍ଡନବୃତ୍ତି ପାଇବାରେ ଅବକାଶ ମିଳିପାରେ । ଶାସନ ହୋଇଯାଇପାରେ ବଲ୍‌ଗାହୀନ ଅଶ୍ୱ ଭଳି । ଶାସନ ଗଣତାନ୍ତ୍ରିକ ଓ ସଂସଦୀୟ ନ ହୋଇ ଏକଛତ୍ରବାଦୀ ହୋଇ ଯାଇ ପାରେ । ଲୋକଙ୍କ ଦୁଃଖ ଦୁର୍ଦ୍ଦଶା ଓ ବ୍ୟସ୍ତତା ବଢ଼ି ଯାଇ ପାରେ, ଯେପରି ଘଟିଥାଏ ପାକିସ୍ଥାନରେ, ବାଂଲାଦେଶରେ କିମ୍ବା ଅନ୍ୟ କେତେକ ରାଷ୍ଟ୍ରରେ । ଭାରତରେ ସମ୍ବାଦ ପତ୍ରର ସ୍ୱାଧୀନତା ତଥା ବାକ୍-ସ୍ୱାଧୀନତା ସମ୍ବିଧାନରେ ସ୍ୱୀକୃତ । ଚିନ୍ତା ଅଭିବ୍ୟକ୍ତି ଓ ଧର୍ମ ଧାରଣାରେ ଭାରତୀୟ ନାଗରିକର ସ୍ୱାଧୀନତା ରହିଛି । କିନ୍ତୁ ଏ ସ୍ୱାଧୀନତାର ଅର୍ଥ ନୁହେଁ ସ୍ୱେଚ୍ଛାଚାରିତା । ଯାହାର ଯାହା ଇଚ୍ଛା, ତାହା ଯେତେ ଆପତ୍ତିଜନକ ବା ଅନିଷ୍ଟକାରକ ହେଉ ପଛକେ, ସେ ତାହା କହିଯିବ ବା ଲେଖିଯିବ, ଏପରି ଭାବିବା ଯଥାର୍ଥ ନୁହେଁ । ଏଥିପାଇଁ ସଂଯମ, ଶୃଙ୍ଖଳା ଆବଶ୍ୟକ । ଆଚରଣ ବିଧି ମଧ୍ୟ ଆବଶ୍ୟକ ।

**ଦେଶର ଐକ୍ୟ ଓ ଅଖଣ୍ଡତା**

ଭାରତ ଏକ ବିରାଟ ଦେଶ, ଏକ ବିଶାଳ ଭୂଖଣ୍ଡ । ବହୁ ଜାତି, ବହୁ ଧର୍ମ, ବହୁ ଭାଷା, ବିଭିନ୍ନ ସଂସ୍କୃତି ଏ ଦେଶରେ ରହିଛି । ଅନୈକ୍ୟ ଭିତରେ ଐକ୍ୟ, ବିଭିନ୍ନତା ଭିତରେ ଅଭିନ୍ନତା, ଭାରତର ବୈଚିତ୍ର୍ୟ ଓ ବୈଶିଷ୍ଟ୍ୟ । ଭାରତ ଏକ ଧର୍ମ ନିରପେକ୍ଷ ରାଷ୍ଟ୍ର ଭାବରେ ପରିଚିତ । ସବୁ ଧର୍ମ ଓ ସବୁ ସଂସ୍କୃତିକୁ ଭାରତ ସମ୍ମାନ ଦିଏ । ଭାରତୀୟ ସମ୍ବିଧାନର ଅଭିମୁଖ୍ୟରେ ଗଣତନ୍ତ୍ର ପ୍ରତି ଓ ନାଗରିକର ଅଭିବ୍ୟକ୍ତିର ସ୍ୱାଧୀନତା ପ୍ରତି ଗୁରୁତ୍ୱ ଆରୋପିତ ହୋଇଛି । କିନ୍ତୁ ଏଇ ସ୍ୱାଧୀନତାର ସୁଯୋଗକୁ ଯଦି କେହି ଅପବ୍ୟବହାର କରନ୍ତି, ଦେଶର ଐକ୍ୟ, ଅଖଣ୍ଡତା ଓ ନିରାପତ୍ତାକୁ ବିପଦାପନ୍ନ କଲାଭଳି ବାକ୍-ଚାତୁରୀ ଦେଖାନ୍ତି ଏ ଦେଶ ବିଭାଜନ ପାଇଁ ଧ୍ୱନି ଦେଇ କାର୍ଯ୍ୟ କରନ୍ତି, ତେବେ ତାହା ଦେଶ ପ୍ରତି ନିଶ୍ଚିତ ଭାବରେ ବିପଦ ଓ କ୍ଷତିକାରକ । ଧର୍ମ ନାମରେ ଦଳେ ଲୋକ ଧର୍ମାନ୍ଧତା ପ୍ରକାଶ କରନ୍ତି ଓ ସଂଘର୍ଷ, ଦଙ୍ଗାହେଙ୍ଗାମା, ଗଣ୍ଡଗୋଳ, ହିଂସାକାଣ୍ଡ ଇତ୍ୟାଦିରେ ମାତନ୍ତି କିମ୍ବା ଦେଶକୁ ଖଣ୍ଡଖଣ୍ଡ କରି 'ଖଲିସ୍ଥାନ' ବା'ଗୁର୍ଖାସ୍ଥାନ' ଦାବୀ କରନ୍ତି ଓ ଏଥିପାଇଁ ରକ୍ତର ସୁଅ ଛୁଟାନ୍ତି । ଅନ୍ୟ ଦେଶ ସହିତ ସେମାନଙ୍କର ଗୁପ୍ତ ସଂପର୍କ ରହିଥାଏ । ଭାଷା–ବିବାଦ, ସୀମା–ବିବାଦ, ଜଳ ବିବାଦକୁ କେନ୍ଦ୍ର କରି ଦେଶରେ ଗଣ୍ଡଗୋଳ ଓ ସଂଘର୍ଷ ଘଟୁଛି । ଦେଶ–ବିଭେଦକାରୀ ଓ ବିଚ୍ଛିନ୍ନତାବାଦୀମାନେ ଅନ୍ୟ ଦେଶରେ ଆଶ୍ରୟ ନେଇ ଭାରତର ନିନ୍ଦା ରଟନା କରୁଛନ୍ତି । ଆଉ ଦଳେ ଲୋକ ଅନ୍ୟ ଦେଶକୁ ପରିଦର୍ଶନ, ପରିଭ୍ରମଣରେ ଯାଇ, ନିଜ ଦେଶକୁ ଛୋଟକରି ଦିଖାକରି ଅନ୍ୟ ଦେଶର ବଡ଼ିମା ଗାଇ ବୁଲନ୍ତି । ଭାରତର ସତେ ଯେପରି କିଛି ଭଲ ନାହିଁ । ଯାହା କିଛି ମନ୍ଦ ଓ ଖରାପ, ତାହାର ଚିତ୍ର ବିଦେଶରେ ପ୍ରକାଶ କରନ୍ତି ଅନେକ ।

**ଦେଶର ଐତିହ୍ୟ ଓ ଗୌରବ**

ଭାରତର ଐତିହ୍ୟ, ପରମ୍ପରା ଓ ଗାରିମା ଅତି ମହାନ୍ ଓ ଗୌରବମୟ । ଅତି ପ୍ରାଚୀନ ଐତିହାସିକ କାହାଣୀରେ ଏ ଦେଶ ବିମଣ୍ଡିତ । ବହୁ ପୌରାଣିକ ସ୍ମୃତି ସମ୍ଭାରରେ ଏ ଦେଶ ମହିମାନ୍ୱିତ । ସ୍ୱାଧୀନତା ପରେ ଭାରତରେ ସାମାଜିକ ଅର୍ଥନୈତିକ, ସାଂସ୍କୃତିକ ଉନ୍ନତି ନିମନ୍ତେ ପଞ୍ଚବାର୍ଷିକ ଯୋଜନା ଓ ବିଭିନ୍ନ ଉନ୍ନୟନ ଯୋଜନା କରାଯାଇଛି । ଦାରିଦ୍ର୍ୟ ଦୂରୀକରଣ ଉଦ୍ଦେଶ୍ୟରେ ଦରିଦ୍ର ଓ ଦୁର୍ବଳ ଶ୍ରେଣୀର ଲୋକଙ୍କର ଉନ୍ନତି ନିମନ୍ତେ ବିଭିନ୍ନ ଯୋଜନା ଓ କାର୍ଯ୍ୟକ୍ରମ ଗ୍ରହଣ କରାଯାଇଛି । ଭାରତରେ ଗଣତନ୍ତ୍ର ପଦ୍ଧତି ଓ ସଂସଦୀୟ ଶାସନ ଚାଲିଛି । ଅନ୍ୟ କେତେକ ଦେଶ ଭଳି ନାଗରିକର ସ୍ୱାଧୀନତାକୁ ଓ ଗଣତନ୍ତ୍ରକୁ କ୍ଷୁଣ୍ଣ କରାଯାଇ ନାହିଁ କିମ୍ବା ସାମରିକ ଶାସନ ବା ଏକାଏକ ଶାସନ ହୋଇ ନାହିଁ । ଭାରତ ଯୁଦ୍ଧଖୋର ନୁହେଁ, ଶାନ୍ତି ପ୍ରିୟ ଦେଶ । ଅନ୍ୟ ଦେଶ ଉପରେ ଭାରତ ଆକ୍ରମଣ କରିନାହିଁ କିମ୍ବା ସାମ୍ରାଜ୍ୟ ବିସ୍ତାର ଇଚ୍ଛା କରି ନାହିଁ । ପୃଥିବୀରେ ସହାବସ୍ଥାନ, ଅନାକ୍ରମଣ, ଅସ୍ତ୍ର ପ୍ରତିଯୋଗିତା ହ୍ରାସ ଓ ଶାନ୍ତି ସ୍ଥାପନ ଦିଗରେ ଭାରତ ବରାବର ଉଦ୍ୟମ କରି ଆସିଛି । ଏବେ ମଧ୍ୟ ଭାରତ ଗୋଷ୍ଠୀ ନିରପେକ୍ଷ ଆନ୍ଦୋଳନରେ ନେତୃତ୍ୱ ନେଇଛି । ଯୁଦ୍ଧ ଓ ସାମରିକ ପ୍ରସ୍ତୁତି ଅପେକ୍ଷା ନିଜର ବିକାଶ ଦିଗରେ ଭାରତ ଅଧିକ ପ୍ରୟାସୀ । ନିଜର ଅଗ୍ରଗତି ଓ ପ୍ରଗତି ପାଇଁ ଭାରତ ଚିନ୍ତିତ । ଆନ୍ତର୍ଜାତିକ କ୍ଷେତ୍ରରେ ଭାରତ କୌଣସି ଶକ୍ତିର ଏକାନ୍ତ ଅନୁଗତ କିମ୍ବା ଗୋଡ଼ାଣିଆ ନ ହୋଇ ନିଜର ବିଚାରକୁ ଯଥା ସମ୍ଭବ ବଜାୟ ରଖିଛି । ବିଜ୍ଞାନ ଓ ମହାକାଶ କ୍ଷେତ୍ରରେ ଭାରତ ଗତ ଦଶନ୍ଧିରେ ଅଭୂତପୂର୍ବ ସାଫଲ୍ୟ ଓ ଗୌରବ ହାସଲ କରି ପାରିଛି । କୃଷି, ଶିଳ୍ପ, ଶିକ୍ଷା, ଚିକିତ୍ସା ଏବଂ କଳା, ସାହିତ୍ୟ, ସଂସ୍କୃତି ଇତ୍ୟାଦି ବିଭିନ୍ନ କ୍ଷେତ୍ରରେ ଉନ୍ନତି ପାଇଁ ଭାରତ ଯଥାସାଧ୍ୟ ଚେଷ୍ଟା ଚଳାଇଛି ।

**ସମ୍ବାଦ ପତ୍ରର ଦାୟିତ୍ୱ**

ଅବଶ୍ୟ, ଦୋଷ ତ୍ରୁଟି ରହୁଛି । ଲୋକଙ୍କ ଉନ୍ନତି ପାଇଁ ହେଉଥିବା ଯୋଜନାମାନ ଠିକ୍‌ଭାବେ କାର୍ଯ୍ୟକାରୀ ହୋଇ ପାରୁ ନାହିଁ । କୋଟି କୋଟି ଟଙ୍କା ଖର୍ଚ୍ଚ ହେଉଥିବା ବେଳେ ଓ ସମ୍ବଳ ଅଭାବ ଯୋଗୁଁ ବହୁ କୋଟି ଟଙ୍କା ଋଣ ହୋଇଥିବା ବେଳେ, ଦୁଃଖର କଥା ଯେ, ବହୁ ଅର୍ଥ ବାଟମାରଣା ହୋଇଯାଉଛି । ବହୁ ଅର୍ଥ ଆତ୍ମସାତ ଓ ଅପବ୍ୟୟ ହେବା ଫଳରେ କାର୍ଯ୍ୟ ଭଲଭାବରେ ହୋଇ ପାରୁ ନାହିଁ । ଜାତୀୟ ଚରିତ୍ର କ୍ରମେ ନଷ୍ଟ ହୋଇଯାଉଛି । କିଛି ଲୋକ ଦେଶର ସମ୍ପତ୍ତିକୁ ଜାତୀୟ ସମ୍ପତ୍ତି ବୋଲି ନଭାବି ନଷ୍ଟ ଭ୍ରଷ୍ଟ କରିବାରେ ଲାଗିଛନ୍ତି । ଦେଶରେ ଯଦି ଦୁର୍ନୀତି, ଅପମିଶ୍ରଣ ଓ ଦୁଷ୍କର୍ମ ବ୍ୟାପି ଯାଏ, କଳାଧନ ପ୍ରଚୁର ପୁଞ୍ଜ ହୁଏ, ତେବେ, ଦେଶର ସମ୍ମାନ ବୃଦ୍ଧିରେ ତାହା ସହାୟକ ହେବ କିପରି ? ଏସବୁର ଆଲୋଚନା ସମାଲୋଚନା ସମ୍ବାଦ ପତ୍ରରେ ଭଲ ଭାବରେ ହେଉ । ମାତ୍ର ଦେଶକୁ ନିନ୍ଦିତ ଓ ହୀନମନ୍ୟ କରିବାର ଭୂମିକା ସମ୍ବାଦ ପତ୍ରମାନେ ଗ୍ରହଣ ନ କରିବା ଉଚିତ । ଦେଶର ଐକ୍ୟ, ସଂହତି, ନିରାପତ୍ତା ଓ ସମ୍ମାନକୁ କ୍ଷୁଣ୍ଣ ଓ ବିପନ୍ନ କରୁଥିବା ବିଭାଜନକାରୀ ଓ ବିଚ୍ଛିନ୍ନତାବାଦୀ ଶକ୍ତିକୁ ତଥା ଦୁଃଖଦାୟକ ଓ ଭୀତିପ୍ରଦ ସନ୍ତ୍ରାସବାଦୀ କାର୍ଯ୍ୟକଳାପକୁ ସମ୍ବାଦ ପତ୍ରମାନେ ସମର୍ଥନ ଓ ପ୍ରୋତ୍ସାହନ ଦେବା ଆଦୌ ସମୀଚୀନ ନୁହେଁ । ଦେଶର ସମ୍ମାନର ଅର୍ଥ, ଦେଶବାସୀ ସବୁଶହକୋଟି ଜନତାର ସମ୍ମାନ । ଅତଏବ, ଦେଶର ସମ୍ମାନ ବୃଦ୍ଧିରେ ଜାତୀୟ ଐକ୍ୟ ଓ ସଂହତି ରକ୍ଷାରେ ସମ୍ବାଦ ପତ୍ରର ଦାୟିତ୍ୱ ଗୁରୁତ୍ୱପୂର୍ଣ୍ଣ । ଦେଶର ସମ୍ମାନ ଓ ମର୍ଯ୍ୟାଦାରେ ଯେଉଁମାନେ ଆଞ୍ଚ ଆଣୁଛନ୍ତି, ସେମାନଙ୍କୁ ନିର୍ମମ ଭାବରେ ନିନ୍ଦା ଓ ସମାଲୋଚନା କରିବାରେ ସମ୍ବାଦ ପତ୍ରମାନେ ସଂକଳ୍ପବଦ୍ଧ ହୁଅନ୍ତୁ । ଦେଶର ବିଭିନ୍ନ ଉନ୍ନତି ମୂଳକ କାର୍ଯ୍ୟକୁ ଲୋକ ଲୋଚନକୁ ଆଣନ୍ତୁ । ଏକ ଦେଶଦର୍ଶୀ ଓ ପକ୍ଷପାତୀ ନହୋଇ ନିଷ୍ପକ୍ଷ ଓ ଚଉଆଖିଆ ହେବା ସମ୍ବାଦ ପତ୍ରର ନୀତି ହେଉ ।

ବାଳକୃଷ୍ଣ ମାର୍ଗ, କଟକ-୧



ଅନ୍ତିମ ଶଯ୍ୟାରେ କେନ୍ଦ୍ର ମନ୍ତ୍ରୀ ଶ୍ରୀ ଚନ୍ଦ୍ରଶେଖର ସିଂହ ..



[illegible]



◀ ନାଲ୍କୋ ଆଲୁମିନିୟମ୍ ପ୍ରକଳ୍ପ...



ହିଗ୍ କେବଲ୍ସ ▶



◀ କୋଣାର୍କ ଟିଭି...



ଇପିଟ୍ରନ ଟାଇମ୍ସ ▶

# ଓଡ଼ିଶା ସଂସ୍କୃତିରେ ଖାଦ୍ୟ ସମ୍ବନ୍ଧୀୟ କେତେକ ବିଧି ଓ ତା'ର ବୈଜ୍ଞାନିକ ମହତ୍ତ୍ୱ

ଅଧ୍ୟାପକ ପ୍ରଫୁଲ୍ଲ କୁମାର ମହାନ୍ତ
ଓ
ଶ୍ରୀ ଧରଣୀଧର ଷଡ଼ଙ୍ଗୀ

ଖାଦ୍ୟ ହିଁ ମନୁଷ୍ୟ କାହିଁକି ପ୍ରତ୍ୟେକ ଜୀବଜନ୍ତୁର ଜୀବନ । ଖାଦ୍ୟ ପାଇଁ ମନୁଷ୍ୟ ତା'ର ଆଦିମ ସଭ୍ୟତା କାଳରୁ ସଂଗ୍ରାମ କରି ଚାଲିଛି । ଜଙ୍ଗଲର ଫଳ ମୂଳ, ପତ୍ରଠାରୁ ଆରମ୍ଭ କରି ପଶୁପକ୍ଷୀମାନଙ୍କୁ ଶିକାର କରି କଂଚା ମାଂସ ଖାଇବା ପର୍ଯ୍ୟନ୍ତ ସୁଦ୍ଧ ଚଢ଼ାଇ ପଦାର୍ପଣ କରିଛି ଅଗ୍ନି, ଗ୍ୟାସ ଇତ୍ୟାଦି ବଳରେ ବିଭିନ୍ନ ପ୍ରକାର ଉପାଦେୟ ଖାଦ୍ୟ ପ୍ରସ୍ତୁତ କରି ଖାଇବା । କିନ୍ତୁ ଯାହହେଉନା କାହିଁକି ସବୁର ମୂଳରେ ରହିଛି ଜୀବନ ଧାରଣ । ତେବେ ଖାଦ୍ୟ ନାମରେ ବା ଜୀବନ ରକ୍ଷା ନାମରେ ମନଇଚ୍ଛା ସବୁ ଖାଇ ମରିବା ଅପେକ୍ଷା କେତେକ ନିୟମାନୁସାରେ ଖାଇ ସୁସ୍ଥ ଜୀବନକୁ ସରସ ସୁନ୍ଦର, କମନୀୟ କରିବା ହିଁ ବୁଦ୍ଧିମାନର ପରିଚୟ । ତେବେ ଆମର ପୂର୍ବ ପୁରୁଷ ତାଙ୍କର ଅଭିଜ୍ଞତାକୁ ଭିତ୍ତିକରି ଯେଉଁ କେତେକ ପଦ୍ଧତିକୁ ଲିପିବଦ୍ଧ କରିଯାଇଛନ୍ତି ବା ପ୍ରଚଳିତ ପ୍ରଥାନୁସାରେ ଆମେ ଯାହାକୁ ମାନିଆସୁଛୁ ତନ୍ମଧ୍ୟରୁ କେତେକ ଦୃଷ୍ଟାନ୍ତ ଏଠାରେ ଉଦ୍ଧାର କରାଯାଇଛି ।

ପ୍ରଥମତଃ ଖାଦ୍ୟ ଖାଇବା ଉପରେ ଥିବା ବିଧି ବିଷୟରେ ଆଲୋଚନା କରାଯାଉ । ଓଡ଼ିଆ ସଂସ୍କୃତିରେ କାର୍ତ୍ତିକ ମାସରେ ମାଛ ଖାଇବା ନିଷେଧ । ଏହାର ବୈଜ୍ଞାନିକ କାରଣ ହେଉଛି— ଏ ସମୟରେ ମାଛଗୁଡ଼ିକ ଏକପ୍ରକାର ରୋଗରେ ଆକ୍ରାନ୍ତ ହୁଅନ୍ତି । ତେଣୁ ଏହି ରୋଗାକ୍ରାନ୍ତ ମାଛକୁ ଖାଇ ମଣିଷ ବିଭିନ୍ନ ପେଟ ରୋଗରେ ଆକ୍ରାନ୍ତ ହେବାର ସମ୍ଭାବନା ଅଛି । ଦ୍ୱିତୀୟରେ ଏ ସମୟରେ ମାଛମାନେ ସାଧାରଣତଃ ଅଣ୍ଡା ଦିଅନ୍ତି । ତେଣୁ ଅଣ୍ଡା ଧାରଣ କରିଥିବା ମାଛମାନଙ୍କୁ ଯଦି ଖିଆଯାଏ ତେବେ ସେମାନଙ୍କର ବଂଶ ବିସ୍ତାର ହୋଇପାରିବ ନାହିଁ । ଫଳତଃ ମହାଭାବ ଦେଖାଦେବାର ସମ୍ଭାବନା ଥାଏ । ତେଣୁ ଏ ସମୟରେ ମାଛ ଖାଇବାକୁ ବାରଣ କରାଯାଇଥାଏ ।

ହିନ୍ଦୁ ଶାସ୍ତ୍ରରେ ବିଧି ଅଛି ଯେ, କୌଣସି ଖାଦ୍ୟ ଖାଇବା ପୂର୍ବରୁ "ଚକ୍ଷୁ" କରିବା ଉଚିତ ଏବଂ ଖାଇବାବେଳେ କଥା କହିବା ମନା । "ଚକ୍ଷୁ" ହେଉଛି ଖାଦ୍ୟ ସେବନ ପୂର୍ବରୁ କିଛି ପାଣି ଠାକୁରଙ୍କ ନାମରେ ପ୍ରଥମେ ପାନ କରିବା ଏବଂ ଅଳ୍ପ ଖାଦ୍ୟକୁ ଲେବାଇ ଖାଇବା । ବାସ୍ତବିକ୍ ଏହା ଅତ୍ୟନ୍ତ ମହତ୍ତ୍ୱପୂର୍ଣ୍ଣ । ଖାଦ୍ୟ ଖାଇବା ପୂର୍ବରୁ ଖାଦ୍ୟନଳୀ ପ୍ରାୟ ଶୁଷ୍କ ଅବସ୍ଥାରେ ଥାଏ । ତେଣୁ ଏହି ସମୟରେ ଖାଦ୍ୟ ଖାଇଲେ ଖାଦ୍ୟ ସୁସ୍ଥରୂପେ ଖାଦ୍ୟନଳୀରେ ପ୍ରବେଶ କରିପାରେ ନାହିଁ । ମଝିରେ ମଝିରେ ହେକୁଟି ଦେଖାଏ । ଏପରିକି ଖାଦ୍ୟ ସମୟ ସମୟରେ ଖାଦ୍ୟନଳୀରେ ଅଟକି ଯିବା ଯୋଗୁଁ ମନୁଷ୍ୟ ଶ୍ୱାସରୁଦ୍ଧ ହୋଇ ମରିଯିବାର ସମ୍ଭାବନା ଥାଏ । ଚକ୍ଷୁ ଯୋଗୁ ହିଁ ଖାଦ୍ୟ ସହଜରେ ଖାଦ୍ୟନଳୀରୁ ପାକସ୍ଥଳୀକୁ ପ୍ରବେଶ କରିଥାଏ ।

ପାଟିର ତଳ ଅଂଶରେ ଖାଦ୍ୟନଳୀ ଓ ଶ୍ୱାସନଳୀ ଗୋଟିଏ ମାତ୍ର ଦ୍ୱାର, ଅଧିଜିହ୍ୱା ଦ୍ୱାରା ସଂଯୁକ୍ତ । ଯେତେବେଳେ ଖାଦ୍ୟନଳୀର ଦ୍ୱାର ଖୋଲାରୁହେ ସେତେବେଳେ ଶ୍ୱାସନଳୀର ଦ୍ୱାର ବନ୍ଦ ରହିଯାଏ । ଖାଦ୍ୟ ଖାଇଲାବେଳେ କଥା କହିଲେ ଶ୍ୱାସନଳୀ ଭିତରେ ଖାଦ୍ୟ ମିଶିଯିବାର ସମ୍ଭାବନା ଥାଏ । ତେଣୁ ଖାଇଲାବେଳେ କଥା କହିବା ନିଷେଧ । କେବଳ ଶ୍ୱାସନଳୀରେ ଖାଦ୍ୟ ପଶି ନ ଯିବା ପାଇଁ ଖାଦ୍ୟ ଖାଇବା ସମୟରେ କଥାବାର୍ତ୍ତା କରିବା ମନା କରାଯାଇଥାଏ ।

ହିନ୍ଦୁ ଶାସ୍ତ୍ରରେ ଗୋରୁ ଓ ଘୁଷୁରି ଆଦିର ମାଂସ ଖାଇବା ମନା । ଗୋରୁ ଓ ଘୁଷୁରିମାନଙ୍କ ଦେହରେ ଏକ ପ୍ରକାର ପରଜୀବୀ କୃମି ଦେଖାଯାନ୍ତି । କୃମିର ଅଣ୍ଡାଗୁଡ଼ିକ ସାଧାରଣ ଉତ୍ତାପରେ ମରନ୍ତି ନାହିଁ । ଫଳତଃ ଗୋ ଘୁଷୁରି ମାଂସ ସହିତ ପରଜୀବୀ

ଗୁଡ଼ିକ ପେଟକୁ ଯାଇ ବିଭିନ୍ନ ପ୍ରକାର ରୋଗ ସୃଷ୍ଟି କରିଥାଏ । ତେଣୁ ଏ ପ୍ରକାର ମାଂସ ଖାଇବା ପାଇଁ ବାରଣ କରାଯାଇଥାଏ ।

ବିଭିନ୍ନ ପ୍ରକାର ଓଷା, ବ୍ରତ, ପୂଜା, ରାଶି ଓ ନକ୍ଷତ୍ର ଅନୁଯାୟୀ ନିରାମିଷ ଭୋଜନ ହିଁ ଶାସ୍ତ୍ର ସମ୍ମତ । ମାଛ, ମାଂସ ଇତ୍ୟାଦି ଖୁବ୍ ତେଲ ମସଲା ଯୁକ୍ତ ହୋଇଥିବାରୁ ଏଗୁଡ଼ିକ ଉତ୍ତେଜକ ଖାଦ୍ୟ ହିସାବରେ ଗଣ୍ୟ ହୋଇଥାଏ । ତେଣୁ ଶାରୀରିକ ଉତ୍ତେଜନାକୁ ନିୟନ୍ତ୍ରିତ କରିବା ହିଁ ଏ ଖାଦ୍ୟ ନିବାରଣର ପ୍ରଧାନ ଉଦ୍ଦେଶ୍ୟ । ଏଥିପାଇଁ ବୃଦ୍ଧା ତଥା ବିଧବାମାନେ ହିଁ ମାଛ ମାଂସ ଖାଇ ନ ଥାନ୍ତି; ଯଦିବା କେହି ଖାଆନ୍ତି ଖୁବ୍ କମ୍ ପରିମାଣରେ ଖାଇଥାନ୍ତି । ପୁନଶ୍ଚ ଅଧିକ ମାତ୍ରାରେ ମାଛ, ମାଂସ, ଅଣ୍ଡା, ଚର୍ବି, ତେଲ ଜାତୀୟ ଖାଦ୍ୟ ପିଆଜ ଓ ରସୁଣ ଆଦି ଖାଇଲେ କୋଷ୍ଠବଦ୍ଧତା ହୋଇଥାଏ । ତେଣୁ ଓଷା, ବ୍ରତ, ପୂଜା ଓ ପର୍ବପର୍ବାଣୀରେ ପ୍ରଚୁର ପରିମାଣରେ ଫଳ, ସୁମିଷ୍ଟ ଦ୍ରବ୍ୟ ଓ ପିଠାପଣା ଖାଇବାର ପ୍ରଚଳନ ଆମ ଜୀବନ ଯାତ୍ରାରେ ଦେଖାଯାଇଥାଏ । ଅନ୍ୟ ପକ୍ଷରେ ଏ ଖାଦ୍ୟଗୁଡ଼ିକ ଶରୀରକୁ ଉତ୍ତମ ରୂପେ ଉଭିଦ ପୁଷ୍ଟିସାର ଯୋଗାଇଥାଏ । ଅର୍ଥାତ ପିଠାପଣା ତଥା ଫଳ ମୂଳ ସବୁବେଳେ ଖାଇବା ସମ୍ଭବ ହୋଇପାରୁ ନ ଥିବାରୁ ଏହି କେତେକ ନିର୍ଦ୍ଦିଷ୍ଟ ଦିନଗୁଡ଼ିକରେ ହିଁ ଖାଇବାର ସୁଯୋଗ ମିଳିଥାଏ ।

ପ୍ରତି ଏକାଦଶୀ ତିଥିରେ ସାରାଦିନ ଉପାସ ରହିବା ; ପ୍ରତି ଅମାବାସ୍ୟା ଓ ପୂର୍ଣ୍ଣିମାରେ ରାତ୍ରି ଭୋଜନ ବନ୍ଦ କରିବା; ଏପରି କି ଗଣେଶ ପୂଜା, ସରସ୍ୱତୀ ପୂଜା ଭଳି କେତେକ ପୂଜା ପଦ୍ଧତିରେ ପିଲାମାନଙ୍କୁ ମଧ୍ୟ ଉପବାସ ରହିବାର ଉପଦେଶ ଦେବା ଆଦି ବିଧିବଦ୍ଧ ନିୟମ ଆବହମାନ କାଳରୁ ପ୍ରଚଳିତ । କାରଣ ଗୋଟିଏ ଯନ୍ତ୍ରକୁ ବହୁତ ସମୟ ଏକାଦିକ୍ରମେ ଚଳାଇଲେ ତାର କ୍ଷମତା କମିଯାଇଥାଏ । ଯନ୍ତ୍ରକୁ ବିଶ୍ରାମ ଦିଆ ନ ଯାଇ ଘର୍ଷଣବିହୀନ ତେଲ ଯଦି ଦିଆ ନ ଯାଏ ତେବେ ସେଥିରେ ଯାନ୍ତ୍ରିକ ଗଣ୍ଡଗୋଳ ଦେଖାଯିବା ସ୍ୱାଭାବିକ । ମନୁଷ୍ୟ ଶରୀର ଠିକ୍ ଗୋଟିଏ ଯନ୍ତ୍ର ସଦୃଶ । ମନୁଷ୍ୟ ସବୁବେଳେ କାର୍ଯ୍ୟରତ ରହି ଖାଦ୍ୟ ପଦାର୍ଥ ଖାଇ କଷ୍ଟକର ଜୀବନ ଅତିବାହିତ କରିଥାଏ । ଯଦି ଶରୀର ଠିକ୍‌ରୂପେ ଦିନେ ଦିନେ ବିଶ୍ରାମ ନ ନିଏ ତେବେ ଶରୀରର କ୍ଷତି ଘଟେ । ତେଣୁ ଶରୀର ବିଶ୍ରାମ ନେବା ମଧ୍ୟ ସମ୍ଭବ ହୋଇପାରୁଛି କେବଳ ପର୍ବ ପର୍ବାଣୀ ତଥା ଓଷା ବ୍ରତ ମାଧ୍ୟମରେ । ଏପରିକି ଚନ୍ଦ୍ର ଗ୍ରହଣ ଓ ସୂର୍ଯ୍ୟ ପରାଗ ପରି ଦିବସଗୁଡ଼ିକରେ ସଂପୂର୍ଣ୍ଣ ରୂପେ ଆହାର ବିହାର ତ୍ୟାଗ କରିବା ପାଇଁ ପାଞ୍ଜିରେ ଦର୍ଶାଯାଇଥାଏ । କାରଣ ଗ୍ରହଣ ବା ପରାଗ ସମୟରେ ଖାଦ୍ୟ ଠିକ୍ ଭାବେ ହଜମ ହୁଏନାହିଁ । ଫଳରେ ପେଟରେ ବିଭିନ୍ନ ପ୍ରକାର ରୋଗମାନ ସୃଷ୍ଟିହୁଏ ।

ଖାଦ୍ୟ ଖାଉଥିବା ସମୟରେ ଯଦି ଛିଙ୍କ ହୁଏ, ତେବେ ଥାଳିଆର ଉପର ଅଂଶରୁ କିଛି ଖାଦ୍ୟ ବାହାରକରି ତଳକୁ ପକାଇବାର ପ୍ରଥା ଆମ ସମାଜରେ ପ୍ରଚଳିତ ଅଛି । ଖାଇବା ସମୟରେ ଛିଙ୍କ ହେଲେ ବାହ୍ୟବସ୍ତୁ ବାହାରିଆସି ଖାଦ୍ୟ ଉପରେ ପଡ଼ିବା ବା ପାଟିର ମଇଳା ଆସି ଖାଦ୍ୟ ଉପରେ ପଡ଼ିବାର ଯଥେଷ୍ଟ ସମ୍ଭାବନା ଥାଏ । ତେଣୁ ଉପରୁ କିଛି ଖାଦ୍ୟ ବାହାର କରି ଖାଇବା ବିଜ୍ଞାନସମ୍ମତ । ଏଠାରେ ଆଉ ଏକ ଉଦାହରଣ ଉଦ୍ଧାର କରାଯାଇପାରେ । ଆମ ଗାଁ ସହରରେ ଅଦ୍ୟାବଧି ଛୋଟ ଛୋଟ ଶିଶୁମାନଙ୍କ ସାମନାରେ କେହି ନ ଛିଙ୍କିବାପାଇଁ ନିୟମ ପ୍ରଚଳିତ ରହିଛି । ତାହାର କାରଣ କେବଳ ହିଁ ବାହ୍ୟ ଜୀବାଣୁ ବା ଛିଂକୁଥିବା ବ୍ୟକ୍ତିର ପାଟିର ଜୀବାଣୁ ଶିଶୁ ଦେହରେ ପ୍ରବେଶ ନ କରିବା ।

ଖାଦ୍ୟ ଖାଇବା ଆରମ୍ଭ କରିବା ସମୟରେ ଓ ଖାଦ୍ୟ ଖାଇବା ଶେଷ କରିବା ସମୟରେ କେଉଁ ପ୍ରକାର ସ୍ୱାଦର ଖାଦ୍ୟ ଖାଇଲେ ଭଲ ଓ ରୁଚିପୂର୍ଣ୍ଣ ହେବ, ସେଥିପାଇଁ ଅନେକ ଶୃଙ୍ଖଳା ଦେଖାଯାଏ । ପାଶ୍ଚାତ୍ୟ ପ୍ରଥା ଅନୁଯାୟୀ ଖାଦ୍ୟ ଖାଇବା ପୂର୍ବରୁ ସୋଡ଼ା, କୋକାକୋଲା, ଫଳରସ ବା ଅନ୍ୟ ତରଳ ପଦାର୍ଥ ପିଇ ଖାଦ୍ୟ ଖାଇବା ଆରମ୍ଭ କରାଯାଇଥାଏ ଓ ତତ୍‌ପରେ ବିଭିନ୍ନ ପ୍ରକାର ଖାଦ୍ୟ ଖାଇସାରି ଶେଷରେ ମିଠା ଇତ୍ୟାଦି କିଛି ଖାଇ ଖାଇବା ସମାପନ କରାଯାଇଥାଏ । ଏ ପ୍ରଥା ପଛରେ ଏକ ଉତ୍ତମ ଉଦ୍ଦେଶ୍ୟ ରହିଛି । ପ୍ରଥମତଃ କିଛି ରସଯୁକ୍ତ ପାନୀୟ ଯୋଗୁଁ କ୍ଷୁଧା ବଢ଼ିଯାଏ, ତେଣୁ ଆନନ୍ଦରେ ଖାଦ୍ୟ ଖାଇବା ସୁବିଧା ହୁଏ । ଦ୍ୱିତୀୟରେ ତରଳ ରସଯୁକ୍ତ ପଦାର୍ଥ ପାକସ୍ଥଳୀକୁ ଓଦାଳିଆ ଓ ପରିଷ୍କାର କରିଦେବା ଯୋଗୁଁ ଖାଦ୍ୟଗୁଡ଼ିକ ସୁବିଧାରେ ପାକସ୍ଥଳୀକୁ ଖସିଯାଏ । ତୃତୀୟରେ କ୍ଷୁଧା ଏହି ପାନୀୟ ହିଁ ପାଚକରସ ଓ ଆମ୍ଳିକ ରସ କ୍ଷରଣକୁ ସୁସ୍ଥରୂପେ ନିୟନ୍ତ୍ରଣ କରିଥାଏ । ଖାଦ୍ୟ ଖାଇବା ଶେଷରେ ସନ୍ତୋଷତା ପରି ପ୍ରକାଶ କରିବାକୁ ଯାଇ ମିଠା ଖିଆଯାଏ । ଯାହା ଫଳରେ ଆଉ ଖାଦ୍ୟ ଖାଇବାର ରୁଚି କମାଇ ଦିଏ । ଅବଶ୍ୟ ପ୍ରାଚ୍ୟ ଦେଶମାନଙ୍କରେ ଏ ପ୍ରକାର ଯଥାର୍ଥ୍ୟକୁ ଅନୁସରଣ କରୁଛନ୍ତି । ଭାରତୀୟ ସଭ୍ୟତାରେ ଅନୁକରଣ ପୂର୍ବରୁ ହିଁ ଏ ପ୍ରକାର ପ୍ରଥା ଚଳିଆସୁଛି । ଖାଦ୍ୟ ଖାଇବା ପୂର୍ବରୁ ଚଳୁ କରିବା, ପାଣି ପିଇବା ଓ ଖାଇବା ଶେଷରେ ପାୟସ, ରାବିଡ଼ି ଓ ସଂଦେଶ ଇତ୍ୟାଦି ସୁମିଷ୍ଟ ଦ୍ରବ୍ୟ ଖାଇବା ଅନେକ ଦିନରୁ ରହିଛି । ଏହାର ଜ୍ୱଳନ୍ତ ଉଦାହରଣ ହେଉଛି–ବିବାହ, ବ୍ରତ, ଓଷା ଓ ଆନନ୍ଦ ଉତ୍ସବ ଦିବସଗୁଡ଼ିକ; ଯାହାକି ବାସ୍ତବିକ୍ ବଡ଼ ମହତ୍ୱପୂର୍ଣ୍ଣ ।

ଓଡ଼ିଆରେ ଗୋଟିଏ ପ୍ରବାଦ ଅଛି–

"ଖାଇ ଶୋଇଲେ ବଢ଼ଇ ଆୟୁ,
ଖାଇ ବୁଲିଲେ ବଢ଼ଇ ବାୟୁ,
ଖାଇ ବସିଲେ ବଢ଼ଇ ପେଟ,
ଖାଇ ଖାଇଲେ ଯମର ଭେଟ ।"

ବୈଜ୍ଞାନିକ ଦୃଷ୍ଟିକୋଣରୁ ଚିନ୍ତା କଲେ ଏ ପ୍ରବାଦଟି ଯୁକ୍ତିସଂଗତ । କାରଣ ଖାଦ୍ୟ ଖାଇ ସାରିବା ପରେ ଜଳଖିଆ କିଛି ସମୟ ଶୋଇ ରହିଲେ ଯକୃତରୁ ପିତ୍ତରସ ଓ ପାକସ୍ଥଳୀରୁ ପାଚକରସ ଠିକ୍‌ଭାବରେ କ୍ଷରିତ ହୁଏ । ତେଣୁ ଖାଦ୍ୟ ହଜମ ସହଜରେ ହୋଇପାରେ । ମନୁଷ୍ୟର ବାମପଟେ ପାକସ୍ଥଳୀ ଥିବାରୁ ବାମପଟ ମାଡ଼ି ଶୋଇଲେ ପାଚକରସ ଠିକ୍‌ଭାବେ କ୍ଷରିତ ହୁଏ । ଫଳରେ ଖାଦ୍ୟ ହଜମଜନିତ କୌଣସି ଅସୁବିଧା ଉପୁଜେ ନାହିଁ । ମାତ୍ର ଖାଇ ସାରିବା ପରେ ବହୁତ ବାଟ ବୁଲିଲେ ହଜମ ପ୍ରକ୍ରିୟାରେ ବ୍ୟାଘାତ ଘଟିଥାଏ । ପେଟ ତରଳ ହୋଇଯିବା ଯୋଗୁଁ ମାନସିକ ଭାରସାମ୍ୟ ଠିକ୍ ରହେନାହିଁ । ପେଟପୂର୍ଣ୍ଣ ଖାଇସାରିବା ପରେ ଏକକାଳୀନ ବହୁ ସମୟ ଧରି ବସିଲେ ପାକସ୍ଥଳୀ ଉପରେ ଏକ ପ୍ରକାର ଅହେତୁକ ଚାପ ପଡ଼େ ।

ଖାଇସାରିବାର ଅଳ୍ପ ସମୟପରେ ପୁଣିଥରେ ଖାଇଲେ, ହଜମ ପ୍ରକ୍ରିୟାରେ ଗୋଳମାଳ ଦେଖାଯାଏ । ପାକସ୍ଥଳୀରେ ଖାଦ୍ୟ ହଜମ ହେଉଥିବା ସମୟରେ ପୁଣିଥରେ ନୂତନ ଖାଦ୍ୟ ଖାଇଲେ, ପିତ୍ତରସ, ମଧୁରସ ଓ ପାଚକରସ କ୍ଷରଣରେ ସମତା ନ ରହିବା ଯୋଗୁଁ ଅସୁବିଧା ସୃଷ୍ଟି ହୁଏ । ଫଳତଃ ଖାଦ୍ୟ ଠିକ୍‌ଭାବେ ହଜମ ହୋଇ ନ ପାରି ଝାଡ଼ା ବାନ୍ତି ହୋଇ ଅଧା ହଜମ ଖାଦ୍ୟ ବାହାରି ଯାଏ ତେଣୁ ବହୁଲୋକ ଉପର ଲିଖିତ ପ୍ରବାଦର ବୈଜ୍ଞାନିକ ତଥ୍ୟକୁ ନ ଜାଣି ମଧ୍ୟ ବିଧିବଦ୍ଧ ନିୟମଭାବେ ମାନି ଆସିଛନ୍ତି ଏବଂ ମାନିବା ଏକାନ୍ତ ବିଧେୟ ।

ସାଇମଧ୍ୟ ରାତ୍ରିରେ କମ୍ ଖାଦ୍ୟ ଖାଇବା ଏକ ନିୟମ ହୋଇ କୁହାଯାଇଥାଏ । ରାତ୍ରି ହିଁ ବିଶ୍ରାମର ଉପଯୁକ୍ତ ସମୟ । ତେଣୁ ସାମାନ୍ୟ ଭାବରେ ଖାଇ ବା ଗୁରୁପାକ ଖାଦ୍ୟ ନ ଖାଇ ବିଶ୍ରାମ କଲେ ଖାଦ୍ୟଗୁଡ଼ିକ ସହଜରେ ସରଳୀକୃତ ହୋଇ ହଜମ ହେବା ସଂଗେ ସଂଗେ ସେଗୁଡ଼ିକ ସୁସ୍ଥରୂପେ ଶରୀର ଦ୍ୱାରା ବିଶୋଷିତ ହୋଇଥାଏ । ଗୁରୁପାକ ଖାଦ୍ୟ ଖାଇବା ଯୋଗୁଁ ପାଚକ ରସ ଠିକ୍ ରୂପେ ନିସୃତ ନ ହୋଇ ଖାଦ୍ୟ ହଜମରେ ବ୍ୟାଘାତ ଘଟାଇଥାଏ ଓ ଏହି ଖାଦ୍ୟ ହିଁ ହଜମ ହେବାପାଇଁ ଯଥେଷ୍ଟ ଅଧିକ ସମୟ ନେଇଥାଏ । ରାତ୍ରି ସମୟ ବିଶ୍ରାମରେ ରହୁଥିବାରୁ ଖାଦ୍ୟଟି ଠିକ୍ ଭାବେ ସରଳୀକୃତ ହେବା ସମ୍ଭବ ହୋଇ ନ ଥାଏ । ତେଣୁ ରାତ୍ରିରେ ଗୁରୁପାକ ଖାଦ୍ୟ ଆଦୌ ନ ଖାଇବା ଉଚିତ୍ । ଲଘୁପାକ ଖାଦ୍ୟ ସୁନିଦ୍ରା ପାଇଁ ସର୍ବୋତ୍ତମ ଔଷଧ । ତେଣୁ ଗରିଷ୍ଠ ଖାଦ୍ୟ ଖାଇ ତା' ଉପରେ ହଜମ ଔଷଧ ତଥା ନିଦ୍ରା ଔଷଧ ବ୍ୟବହାର କରି ଶରୀରକୁ କଳଙ୍କିତ କରିବା ଶ୍ରେୟସ୍କର ନୁହେଁ ।

ଆଧୁନିକ ଶିକ୍ଷାର ସ୍ରୋତରେ ଆମେ ଆମର ଅନେକ ଆଚାର-ବିଚାର, ବିଧି ଓ ନିୟମକୁ ଭୁଲିଯିବାକୁ ଅଗ୍ରସର ହେଉଛୁ । ଅନେକ ସାମାଜିକ ପ୍ରଥା ବିଭିନ୍ନ ସମୟରେ ବିଭିନ୍ନ ପରିସ୍ଥିତିରେ ତା'ର ମୂଳରୂପ ହରାଇ ବସିଲଣି । ପୂର୍ବପୁରୁଷଙ୍କ ପ୍ରଚଳିତ କୌଣସି ବିଧିରେ ପୁଂଖାନୁପୁଂଖ ପରୀକ୍ଷା ନ କରି ତାକୁ ମୂଳପୋଛ କରିଦେବା ଅତ୍ୟନ୍ତ ଅଶୋଭନୀୟ । ଶିକ୍ଷାର ପ୍ରସାର ସଂଗେ ସଂଗେ ପ୍ରଚଳିତ ସଂସ୍କୃତିର ବିଧି ଓ ତା'ର ବୈଜ୍ଞାନିକ ମତବାଦକୁ ସମସ୍ତ ଲୋକଲୋଚନକୁ ଆଣି ସେ ସବୁଙ୍କୀୟ ଜ୍ଞାନର ମହତ୍ୱକୁ ପ୍ରତିପାଦିତ କରିପାରିଲେ ସାଧାରଣ ଲୋକଙ୍କ ପାଇଁ ବିଜ୍ଞାନର ଭୂମିକା ଅଧିକରୁ ଅଧିକ କାର୍ଯ୍ୟକାରୀ ହୋଇପାରନ୍ତା ।

ସ୍ନାତକୋତ୍ତର ପ୍ରାଣୀବିଜ୍ଞାନ ବିଭାଗ
ଉତ୍କଳ ବିଶ୍ୱବିଦ୍ୟାଳୟ, ବାଣୀବିହାର
ଭୁବନେଶ୍ୱର—୭୫୧୦୦୪



କଟକ ସହରର ବର୍ଜ୍ୟଜଳ ନିଷ୍କାସନ ପାଇଁ ମୁଖ୍ୟମନ୍ତ୍ରୀଙ୍କ ନିର୍ଦ୍ଦେଶ ..

# ଅଛିର ଅନୁଚିନ୍ତ

**ଶ୍ରୀ ମହେଶ୍ୱର ସ୍ୱାଇଁ**

ଆମ ଦେଶରେ ଜାତିପ୍ରଥା ଓ ଅସ୍ପୃଶ୍ୟତା ଉପରେ ଯେତେ ଗୁରୁତ୍ୱ ଆରୋପ କରାଯାଏ ଅନ୍ୟ କୌଣସି ଦେଶରେ ସେପରି କରାଯାଏ ନାହିଁ । ଏହାର କାରଣ କୁସଂସ୍କାର ଜନିତ ପରଂପରା ବୋଲି ମନେହୁଏ । ଜାତିପ୍ରଥା ଓ ଅସ୍ପୃଶ୍ୟତାଟି ଈଶ୍ୱର ସୃଷ୍ଟବୋଲି ଅନେକ ବିଶ୍ୱାସ କରନ୍ତି । କିନ୍ତୁ ଗଭୀର ଭାବରେ ଚିନ୍ତାକଲେ ଜଣାଯାଏ ଯେ ଏହା କୁସଂସ୍କାର ବ୍ୟତୀତ ଆଉ କିଛିନୁହେଁ । ଜାତିପ୍ରଥା ଓ ଅସ୍ପୃଶ୍ୟତା ଆମ ସାମାଜିକ ଜୀବନକୁ ରୋଗାକ୍ରାନ୍ତ କରିଛି । ଏହା ଆମ ଦେଶର ପ୍ରଗତିର ଘୋର ଅନ୍ତରାୟ ସୃଷ୍ଟି କରୁଛି । ଗୋଟିଏ ଦେଶର ଗୋଟିଏ ଧର୍ମର ଲୋକ ହେଲେ ସୁଦ୍ଧା ମଣିଷ ମଣିଷର ନିକଟତର ହୋଇ ପାରିନାହିଁ । ଶାନ୍ତି, ମୈତ୍ରୀ ଓ ଏକତା ବ୍ୟାହତ ହୋଇଛି । ଉଚ୍ଚଜାତି, ନୀଚଜାତି ଛୁଆଁ ଅଛୁଆଁ ଧାରଣାର ଚକ୍ରବ୍ୟୁହରେ ଆମେ ଅଣନିଶ୍ୱାସୀ–କ୍ଲାନ୍ତ ।

ସୂକ୍ଷ୍ମଭାବରେ ବିଚାରକଲେ ଜଣାପଡ଼େ, ଜାତିପ୍ରଥା ଓ ଅସ୍ପୃଶ୍ୟତା ପଛରେ କୌଣସି ବୈଜ୍ଞାନିକ, ଶାସ୍ତ୍ର ସମ୍ମତ କିମ୍ବା ଯୁକ୍ତିସଂଗତ କାରଣନାହିଁ । ଏହା ଅନ୍ଧବିଶ୍ୱାସର ରୂପାନ୍ତର । ସନାତନ ଧର୍ମ ମୌଳିକ ତତ୍ତ୍ୱର ପରିପନ୍ଥୀ । ପ୍ରଚଳିତ ଜାତିପ୍ରଥା ସୃଷ୍ଟି ହେଲା ଓ ଅସ୍ପୃଶ୍ୟତା ମଣିଷ ମନକୁ ବିଷାକ୍ତ କିମିତି କଲା, ଏହା ଉପରେ କାହିଁକି ଗୁରୁତ୍ୱ ଦିଆଗଲା, ଠିକ୍‌ଠିକ୍ ଭାବରେ କିଛି କୁହାଯାଇ ନପାରିଲେ ସୁଦ୍ଧା ଏହାଯେ ଅଜ୍ଞାନତା, ସ୍ୱାର୍ଥପରତା, ଅଶିକ୍ଷା ଯୋଗୁଁ ହୋଇଛି, ସନ୍ଦେହ କରିବାର କିଛି ନାହିଁ ।

ହିନ୍ଦୁଶାସ୍ତ୍ର, ପୁରାଣ, ଗୀତା ଓ ଭାଗବତରେ ଜାତି ସମ୍ବନ୍ଧରେ ଯେଉଁ ଉଲ୍ଲେଖ ଅଛି, ପ୍ରକୃତ ଅର୍ଥରେ ତାହା ପ୍ରଚଳିତ ଜାତି ବିଭାଗ ନୁହେଁ । ଏହା ଗୁଣ ଓ କର୍ମ ଅନୁସାରେ ଶ୍ରେଣୀ ବିଭାଗ ମାତ୍ର । ଆବଶ୍ୟକତା ଦୃଷ୍ଟିରୁ ଏହା କରାଯାଇଛି । ତେଣୁ ଗୁଣ ଓ କର୍ମଜନିତ ଶ୍ରେଣୀ ବିଭାଗକୁ ଜାତିପ୍ରଥା ବୋଲି ଧରିନେବା ଠିକ୍ ହେବନାହିଁ । ଶ୍ରେଣୀ ବିଭାଗ ପଛରେ ଯୁକ୍ତି ଅଛି ମା... ଜାତିପ୍ରଥା ପଛରେ କୌଣସି ଯୁକ୍ତିନାହିଁ । ସରକାରଙ୍କ ଅଧୀନରେ କାମକରୁଥିବା ବ୍ୟକ୍ତିମାନେ ସରକାରୀ କର୍ମଚାରୀ, ମାତ୍ର ଗୁଣ ଓ କର୍ମ ନେଇ ସେମାନଙ୍କ କାମ ଏକ୍ ନୁହେଁ । ଏହି ସୂତ୍ରରେ ମଣିଷ ଜାତିକୁ ବିଚାର କରିବା କଥା ।

ଭଗବାନ ଶ୍ରୀକୃଷ୍ଣ ଗୀତାର ୪ର୍ଥ ଅଧ୍ୟାୟର ତ୍ରୟୋଦଶ ଶ୍ଳୋକରେ କହିଛନ୍ତି–

> ଚାତୁର୍ବର୍ଣ୍ୟଂ ମୟାସୃଷ୍ଟଂ ଗୁଣକର୍ମ ବିଭାଗଶଃ
> ତସ୍ୟ କର୍ତ୍ତାରମପି ମାଂ ବିଦ୍ଧାକର୍ତ୍ତାରମବ୍ୟୟମ୍ ।

ଏହା ତାତ୍‌ପର୍ଯ୍ୟ, "ଗୁଣ ଓ କର୍ମ ଅନୁସାରେ ମୁଁ ବ୍ରାହ୍ମଣ, କ୍ଷତ୍ରିୟ, ବୈଶ୍ୟ ଓ ଶୂଦ୍ର–ଏହି ଚାରିଗୋଟି ବର୍ଣ୍ଣ ବା ବିଭାଗ ସୃଷ୍ଟି କରିଛି–ଯେଉଁମାନେ ସତ୍‌ଗୁଣ ପ୍ରଧାନ ସେମାନେ ବ୍ରାହ୍ମଣ, ସେମାନେ ଶମ ଦମାଦିଗୁଣ ବିଶିଷ୍ଟ । ଯେଉଁମାନେ ସତ୍ତ୍ୱ ଓ ରଜୋଗୁଣ ମିଶ୍ରିତ ସ୍ୱଭାବଯୁକ୍ତ ସେମାନେ କ୍ଷତ୍ରିୟ, ଯୁଦ୍ଧ, ଦେଶରକ୍ଷା ହେଲା ସେମାନଙ୍କ କର୍ମ । ଯେଉଁମାନେ ରଜ ଓ ତମୋଗୁଣ ପ୍ରଧାନ ସେମାନେ ବୈଶ୍ୟ, ସେମାନଙ୍କ କର୍ମ କୃଷି, ବ୍ୟବସାୟ, ଇତ୍ୟାଦି । ଯେଉଁମାନେ କେବଳ ତମୋଗୁଣ ପ୍ରଧାନ ସେମାନେ ଶୂଦ୍ର–ଅନ୍ୟ ତିନିବର୍ଣ୍ଣର ପରିଚର୍ଯ୍ୟାଦି କାମ କରିବାହିଁ ସେମାନଙ୍କ କର୍ମ । ଶାସନରେ ଯେପରି ବିଭାଗଗୁଡ଼ିକ ସୃଷ୍ଟ, ଧର୍ମରେ ସେହିପରି ସମାଜର ମଂଗଳପାଇଁ ଗୁଣକର୍ମାନୁସାରେ ଶ୍ରେଣୀ ବିଭାଗ ସୃଷ୍ଟ ।

ଶ୍ରୀ ଶ୍ରୀ ଶ୍ରୀ ଏ. ସି. ଭକ୍ତିବେଦାନ୍ତ ସ୍ୱାମୀ ପ୍ରଭୁପଦ ଭଗବତଗୀତା (Bhagved-Gita—As it is—Collier Macmillan Publishers—London at P. 235) ରେ ଅତି ମନୋଜ୍ଞ ଭାବରେ ଉପରୋକ୍ତ ଶ୍ଳୋକଟିକୁ ବାଖ୍ୟା କରିଛନ୍ତି ।

"The Lord is the Creator of everything. Every thing is born of him, everything is sustained by him, and everything after annilulation, rests in him. He ,is therefore the creator of the four divisions of the Social order beginning with the intelligent class of men technically called Brahmanam, due to their being situated in the mode of goodness. Next is the administrative class, technically called the ksatriyas due to their being situated in the mode of passion The merchantile men called the Vaisyas, are situated in the mixed mode of passion and ignorance, and the Sudras or Labour class, are situated in the ignorant mode of material nature. In sprite of His creating the four division of human society Lord Kisna does not belong to any of these divisions because He is not one of the conditioned souls' a section . of whom form human society. Human society is similar to any other animal society, but to elevate men from the animal status, the above-mentioned divisions are created by the Lord for the systematic development of Krsna consciousness. The tendency of a particular men towards work is determined by the modes' of material nature while he has acquired".

ଏଥିରୁ ଜଣା ଯାଉଛି ମଣିଷ ନିଜର ଗୁଣ ଓ କର୍ମ ଅନୁସାରେ ବିଭିନ୍ନ ଶ୍ରେଣୀଭୁକ୍ତ ହୋଇଥାଏ । ଗୀତାରେ ଏହି ଚାରୋଟି ବିଭାଗ ବ୍ୟତୀତ ଜାତି ବିଷୟରେ ଉଲ୍ଲେଖ ନାହିଁ । ମଣିଷ ସମାଜ ମୋଟାମୋଟି ଚାରି ଭାଗରେ ବିଭକ୍ତ । ମଣିଷ ଗୋଟିଏ ଜାତିର ପ୍ରାଣୀ, ଯେପରିକି ବାଘ ଗୋଟିଏ ଜାତିର ପ୍ରାଣୀ । ତେଣୁ ଜାତି ପ୍ରଥା ଓ ତହିଁରୁ ଉଦ୍‌ଭବ ଅସ୍ପୃଶ୍ୟତା ଯେ ଧର୍ମରୁ ସୃଷ୍ଟି, ଏହା ଭାବିବା ଠିକ୍ ନୁହେଁ । ଉଦାହରଣ ସ୍ୱରୂପ—ଯେଉଁ ଲୋକମାନେ ସୈନ୍ୟ ବିଭାଗରେ କାମ କରନ୍ତି ଶାସ୍ତ୍ରୀୟ ନ୍ୟାୟରେ ସେମାନେ ହେଲେ କ୍ଷତ୍ରୀୟ । କାରଣ ସୈନ୍ୟ ମାନଙ୍କର ଗୁଣ ବୀରତ୍ୱ ପ୍ରଦର୍ଶନ ଓ କର୍ମ ହେଲା ଦେଶ ରକ୍ଷା । କିନ୍ତୁ ସେମାନେ କ୍ଷତ୍ରିୟ ଜାତିର ଲୋକ ନୁହନ୍ତି, କ୍ଷତ୍ରିୟ ବିଭାଗରୁ ଲୋକ । ପକ୍ଷାନ୍ତରେ ଜଣେ ସୈନ୍ୟ ଯଦି ସୈନ୍ୟ କାମ ଛାଡ଼ି ଶିକ୍ଷା ପ୍ରଦାନ କରେ ସେ ବ୍ରାହ୍ମଣର ଗୁଣ ଅର୍ଜନ କରି ବ୍ରାହ୍ମଣ ଶ୍ରେଣୀଭୁକ୍ତ ହେଲା, ମାତ୍ର ତାକୁ ବ୍ରାହ୍ମଣ ଜାତିର ବୋଲି କୁହାଯିବ ନାହିଁ । ଏହି ସୂତ୍ରରେ ସୈନିକର ପୁତ୍ରକୁ ସୈନିକ, ଶିକ୍ଷକର ପୁତ୍ରକୁ ଶିକ୍ଷକ କୁହାଯାଇ ପାରିବ ନାହିଁ । ଗୁଣ ଓ କର୍ମ ବିଭାଗର ତାତ୍ପର୍ଯ୍ୟ ଏହି ଦୃଷ୍ଟିରେ ବୁଝିବାକୁ ହେବ ।

କିନ୍ତୁ ଦୁଃଖର କଥା, ଶ୍ରେଣୀ ବିଭଗର ଦର୍ଶନକୁ ଅପବ୍ୟାଖ୍ୟା କରାଯାଇ ଜାତି ପ୍ରଥାକୁ ବଞ୍ଚାଇ ରଖା ଯାଇଛି । ସେଥିପାଇଁ କ୍ଷତ୍ରିୟର ପୁଅକୁ କ୍ଷତ୍ରିୟ, ବ୍ରାହ୍ମଣର ପୁଅକୁ ବ୍ରାହ୍ମଣ କୁହାଯାଉଛି; କିନ୍ତୁ ଗୁଣ କର୍ମ ହିସାବରେ ନୁହେଁ ।

ଜାତି ଆଡରେ ଦଳେ ସମାଜରେ ସମସ୍ତ ସୁବିଧା ସୁଯୋଗ ଲାଭ କରି ସମାଜରେ ଆଧିପତ୍ୟ ବିସ୍ତାର କଲେ । ଅନ୍ୟ ଦଳେ ସମାଜର ପ୍ରତ୍ୟେକ ସୁବିଧାରୁ ବଞ୍ଚିତ ହୋଇ ରହିଲେ । ତେଣୁ ସେମାନଙ୍କର ଅର୍ଥନୈତିକ, ବୌଦ୍ଧିକ ଓ ସାଂସ୍କୃତିକ ବିକାଶ ହେଲା ନାହିଁ ଓ ସେମାନଙ୍କର ସାମାଜିକ ଜୀବନ ଭିନ୍ନ ଧାରଣର ହେଲା । ଏଠାରେ ଗୁଣ, କର୍ମ ବା ଯୋଗ୍ୟତା ଅର୍ଥହୀନ ହୋଇ ପଡ଼ିଲା । କେବଳ ଜାତି ତ ସୃଷ୍ଟି ହେଲା ନାହିଁ, କେତେ ସଂପ୍ରଦାୟର ଲୋକଙ୍କୁ ଅସ୍ପୃଶ୍ୟ ବୋଲି କୁହାଗଲା । ତାପରେ ଜାତି ଜାତି ମଧ୍ୟରେ ବିଦ୍ୱେଷ, ଅସମାନତା, ଉଚ୍ଚ ନୀଚର ଧାରଣା ଇତ୍ୟାଦି ମଣିଷକୁ ମାନସିକ ସ୍ତରରେ ଖଣ୍ଡ କରିଦେଲା । ଯେଉଁମାନେ ଜାତି ଓ ଧନ ଦୃଷ୍ଟିରୁ ସୁବିଧାରେ ରହିଲେ, ସେମାନେ ଧର୍ମର ଦୁହାଇ ଦେଇ ଅନ୍ୟମାନଙ୍କୁ ଶୋଷଣ କଲେ । ଉଠିବାକୁ ଦେଲେ ନାହିଁ । ତେଣୁ ସେମାନେ ହେଲେ ଅବହେଳିତ—ଦୁର୍ବଳ । ଜଣେ ନୀଚ ଜାତିର (ଯାହା କୁହାଯାଉଛି) ଲୋକ ଯୋଗ୍ୟ, ସୁଶିକ୍ଷିତ ଓ ବୁଦ୍ଧିମାନ ହେଲେ ସୁଦ୍ଧା ସେ ରହିଯାଉଛି ନିମ୍ନ ସ୍ତରରେ । ଅଥଚ ଉଚ୍ଚ ଜାତିର (ଯାହା କୁହାଯାଉଛି) ଜଣେ ଅଯୋଗ୍ୟ ଅଶିକ୍ଷିତ, ନିର୍ବୋଧ ବ୍ୟକ୍ତି ସମାଜର ସମସ୍ତ ସୁବିଧା ପାଇବାକୁ ସୁଯୋଗ ପାଉଛି । ଗୁଣ, କର୍ମ ବିଭାଗର ଦର୍ଶନର ଉଦ୍ଦେଶ୍ୟ ପ୍ରତିହତ ହୋଇଛି । ତେଣୁ ସମାଜ ହୋଇଛି ବିକଳାଙ୍ଗ ।

ପୂର୍ବେ ଯେଉଁ ଲୋକ ବଢ଼େଇ କାମ କରୁଥିଲା, ତା'ପୁଅ ସେହି କାମ କରୁଥିଲା । ଏହାର ମୌଳିକ ଉଦ୍ଦେଶ୍ୟ ଥିଲା ଅଭିଜ୍ଞତା ହାସଲ କରିବା । କିନ୍ତୁ ବଢ଼େଇର ପୁଅ ସେ ବଢ଼େଇ ଜାତି ବା ଅନ୍ୟ କୌଣସି କାମ କରିପାରିବ ନାହିଁ ଏପରି ଅର୍ଥ କରିବା ଠିକ୍ ନୁହେଁ । ଗୁଣ ଓ କର୍ମ ବଳରେ ବ୍ରାହ୍ମଣ ବିଭାଗକୁ ଯିବାର ବାଧା ନଥିଲା । ଗୁଣ, କର୍ମ ଓ ଯୋଗ୍ୟତା ଥିଲା ସାମାଜିକ ଆସନର ମାନଦଣ୍ଡ । ଏହାର ପ୍ରମାଣ ଋଷି ବିଶ୍ୱାମିତ୍ର । ଏ ବିଷୟରେ ଶାସ୍ତ୍ରୀୟ ଦୃଷ୍ଟାନ୍ତ ଅନେକ ଅଛି । ବଢ଼େଇର ପୁଅକୁ ବଢ଼େଇ ଜାତିର ବୋଲି ଯେଉଁ ଦିନ ଠାରୁ କୁହାଗଲା, ସେଇଦିନଠାରୁ ଉତ୍ପତ୍ତି ହେଲା ସାମାଜିକ ବିଭ୍ରାଟ । ସାମାଜିକ ଜୀବନ ହେଲା ବିଡ଼ମ୍ବିତ ଓ ଅଶାନ୍ତ ।

ଯଦି ଜାତି ବା ଅସ୍ପୃଶ୍ୟତା ପଛରେ ତର୍କ ଥାନ୍ତା କିମ୍ବା ବୈଜ୍ଞାନିକ ଭିତ୍ତି ଉପରେ ସୃଷ୍ଟି ହୋଇଥାନ୍ତା, ତେବେ ବ୍ରାହ୍ମଣର ପୁଅ ବ୍ରହ୍ମଜ୍ଞ, ଜ୍ଞାନୀ ଓ କ୍ଷତ୍ରିୟର ପୁଅ ସାହସୀ ଓ ବୀର ବଂଶାନୁକ୍ରମେ ହେଉଥାନ୍ତେ । ଠିକ୍ ଯେପରି ସିଂହର ଶାବକ ସିଂହ ହୁଏ, ଶୃଗାଳ ହୁଏ ନାହିଁ । କିନ୍ତୁ ବାସ୍ତବ କ୍ଷେତ୍ରରେ ଏହା ହେଉ ନାହିଁ—ବ୍ରାହ୍ମଣର ପୁଅ ମୂର୍ଖ ଓ କ୍ଷତ୍ରିୟର ପୁଅ ଭୀରୁ ହୋଇଛି ।

ଶାସ୍ତ୍ରୀୟ ପ୍ରମାଣରୁ ଏହା ସ୍ପଷ୍ଟ ରୂପେ ଜଣା ପଡୁଛି ଯେ ଜାତି ପ୍ରଥା ସହିତ ଧର୍ମ କିମ୍ବା ଶାସ୍ତ୍ରର ସମ୍ବନ୍ଧ ନାହିଁ । ଏହା କୁସଂସ୍କାର ଭିତ୍ତିକ । ଗୁଣ ଆଚରଣ ଦ୍ୱାରା ମଣିଷର ସାମାଜିକ ମୂଲ୍ୟ ନିର୍ଦ୍ଧାରଣର ଉଦ୍ଦେଶ୍ୟ ମହତ ଓ ବୈଜ୍ଞାନିକ ଆଚରଣ ଗୁଣ, ଚରିତ୍ର ଓ ଯୋଗ୍ୟତା ଭିତ୍ତିରେ ବ୍ୟକ୍ତିର ସାମାଜିକ ମାନ ନିରୂପିତ ହେବା ବିଧେୟ । ଗୁଣ, ଆଚରଣ, ଯୋଗ୍ୟତା ଓ ଚରିତ୍ର ଭିତ୍ତିରେ ବ୍ୟକ୍ତି ସମାଜରେ ଉଚ୍ଚ ବା ନୀଚ ସ୍ଥାନ ପାଇପାରେ—କିନ୍ତୁ ଏହା ଜାତି ଭିତ୍ତିରେ ହେବା

ଅବିଧେୟ । ପ୍ରକୃତ ଅର୍ଥରେ ଗୁଣ କର୍ମ ବିଭାଗ ଜାତି ପ୍ରଥା ନୁହେଁ ଏହା ବ୍ୟକ୍ତିଗତ ଯୋଗ୍ୟତା, ଚରିତ୍ର, ଗୁଣ, କର୍ମ ଓ ଆଚରଣର ଶ୍ରେଣୀ ବିଭାଗ ମାତ୍ର ।

ପୂର୍ବେ ଅସାମାଜିକ, ଦୁଶ୍ଚରିତ୍ର, ଅପରାଧୀମାନଙ୍କୁ ବାଛନ୍ଦ କରା ଯାଉଥିଲା ଏବଂ ସେମାନେ ଚଣ୍ଡାଳ ବା ଅସ୍ପୃଶ୍ୟତା ରୂପେ ଗଣିତ ହେଉଥିଲେ , କାରଣ ଏଇଟା ଥିଲା ମନ୍ଦ କର୍ମ, ଖରାପ ଆଚରଣ ଓ ସମାଜ ବିରୋଧି କାମର ମନ୍ଦ ପରିଣତି– ସାମାଜିକ ଦଣ୍ଡ । କିନ୍ତୁ ମନେ ରଖିବାକୁ ହେବ ଚଣ୍ଡାଳ ବା ଅସ୍ପୃଶ୍ୟ ଗୋଟିଏ ଜାତି ନୁହେଁ–ଅସାମାଜିକ କର୍ମ ଯୋଗୁ ଜଣେ ବ୍ରାହ୍ମଣ ଶ୍ରେଣୀର ବ୍ୟକ୍ତି ଏହି ସ୍ତରକୁ ଯାଉଥିଲା । ପୁଣି ଜଣେ ଚଣ୍ଡାଳ ଯଦି ନିଜକୁ ସଂଶୋଧନ କରି ମନ୍ଦ ଆଚରଣ ତ୍ୟାଗ କରୁଥିଲା ତାକୁ ଉପର ସ୍ତରକୁ ଯିବାକୁ ବାଧା ନଥିଲା । ଏହା ନ ହୋଇଥିଲେ ଶବରମାନେ ଶ୍ରୀଜଗନ୍ନାଥଙ୍କୁ ପୂଜା କରିଥାନ୍ତେ କିପରି ? ଦସ୍ୟୁ ରତ୍ନାକର ବାଲ୍ମୀକ ଋଷି ବା କିପରି ହୋଇଥାନ୍ତେ ? ପୁଣି ଅଶୋକ କ୍ଷତ୍ରିୟ ସ୍ତରରୁ ବ୍ରାହ୍ମଣ ସ୍ତରକୁ ଉଠିଥାନ୍ତେ ବା କିପରି ? ଏସବୁ ବିଷୟର ଗଭୀର ଅଧ୍ୟୟନ ଲୋଡ଼ା ।

ଝରଣା ପରି ସମାଜ ଗତିଶୀଳ । ଯାହା ଥାଚି ନୂତନ କାଲି ସେ ହେଉଛି ପୁରୁଣା । ଏହା ସୃଷ୍ଟିର ନିୟମ ଯୁଗ ଧର୍ମ ମଧ୍ୟ । ଏହାକୁ ଅବମାନନା କଲେ ଅଧୋଗତି ହିଁ ସାର ହେବ । । ପରମ୍ପରା ଓ ପୁରାତନକୁ ବର୍ଜନୀୟ ନୁହେଁ, କିନ୍ତୁ ସେଥିରେ ଯାହା ହିତସାଧନ କରିବ ନାହିଁ ତାକୁ ବର୍ଜନ କରିବା ହିଁ ପ୍ରଗତିର ଲକ୍ଷଣ । ଶ୍ରେଣୀ ବିଭାଗକୁ ଜାତି ବିଭାଗ ବୋଲି ଆଖ୍ୟା ଦେଇ ତାକୁ ଧରି ବସିବା ବିଜ୍ଞତାର ଲକ୍ଷଣ ନୁହେଁ । ଗୋଷ୍ଠୀ ଜୀବନରେ ସଂକୀର୍ଣ୍ଣତାର ସ୍ଥାନ ନାହିଁ–ଏଥିପାଇଁ ଲୋଡ଼ା ଏକମନତ୍ୱ, ସଦଭାବ, ସମାନତା ଓ ସର୍ବୋପରି ମାନବିକତାର ନିଚ୍ଛକ ପରିପ୍ରକାଶ । ଏଗୁଡ଼ିକର ଅଭାବ ହେଲେ, ଆମେ ଜେଟ୍‌ରେ ଭ୍ରମଣ କଲେ ବି ସାଧାରଣ ରାସ୍ତାରେ ଚାଲିବାକୁ କ୍ଷମ ହୋଇ ପାରିବା ନାହିଁ ।

ସମାଜରେ ଯାହା ସବୁ ଆମ ପ୍ରଗତି ପଥରେ ଅନ୍ତରାୟ ସୃଷ୍ଟି କରୁଛି ସେଗୁଡ଼ିକୁ ଦୂର କରିବାକୁ ଆଜି ଏହି ପୁଣ୍ୟ ଦିବସରେ ଶପଥ ନେବାକୁ ହେବ–ଖାଲି ଶପଥ ନେଲେ ଚଳିବ ନାହିଁ– ସେହିପରି କର୍ମ କରିବାକୁ ହେବ–ନହେଲେ ଉଚ୍ଚ ପାଳନ–ଭାଷଣ ସେହି ସ୍ତରରେ ରହିଯିବ ।

ଡି. ଏସ୍. ପି., କ୍ରାଇମ ବ୍ରାଞ୍ଚ



• ଓଡ଼ିଶାର ଉଚ୍ଚ ନ୍ୟାୟାଳୟ •

# ପନ୍ଦରର ପଦଧ୍ୱନି

**ଶ୍ରୀ ଶତ୍ରୁଘ୍ନ ନାଥ**

ପନ୍ଦରର ପଦଧ୍ୱନି ଆମ କାନରେ ଶୁଭୁଛି କି ? କେବଳ ସେଦିନ ନାଁ ସବୁଦିନ ଓ ‌ସବୁ ମୁହୂର୍ତ୍ତ ? କେବଳ କେତୋଟି ବଛା ବଛା ସ୍ଥାନରେ, ନାଁ ସର୍ବତ୍ର ବା ସମସ୍ତ ସ୍ଥାନରେ ? ଏହି ପଦଧ୍ୱନି ଆମ କଥା, କାମ ଓ ଚିନ୍ତାରେ ଧ୍ୱନିତ ହେଉଛି କି ? ଆମେ କଅଣ ଶୁଣୁଁ... ପରମୁହୂର୍ତ୍ତରେ ପାଶୋରି ନେବାପାଇଁ ? ଗୋଟିଏ ସ୍ୱାଧୀନ ଦେଶରେ ସ୍ୱାଧୀନତା ଦିବସର ମହତ୍ତ୍ୱ ଆମକୁ ମହତୋ ମହୀୟାନ କରୁଛି କି ?

ଅନ୍ୟାନ୍ୟ ସଂଖ୍ୟା ସମେତ ପନ୍ଦର ସ୍ପର୍ଶ କରେ ଗଣିତର କୁହୁକ । ସେଥିରେ ଥାଏ ବିସ୍ମୟ, ଉଲ୍ଲାସ ଓ ସାଧନାର ଆହ୍ୱାନ । ଗଣିତରେ ଥାଏ ସୌନ୍ଦର୍ଯ୍ୟ ଓ ସୌଷ୍ଠବ, ଯାହାକି ଗାଣିତିକ ବ୍ୟତୀତ ଅନ୍ୟ କାହାର ଉପଭୋଗ୍ୟ ନୁହେଁ । ଏହି ସୀମିତ ପରିସରରେ ଗଣିତର ପନ୍ଦର ଏକ ଅମୂର୍ତ୍ତ ଜୟଗାନ କରିଗୁଲିଥାଏ । କିନ୍ତୁ ପନ୍ଦର, ୧୯୪୭ ମସିହାର ଅଗଷ୍ଟ ମାସ ସହିତ ଜଡ଼ିତ ହୋଇ ମୂର୍ଚ୍ଛନାର ପସରା ମେଲିଦିଏ ଇତିହାସର ପୃଷ୍ଠାରେ ବିଶ୍ୱ ତଥା ଭାରତ ବକ୍ଷରେ । ଏକ ଅନନ୍ୟ ସାଧାରଣ କୃତିର କୀର୍ତ୍ତିସ୍ତମ୍ଭ ଭାବରେ ଅଜେୟ ଜାତିର ଜୟଗାଥା କୀର୍ତ୍ତିତ ହୁଏ । "ଯାର ରାଜ୍ୟେ କେବେ ନୁହେଁ ଅସ୍ତମିତ ଦିନମଣି ତେଜୋଧାମ" । ଏପରି ଆସ୍ଫାଳନ ତଥା ଦର୍ପର ସାମ୍ରାଜ୍ୟବାଦ ଯେ ଚିର ସତ୍ୟ ହୋଇ ରହିବ, ଏହାକୁ ଅପ୍ରମାଣ ଓ ଅସତ୍ୟ ପ୍ରମାଣିତ କରେ ୧୯୪୭ ଅଗଷ୍ଟ ପନ୍ଦର । ଅସ୍ତ୍ର ଶସ୍ତ୍ରରେ ସୁସଜ୍ଜିତ ଶକ୍ତି ଚିର ଅପରାଜେୟ, ଏହା ଏ ପର୍ଯ୍ୟନ୍ତ ଇତିହାସର ପରୀକ୍ଷିତ ସତ୍ୟ । କିନ୍ତୁ ସେ ଯୁଗରେ ଅଶୋକଙ୍କ ଉଦ୍‌ଘୋଷିତ "ହିଂସା ପ୍ରଣୋଦିତ ତରବାରୀର ଜୟ, ଜୟ ନୁହେଁ", ଏ ଯୁଗରେ ଏହାର ପୁନରାବୃତ୍ତି ଘଟେ ଏହି ସ୍ମରଣୀୟ ଦିବସରେ । ଅଧିକନ୍ତୁ ଏହା ମଧ୍ୟ ପ୍ରତିପାଦିତ କରେ ଯେ ସତ୍ୟ, ଅହିଂସା ଓ ତ୍ୟାଗ ଉପରେ ପ୍ରତିଷ୍ଠିତ ଆତ୍ମଶକ୍ତି ତା'ର ନ୍ୟାୟସଙ୍ଗତ ଅଧିକାରରୁ କେବେ ହେଁ ବଞ୍ଚିତ ନୁହେଁ । ପକ୍ଷାନ୍ତରରେ ଏ ପ୍ରକାର ସାଧନାର, ସିଦ୍ଧି ସୁନିଶ୍ଚିତ । ଏହି ସାଧନା ଶ୍ରମଭିତ୍ତିକ ଓ ସମୟସାପେକ୍ଷ ହେଲେ ହେଁ ଏହାର ଲକ୍ଷ୍ୟ ପ୍ରାପ୍ତି ସାଧନାର ଅଙ୍ଗୀଭୂତ ହୋଇଯାଏ । ଉପରୋକ୍ତ ଐତିହାସିକ ଦିବସର ଉଲ୍ଲେଖନୀୟ ଉପଲବ୍ଧି ହେଉଛି, ସତ୍ୟମେବ ଜୟତେ । ଏହା ଯୁଗେ ଯୁଗେ ପୁନଃ ପୁନଃ ପ୍ରତିପାଦିତ ହୋଇଛି । ଏହାର ଭାଷା ଭାରତୀୟ ବା ପ୍ରାଚ୍ୟ ଭୂଖଣ୍ଡର ହୋଇପାରେ, କିନ୍ତୁ ଏହାର ଭାବ ଦେଶ, କାଳ, ପାତ୍ର ନିର୍ବିଶେଷରେ ଅତୁଟ ରହିଛି । ଏହି ସତ୍ୟଟି ବିଶ୍ୱର ବିଚିତ୍ର ବିଭେଦକୁ ଅଭେଦ ସୂତ୍ରରେ ଗୁନ୍ଥି ରଖିଛି । ସେଥିପାଇଁ ସତ୍ୟମ୍ ବଦ, ବିଭିନ୍ନ ଭାଷାରେ ନୀତି ବାକ୍ୟ ହୋଇ ରହିଛି । କାରଣ ସତ୍ୟ ଓ ସତ୍ୟବାଦୀ ଯୁଗେ ଯୁଗେ ବିଜୟ ବିମଣ୍ଡିତ ହୋଇଛି । ତେଣୁ ଗାନ୍ଧିଜୀଙ୍କ ଭାଷାରେ ଈଶ୍ୱରହିଁ ସତ୍ୟ ଓ ପକ୍ଷାନ୍ତରରେ ସତ୍ୟହିଁ ଈଶ୍ୱର । ଈଶ୍ୱର, ହେଉଛନ୍ତି, ସତ୍ୟର ସତ୍ୟ ; ମହାସତ୍ୟ ; ଚିରନ୍ତନ ସତ୍ୟ ; ଅକ୍ଷୟ, ଅନନ୍ତ; ଆର୍ଷ ସତ୍ୟ ।

ପ୍ରଦୋଷ ଓ ପ୍ରଭାତ ପରି ୧୯୪୭, ଅଗଷ୍ଟ ପନ୍ଦର ତାରିଖଟି ହେଉଛି ଏକ ସନ୍ଧିକ୍ଷଣ । ଅନ୍ଧକାର ହଟିଛି ଓ ଆଲୋକ ଉଠି ଆସିଛି । ପରାଧୀନତାର ଶୃଙ୍ଖଳ ଛିନ୍ନ ହୋଇଛି ଓ ସ୍ୱାଭିମାନ ଭିତରେ ଆତ୍ମନିୟନ୍ତ୍ରଣ ତଥା ଆତ୍ମପ୍ରକାଶର ଆଲୋକ ବିଛୁରି ପଡ଼ିଛି । ପର-ମୁଖାପେକ୍ଷୀତାର ଅଚେତା ଅପସରି ଯାଇଛି ଓ ବ୍ୟକ୍ତି ତଥା ସମାଜ ଜୀବନର ଚେତା ଆମ ହୃଦୟରେ ଉଦ୍‌ଭାସିତ ହୋଇଛି । ଜଡ଼ତା, ଉଦାସୀନତା ଓ ଭାଗ୍ୟବାଦୀତା ବଦଳରେ କର୍ମଠତା, ଆଗ୍ରହ ଓ ସଚେଷ୍ଟତାର ଦ୍ୱାର ଉନ୍ମୁକ୍ତ ହୋଇଛି । ୧୯୪୭ ମସିହା ଅଗଷ୍ଟ ମାସ ୧୪ ତାରିଖର ମଧ୍ୟରାତ୍ର । ସବୁକିଛି ନିସ୍ତବ୍ଧ କିନ୍ତୁ ଭଗବତ୍ ଗୀତାର "ଯା ନିଶା ସର୍ବଭୂତା ନାଂ ତସ୍ୟାଂ ଜାଗର୍ତ୍ତି ସଂଯମୀ" ପରି ସ୍ୱାଧୀନ, ସ୍ୱାବଲମ୍ବୀ, ସଂଗ୍ରାମୀ ସୈନିକ ଜାଗ୍ରତ ରହି ପରାଧୀନତାର ପ୍ରତୀକ

"ୟୁନିଅନ୍ ଜାକ୍" ର ଅବତରଣ କରିଛନ୍ତି ଓ ଠିକ୍ ସେହି ସ୍ଥାନରେ ସେତିକିବେଳେ ଉତ୍ତୋଳନ କରାଯାଇଛି ସ୍ୱାଭିମାନ ଓ ସ୍ୱାଧୀନତାର ପ୍ରତୀକ "ତ୍ରିରଙ୍ଗ ପତାକା" । ପୂର୍ବଜଙ୍କ ଜୀବନର ଆଶା, ଅଭିଳାଷ ଓ ଆକାଂକ୍ଷାର ଉନ୍ମେଷ ଘଟିଛି । ବାଳଗଙ୍ଗାଧର ତିଳକଙ୍କ ଘୋଷଣା "ସ୍ୱରାଜ ଆମର ଜନ୍ମଗତ ଅଧିକାର" ସତ୍ୟ ହୋଇଛି । ପଣ୍ଡିତ ନେହରୁ କହିଛନ୍ତି "ଆମମାନଙ୍କ ଇତିହାସ ନୂଆ ଆରମ୍ଭ ହୋଇଛି । ଯେଉଁ ଇତିହାସରେ ଆମ୍ଭେମାନେ ବଞ୍ଚିବା, କାମ କରିବା ଓ ଅନ୍ୟମାନେ ଯାହାକୁ ଲେଖିବେ ।" ଏହି ବହୁ ଆକାଂକ୍ଷିତ ଦିବସର ପ୍ରେରଣା ଦାୟକ ଗୁରୁତ୍ୱ ବୁଝାଇବାକୁ ଯାଇ ପଣ୍ଡିତଜୀ ପୁନଶ୍ଚ ପ୍ରତିପାଦନ କରିଛନ୍ତି, ଭାରତରେ ଆମ ପାଇଁ, ସମଗ୍ର ଏସିଆ ଭୂଖଣ୍ଡ ପାଇଁ ଓ ବିଶ୍ୱପାଇଁ । ଏହା ହେଉଛି ଏକ ଯୁଗାନ୍ତକାରୀ ମୁହୂର୍ତ୍ତ । ଏକ ନବ ନକ୍ଷତ୍ର ଉଇଁ ଉଠୁଛନ୍ତି—ପ୍ରାଚ୍ୟ ଭୂଖଣ୍ଡରେ ସ୍ୱାଧୀନତାର ନକ୍ଷତ୍ର, ଏକ ନୂତନ ଆଶା ରୂପ ନେଇଛି, ଚିର ପୋଷିତ ସ୍ୱପ୍ନ ସତ୍ୟ ହେଉଛି ।

ବସ୍ତୁତଃ ଏହାହିଁ ହେଉଛି ଉନ୍ମାଦନା, ଜାତୀୟତା ଓ ଜାତୀୟ ଜୀବନର ଅଭ୍ୟୁଦୟର ଉନ୍ମାଦନା । ଏହାହିଁ ଧ୍ୱନିତ ହୋଇଛି ଶ୍ରୀ ଅରବିନ୍ଦଙ୍କ କଣ୍ଠରେ, "୧୯୪୭ ମସିହା ଅଗଷ୍ଟ ମାସ ୧୫ ତାରିଖ ସ୍ୱାଧୀନ ଭାରତର ଜନ୍ମ ଦିବସ । ଏହି ଦିବସ ଭାରତବର୍ଷ ପାଇଁ ଏକ ପୁରାତନ ଯୁଗର ଅବସାନ ଓ ଏକ ନବୀନ ଯୁଗର ଅଭ୍ୟୁତ୍ଥାନର ସୀମା ନିର୍ଦ୍ଧାରଣ କରିଛି । ବିଶ୍ୱରେ ମାନବ ସମାଜର ରାଜନୈତିକ, ସାମାଜିକ, ସାଂସ୍କୃତିକ ଓ ଆଧ୍ୟାତ୍ମିକ ଭବିଷ୍ୟତ ନିର୍ମାଣରେ ଏହି ଯେଉଁ ନୂତନ ଯୁଗ ଆସିଛି, ତାହା ମଧ୍ୟରେ ଏହି ଦିବସର ଗୁରୁତ୍ୱ ଏକ ସ୍ୱାଧୀନ ଜାତି ଭାବେ ଆମେ ନିଜ ଜୀବନ ଓ କର୍ମ ଦ୍ୱାରା ବଜାୟ ରଖି ପାରିବା ।" ତେଣୁ ତାଙ୍କର ସ୍ୱପ୍ନ ହେଉଛି (୧) ଏକ ବୈପ୍ଳବିକ ଆନ୍ଦୋଳନ, ଯାହାଦ୍ୱାରା ଏକ ଅଖଣ୍ଡ ଓ ସ୍ୱାଧୀନ ଭାରତ ଆତ୍ମପ୍ରକାଶ କରିବ, (୨) ଏସିଆର ରାଷ୍ଟ୍ରମାନଙ୍କର ପୁନରୁତ୍ଥାନ ତଥା ସ୍ୱାଧୀନତା ଏବଂ ମାନବ ସଭ୍ୟତାର ବିକାଶରେ ମହାନ୍ ଏସିଆର ଅଂଶ ଗ୍ରହଣ (୩) ମାନବ ସମାଜର ବାହ୍ୟ ଜୀବନକୁ ଅଧିକ ସୁନ୍ଦର, ଉଜ୍ଜ୍ୱଳ ଓ ଆଦର୍ଶ କରିବା ପାଇଁ ଜାତିସଂଘ ପ୍ରତିଷ୍ଠା (୪) ବିଶ୍ୱକୁ ଭାରତର ଆଧ୍ୟାତ୍ମିକ ଦାନ ଓ (୫) ବିବର୍ତ୍ତନର ଧାରାରେ ଏପରି ଏକ ପଦକ୍ଷେପ ନେବା ଯାହା ମନୁଷ୍ୟକୁ ଏକ ଉଚ୍ଚତର ଓ ବିଶାଳତର ଚେତନାକୁ ଉନ୍ନୀତ କରିବ ଏବଂ ସେହିସବୁ ସମସ୍ୟାର ସମାଧାନ ଆଣିବ, ଯେଉଁ ସମସ୍ୟା ସକଳ ମନୁଷ୍ୟକୁ ବ୍ୟସ୍ତ ଓ ବିଚଳିତ କରିଛି, ଯେହେତୁ ସେ ବ୍ୟକ୍ତିଗତ ପୂର୍ଣ୍ଣତା ଓ ସାମାଜିକ ପୂର୍ଣ୍ଣତା କଥା ଚିନ୍ତା କରିଛି ଓ ସ୍ୱପ୍ନ ଦେଖିଛି । ଏସବୁ ସ୍ୱପ୍ନ ସଫଳ ହୋଇଛି କି ? ଏଥିପାଇଁ ଆମର ପନ୍ଥା ଓ କାର୍ଯ୍ୟ କଅଣ ?

ସେ ବେଳର ପ୍ରତିଶ୍ରୁତି ଓ ଏଇ ବେଳର ପ୍ରତ୍ୟକ୍ଷୀଭୂତ ଅଭିଜ୍ଞତା ଯେ ଅଗଷ୍ଟ ପନ୍ଦର ସମ୍ଭାବନାର ସଙ୍କେତ ଜାଣି ଦେଇଛି । ଦିହୁଡ଼ି ଜାଳି ଦେଶକୁ ବିଶ୍ୱ ପୃଷ୍ଠାରେ ଉଦ୍ଭାସିତ କରିବା ଓ ବିଶ୍ୱକୁ ଆଲୋକିତ କରିବା—ଆମର କର୍ତ୍ତବ୍ୟ । କିନ୍ତୁ ଏହା ସ୍ମରଣ କରିବାର କଥା ଯେ ସମ୍ଭାବନାର ପଶ୍ଚାତ୍ ଭାଗରେ ରହିଛି ସାଧନା । ବ୍ୟକ୍ତି ଓ ଜାତିର ଜୀବନରେ ସଂଗ୍ରାମ ଓ ସାଧନା ଯୋଗୁଁ ଆମେ ସମ୍ଭାବନାର ଅଧିକାରୀ ହେଉଁ । ଉଦାହରଣ ସ୍ୱରୂପ ଯୌବନ ହେଉଛି ସମ୍ଭାବନାର ପୂର୍ଣ୍ଣ ସମୟ ଓ ସେଥିପାଇଁ ବାଲ୍ୟ ଓ କିଶୋର ଜୀବନର ସାଧନା ହେଉଛି ସୋପାନ । ସେଥିପାଇଁ ଅଗଷ୍ଟ ପନ୍ଦରକୁ ସଂଗ୍ରାମର ଚରମ ସାର୍ଥକତା ଓ ସମ୍ଭାବନା ଉନ୍ମେଷର ମିଳନ ପୀଠ ବୋଲି ଆଖ୍ୟାୟିତ କରାଯାଇ ପାରେ । ଦ୍ୱିତୀୟତଃ ସମ୍ଭାବନାର ଆଗମନ ବ୍ୟକ୍ତି ହେଉ ବା ଜାତି ହେଉ, ଯେଉଁଠି ଯେତେ ଆକସ୍ମିକ ହୋଇଛି ସେଠି ଏହାର ଅପସାରଣ ସେତେ ଅପ୍ରତ୍ୟାଶିତ ହୋଇଛି । ସମ୍ଭାବନାର ସ୍ଥାୟିତ୍ୱ କ୍ଷଣିକ ହୋଇଛି । ଫଳରେ ଏହା ପୁଷ୍ପିତ ଓ ଋଦ୍ଧିମନ୍ତ ହୋଇପାରି ନାହିଁ । ସନ୍ତାନ ଭାବରେ ସମ୍ଭାବନା ଅଧିକାରୀ ଜନନୀଙ୍କୁ କଠୋର ଜଠର ଯନ୍ତ୍ରଣା ଭୋଗ କରିବାକୁ ପଡ଼ିଥାଏ । ଅତଏବ ଏହି ଦୁଇ ଦୃଷ୍ଟିରୁ ବିଚାର କରିବାକୁ ଗଲେ ଆମକୁ ୧୯୪୭ ମସିହା ଅଗଷ୍ଟ ପନ୍ଦର ତାରିଖର ପୂର୍ବବର୍ତ୍ତୀ ସ୍ୱାଧୀନତା ସଂଗ୍ରାମର ସମୟ ଓ ଇତିହାସ ଅଧ୍ୟୟନ କରିବାକୁ ପଡ଼ିବ । ୧୯୪୭ ଅଗଷ୍ଟ ପନ୍ଦରର ପ୍ରଭାତ ପୁଲକ ପାଇଁ ଚଉଦର ରାତ୍ରି ପ୍ରତ୍ୟେକ ଭାରତୀୟଙ୍କ ମନରେ କିପରି ଆଶା ନିରାଶା ମଧ୍ୟରେ ଘଣ୍ଟାର ପେଣ୍ଡୁଲମ୍ ଦୋଦୁଲ୍ୟମାନ ହୋଇଥିବ, ତାହା ଅନୁଭବ କରିବାକୁ ହେବ । ଏହି ସଂଗ୍ରାମର ଅନୁଭୂତି ଯେତେ ତୀବ୍ର ହେବ, ସଂଗ୍ରାମ ପ୍ରସୂତ ସମ୍ଭାବନାକୁ ସୁଫଳାୟନ ଦିଗରେ କାର୍ଯ୍ୟକାରୀ କରିବା ପାଇଁ ସାମର୍ଥ୍ୟ ଓ ଶକ୍ତିର ସଂଗ୍ରହ କରାଯାଇ ପାରିବ ।

ଏହି ଦୃଷ୍ଟିରୁ ଆମ ସ୍ୱାଧୀନତା ସଂଗ୍ରାମର କେତୋଟି ଉଲ୍ଲେଖନୀୟ ଦିଗ ବିଷୟରେ ବିଚାରକଲେ ସର୍ବାଦୌ ସଂଗ୍ରାମର ପ୍ରକୃତି କଥା ମନକୁ ଆସେ । ଏହା ଏକ ଅହିଂସା ଲଢ଼ାଇ । ଏହି ଯୁଦ୍ଧରେ ରକ୍ତପାତନାହିଁ ଓ ଅସ୍ତ୍ରଶସ୍ତ୍ରର କାରବାର ନାହିଁ । ପ୍ରବଳ ପରାକ୍ରମୀ ବ୍ରିଟିଶ୍ ସାମ୍ରାଜ୍ୟବାଦ ବିରୁଦ୍ଧରେ ରଣ କୌଶଳ ଭାବରେ ସତ୍ୟ ଓ ଅହିଂସା ଆଧାରିତ ସତ୍ୟାଗ୍ରହକୁ ଗ୍ରହଣ କରାଯାଇଥିଲା । ଏହା ବିଶ୍ୱ ସ୍ୱାଧୀନତା ସଂଗ୍ରାମ ଇତିହାସ ଓ ଅନନ୍ୟ ସାଧାରଣ ଏବଂ ଆଜି ଜାତୀୟ ତଥା ଆନ୍ତର୍ଜାତିକ ଦ୍ୱନ୍ଦ୍ୱର ସମାଧାନ ପାଇଁ ସ୍ଥାୟୀ ପ୍ରଣାଳୀ ଭାବରେ ଗୃହୀତ । ସତ୍ୟାଗ୍ରହୀ ସର୍ବଦା ଶାନ୍ତି ଓ ସତ୍ୟ ଆଚରଣକରି କୌଣସି ପରିଣତି ପ୍ରତି ଭ୍ରୂକ୍ଷେପ ନକରି ଅନ୍ୟାୟ ନିକଟରେ ମୁଣ୍ଡ ନୁଆଁଇବେ ନାହିଁ । ପାପ ବିରୁଦ୍ଧରେ ସଂଗ୍ରାମ କରି ପାପୀକୁ ସ୍ନେହ କରିବେ । ଘୃଣାର ସ୍ଥାନ ସତ୍ୟାଗ୍ରହୀର ଜୀବନଜାତକରେ ନାହିଁ । ଗାନ୍ଧିଙ୍କ ଦୃଷ୍ଟିରେ ଅହିଂସା ଦୁର୍ବଳ ଓ କାପୁରୁଷର ଅସ୍ତ୍ର ନୁହେଁ ବରଂ କେବଳ ବଳବାନ ଓ ସାହସୀର ଆୟୁଧ । ଗାନ୍ଧିଙ୍କ ନେତୃତ୍ୱରେ ପରିଚାଳିତ ଦୀର୍ଘ ୨୭ବର୍ଷର ସଂଗ୍ରାମରେ ଏହାହିଁ ଥିଲା ବୈଶିଷ୍ଟ୍ୟ ।

୧୮୮୫ ମସିହାରେ ସଂଗଠିତ ହୁଏ ଭାରତୀୟ ଜାତୀୟ କଂଗ୍ରେସ । ଏହା ସ୍ୱାଧୀନତା ସଂଗ୍ରାମରେ ଏକ ଶତାବ୍ଦୀରୁ ଏକ ଦଶନ୍ଧି କମ୍ ସମୟରେ ଅହିଂସ ବିପ୍ଳବ ନିରବଚ୍ଛିନ୍ନ ଭାବରେକରି ଆସିଛି । କଂଗ୍ରେସର ଉନ୍ମେଷ କାଳରେ କେତେକ ଉଚ୍ଚ ଶିକ୍ଷିତ ଦୂରଦ୍ରଷ୍ଟା ବୁଦ୍ଧିଜୀବୀଙ୍କ ପ୍ରଚେଷ୍ଟାରେ ବ୍ରିଟିଶ ଶାସନ ଭାରତୀୟମାନଙ୍କ ବିରୁଦ୍ଧରେ ଯେଉଁ ଅନ୍ୟାୟ, ଅତ୍ୟାଚାର ଓ ଅବିଚାର କରୁଥିଲା ତା'ବିରୁଦ୍ଧରେ ସ୍ୱର ଉତ୍ତୋଳନ କରା-ଯାଇଥିଲା । ସେମାନଙ୍କର କୌଣସି ସ୍ୱାର୍ଥ ନଥିଲା ବରଂ ସେମାନେ ନିଜର ପ୍ରାଣଦାନ କରିବାକୁ ପ୍ରସ୍ତୁତ ଥିଲେ । ତେଣୁ ଭାରତୀୟ ଜାତୀୟ କଂଗ୍ରେସ ପଛରେ ରହିଛି ପ୍ରାୟ ଏକ ଶତାବ୍ଦୀର ନୈତିକ ଶୃଙ୍ଖଳା, ଆତ୍ମତ୍ୟାଗ ଓ ବଳିଦାନ । ଏହା ସମଗ୍ର ପୃଥିବୀରେ ବିରଳ । "ଯେଉଁଠି ତ୍ୟାଗ, ଆତ୍ମଦାନ ବଳିଦାନ ଅଛି, ସେଠି ମୃତ୍ୟୁ ନାହିଁ, ମୃତ୍ୟୁର ଭୟ ବି ନାହିଁ ।"

ଆହୁରି ମଧ୍ୟ ସାଧୀନତା ଆନ୍ଦୋଳନର ଇତିହାସରେ ଏହା କେବେହେଁ ଏକ ବ୍ୟକ୍ତିକେନ୍ଦ୍ରିକ ଉଦ୍ୟମ ହୋଇ ନାହିଁ ବରଂ ସମୟର ସ୍ରୋତରେ ଏହା କ୍ରମେ ବିଶେଷକରି ମହାତ୍ମା ଗାନ୍ଧିଙ୍କ ଆଧ୍ୟାତ୍ମିକ ନେତୃତ୍ୱରେ ଏକ ଗଣ ଆନ୍ଦୋଳନର ରୂପ ନେଇଛି । ୧୯୨୧ ମସିହାରେ ସର୍ବସାଧାରଣ ଆଇନ୍ ଅମାନ୍ୟ ଅଭିଯାନ ଆରମ୍ଭ କରାଯାଇଛି । ସମଗ୍ର ଭାରତକୁ ଅସହଯୋଗର ଡ଼ାକରା ଦିଆଯାଇଛି । ଛାତ୍ର, ଯୁବକ ଓ ସାଧାରଣ ଲୋକ ସ୍କୁଲ କଲେଜ, ବୃତ୍ତି ବ୍ୟବସାୟ ଛାଡ଼ି ଶହଶହ ସଂଖ୍ୟାରେ ଝାସ ଦେଇଛନ୍ତି । ଭାଷା, ଜାତି, ଧର୍ମ, ଧନ, ଗ୍ରାମ, ସହର ଆଦି ନିର୍ବିଶେଷରେ ସବୁଶ୍ରେଣୀର ନରନାରୀ ପ୍ରତ୍ୟକ୍ଷ ବା ପରୋକ୍ଷରେ ସ୍ୱେଚ୍ଛାକୃତ ସମର୍ଥନ ଯଥାଶକ୍ତି ଉଜାଡ଼ି ଦେଇଛନ୍ତି । ଏହି ନୀରବ ଅହିଂସା ବିପ୍ଳବର କୃଷକ, ଶ୍ରମିକ, ଦରିଦ୍ରତମ ଲୋକ ଯୋଗଦେବାରୁ ବିପ୍ଳବର ବନ୍ୟା ସମଗ୍ର ଦେଶରେ ମାଡ଼ିଗଲା ।

"ବେଇନ ଅପେକ୍ଷା କଲମ ଯେ ଅଧିକ ଶକ୍ତିଶାଳୀ"— ଏହା ପ୍ରମାଣିତ ହେଲା ଏହି ବିପ୍ଳବର ବହ୍ନିକୁ ପ୍ରତ୍ୟେକ ହୃଦୟରେ ଜାଳି ଗଣଚେତନା ସୃଷ୍ଟି କରାଗଲା । ତିଳକ, ପ୍ରେମଚନ୍ଦ, ବଙ୍କିମଚନ୍ଦ୍ର, ଗୋପବନ୍ଧୁ ପ୍ରମୁଖ ସ୍ୱଦେଶବତ୍ସଳ ଜାତୀୟ ମନୀଷୀଗଣଙ୍କ ଦୃଷ୍ଟାନ୍ତ ସ୍ମରଣୀୟ । ଶିବାଜୀଙ୍କ ଉତ୍ସାହ ବାଣୀପରି କବିତା ବିଭିନ୍ନ ଭାଷାରେ ଭାରତର ପ୍ରତ୍ୟେକ କୋଣରେ ରଚନା କରାଯାଇ ପ୍ରତ୍ୟକ୍ଷ ବା ପରୋକ୍ଷ ଇନ୍ଧନ ଯୋଗାଇଦେଲା ।

ଆମ ଦେଶର ପରିପ୍ରେକ୍ଷୀରେ ସ୍ୱାଧୀନତା ସଂଗ୍ରାମର ଉଦ୍ଦେଶ୍ୟ ଓ ଉପାୟ ଦୃଷ୍ଟିରୁ ସ୍ୱାତନ୍ତ୍ର୍ୟ ଓ ଗୁରୁତ୍ୱ ରହିଛି । ରାଜନୈତିକ ସାଧୀନତା ଯେ ଅର୍ଥନୈତିକ ଓ ସାମାଜିକ ସ୍ୱାଧୀନତାର ଦ୍ୱାର ଉନ୍ମୁକ୍ତ କରିଦେବ, ସେଥିପାଇଁ ଏହି ଆନ୍ଦୋଳନର ଅନ୍ୟ ଏକ ଦିଗ ଭାବରେ ପରୀକ୍ଷା ନିରୀକ୍ଷା ଓ ବିଚାର କରାଯାଇଥିଲା । ଶୋଷଣ, ଜଞ୍ଜାଳ, ବାଦ, ଛନ୍ଦ, ସଂକୀର୍ଣ୍ଣତା, କୁସଂସ୍କାର ଆଦିରୁ ଆମେ ରକ୍ଷାପାଇ ବିମୁକ୍ତ ମାନବ ହେବା । ଏସବୁ ସହିତ ଭାରତରେ ତଥା ବିଶ୍ୱରେ କ୍ଷିପ୍ରଗତିରେ ତେଜି ଉଠୁଥିବା ଫାଶିବାଦ, ସାମ୍ରାଜ୍ୟବାଦ ଓ ଉପନିବେଶବାଦର ଏକ ବିପରୀତ ପ୍ରତିଜ୍ଞା (ଆଣ୍ଟିଥେସିସ୍) ଭାବରେ 'ଆମ ସଂଗ୍ରାମକୁ ଶାଣିତ କରାଯାଇଥିଲା ।

ଆହୁରି ମଧ୍ୟ ଏହା ଉଲ୍ଲେଖନୀୟ ଯେ ମୁକ୍ତିର ଚ୍ଛାୟା ସଂକ୍ରାମକ । ଆଫ୍ରିକା ଓ ଏସିଆ ଭୂଖଣ୍ଡର ଜନଜାଗରଣର ଲକ୍ଷଣିକ ଭାବରେ ଉକ୍ତ ପରିପ୍ରେକ୍ଷୀରେ ଏହି ଯୁଗାନ୍ତକାରୀ ଆନ୍ଦୋଳନର ଭୂମିକାକୁ ବିଚାର କରାଯାଇପାରେ । ଏହି ଐତିହାସିକ ସଂଗ୍ରାମରେ ଆନ୍ତଃଦେଶୀୟ ସାଂସ୍କୃତିକ ପ୍ରଭାବ ସ୍ପଷ୍ଟ ପରିଲକ୍ଷିତ ହୁଏ । ଫରାସୀ ରାଷ୍ଟ୍ର ବିପ୍ଳବ, ଆମେରିକାର ମୁକ୍ତିସଂଗ୍ରାମ, ଇଟାଲିର ସଂମିଶ୍ରଣ ଆଦିର ପଦଧ୍ୱନି ଆମ ଜନନାୟକଙ୍କ କର୍ଣ୍ଣଗୋଚର ହୋଇଛି । ଋଷବିପ୍ଳବ (୧୯୧୭) ଫଳରେ ଯେଉଁ ଆତ୍ମମୁକ୍ତିର ଅଫୁରନ୍ତ ଉଦ୍‌ଗୀରଣ ଘଟିଛି, ତାହାର ପ୍ରତିଧ୍ୱନି ଆମ ସଂଗ୍ରାମୀ ବାୟୁମଣ୍ଡଳରେ ବ୍ୟାପୀ-ଯାଇଛି । ମୋଟାମୋଟିଭାବରେ ଦେଖିବାକୁ ଗଲେ ବିଶ୍ୱ ପରିପ୍ରେକ୍ଷୀରେ ଯୁଗଚେତନାର ପ୍ରଭାବ ପଡ଼ିଛି; କିନ୍ତୁ ଆମେ ଏହାକୁ ଆମ ନିଜ ପ୍ରତିଭା ଓ ପରଂପରାରେ ରୂପାୟିତ କରିଛୁଁ । ଏଥିରେ ମହାତ୍ମା ଗାନ୍ଧିଙ୍କର ନିଜସ୍ୱ ଚିନ୍ତା ନିହିତ ରହିଛି ।

ଚିନ୍ତା ଓ କାର୍ଯ୍ୟ ମଧ୍ୟରେ ସମନ୍ୱୟ ହେଉଛି ସତ୍ୟାଶ୍ରୟୀ ଅହିଂସ ସଂଗ୍ରାମର ସ୍ୱଧର୍ମ । ଏହାହିଁ ଗାନ୍ଧିଜୀଙ୍କର ବଳିଷ୍ଠ ଚିନ୍ତା ଓ ସାହସିକ ପ୍ରୟୋଗ । ତଦ୍ୱାରା ସେ ନିରୀହ ଜନତାଙ୍କ ପ୍ରାଣସଂଚାର କରିଥିଲେ ଓ ମୌଳିକ ପରିବର୍ତ୍ତନ ମନୋଭାବରେ କରାଇଥିଲେ । ଧାର୍ମିକ, ଜାତିସଂକ୍ରାନ୍ତ ଓ ଭାଷାଗତ ବୁଝାମଣା ସୃଷ୍ଟିକରି ଜାତୀୟ ଏକତାର ମନ୍ତ୍ରନେଲେ । ଏଥିପାଇଁ ଆତ୍ମଶୁଦ୍ଧି, ଚରିତ୍ରବତ୍ତା ଓ ସଂଯମକୁ ନିଜ ଜୀବନଧାରାର ଅଙ୍ଗୀଭୂତକରି ସମଗ୍ର ଦେଶପାଇଁ ଏହି ଆଦର୍ଶକୁ ସ୍ୱାଧୀନତା ସାଧନର ଓ ତତ୍‌ପରବର୍ତ୍ତୀ କାଳରେ ଦେଶ ନିର୍ମାଣର ଆୟୁଧ କଲେ ।

୧୯୯୭ ମସିହା ବେଳକୁ ୧୯୪୭ ଅଗଷ୍ଟ ପନ୍ଦରର ପଞ୍ଚାଶତମ ଜୟନ୍ତୀ ପାଳନ କରାଯିବ । ସେତେବେଳେ ଯାହା ଶପଥ ଓ ସମ୍ଭାବନା ଥିଲା ଓ ଯାହାର ପଦଧ୍ୱନି ପ୍ରତି ମୁହୂର୍ତ୍ତ ଆମେ ଶୁଣିବାର କଥା ତଥା ସ୍ୱାଧୀନ ଦେଶର ନାଗରିକକୁ କାୟ-ମନୋବାକ୍ୟରେ ବ୍ୟକ୍ତି ଏବଂ ସମଷ୍ଟି ସ୍ତରରେ ଜୀବନ-ଯାପନର ଧାରା ହୋଇ ରହିବା ଉଚିତ , ତାହାର ଆତ୍ମ ବିଶ୍ଳେଷଣ ହେବା ଉଚିତ । ହିଂସା ପ୍ରଣୋଦିତ ବିଚ୍ଛିନ୍ନତାବାଦୀ ମନୋଭାବ ତାର ଉତ୍କଟ ରୂପ ପ୍ରକାଶ କରୁଛି । ଅହମିକାଗ୍ରସ୍ତ କ୍ଷମତା ଲିପ୍‌ସା ବ୍ୟକ୍ତି ସ୍ୱାର୍ଥସାଧନରେ ଆୟୁଧ ହେବାକୁ ଲାଗିଛି । ସେଠି ଦେଶ ବଞ୍ଚିବ କିପରି ? ଧନବଳ, ବାହୁବଳ ଓ ଜନବଳକୁ ଆମେ ଜାବୁଡ଼ି ଧରିଛୁଁ । ସେଠି ଦେଶ ବଞ୍ଚିବ କାହିଁ ? ଆତ୍ମବଳ ଓ ଲୋକଶକ୍ତି ପ୍ରତ୍ୟେକ ନାଗରିକଙ୍କର କେତେ ବଢ଼ିଛି ? ଏହା ଭିତରେ ଆମେ ଆମ ଶତ୍ରୁକୁ ଆବିଷ୍କାର କରି ନେଇଛୁଁ ଓ ସେ ହେଉଛନ୍ତି "ଆମେ" । ସବୁକିଛି କରିଦେବାର ଅହମିକା ଜଣେ ବ୍ୟକ୍ତି ବା ମୁଷ୍ଟିମେୟ ଲୋକ କରି ପାରନ୍ତି କି ? ତେବେ ଆମ ସ୍ୱାଧୀନତା ଆନ୍ଦୋଳନ ଏକ ଗଣ କାର୍ଯ୍ୟକ୍ରମ ହେଲା କାହିଁକି ? ପରିବାରରୁ ପାଠଶାଳାରୁ ଓ ପଲ୍ଲୀ ଅଞ୍ଚଳରୁ ଗଣତନ୍ତ୍ର, ସମାଜବାଦ ଓ ଧର୍ମନିରପେକ୍ଷତା ଆରମ୍ଭ କରିବା ଉଚିତ । ସ୍ୱାଧୀନତାର ଉନ୍ମେଷ ପ୍ରତିଟି ହୃଦୟ କନ୍ଦରରୁ ଜନ୍ମିବା ଉଚିତ । ବର୍ତ୍ତମାନ କେତୋଟି ନିର୍ଦ୍ଦିଷ୍ଟ କର୍ମପନ୍ଥାର ସୂଚନା ଦିଆଯାଇପାରେ ।

(୧) ଆତ୍ମତ୍ୟାଗ ଓ ସେବା ମନୋଭାବର ଉଦ୍ରେକ କରାଯିବ । ବାଘାଯତିନ୍, ଭଗତ୍‌ସିଂ, କ୍ଷୁଦିରାମ ପ୍ରଭୃତି ଶହୀଦ୍‌ମାନେ କେଉଁ ଅବସ୍ଥାରେ ଓ କାହିଁକି ଆତ୍ମବଳି ଦେଇ ଅମର ହୋଇଛନ୍ତି ? ଏହାର ଏକ ଜୀବନ୍ତ ଉପସ୍ଥାପନ ଗଣମାଧ୍ୟମ ସାହାଯ୍ୟରେ କରାଯିବ । ସମଗ୍ର ସମାଜରେ ଏହାର ଆଦରକୁ ବୃଦ୍ଧି କରିବା ଦିଗରେ କାର୍ଯ୍ୟ କରାଯିବ ।

(୨) ପକ୍ଷାନ୍ତରରେ ଆତ୍ମକେନ୍ଦ୍ରିକ ଜୀବନ ଆଧୁନିକ ଜଗତରେ ଅନାବଶ୍ୟକ ଓ ଅବାଞ୍ଛନୀୟ । ଏହାର ପରିଣତି ବ୍ୟକ୍ତି, ସମାଜ, ଦେଶ ଓ ବିଶ୍ୱ ପାଇଁ ଉଦ୍‌ବେଗଜନକ—ଏହା ସମସ୍ତେ ହୃଦୟଙ୍ଗମ କରିବା ଉଚିତ । ଗୀତା ଓ ଅନ୍ୟାନ୍ୟ ଧର୍ମଗ୍ରନ୍ଥରୁ ଉଦ୍ଧାର କରାଯାଇ ସମାଜରେ ଚେତନା ସୃଷ୍ଟି କରାଯିବା ସର୍ବଜନହିତେଷିତା—ହେଉଛି ଜୀବନର ସ୍ୱାର୍ଥକତା ।

(୩) ସମସ୍ତ ସାମାଜିକ ଓ ବିକାଶ କାର୍ଯ୍ୟକ୍ରମରେ ଜନଶକ୍ତି ଓ ଜନ ସହଯୋଗ ଉପରେ ଆରୋପ ଗୁରୁତ୍ୱ କରାଯିବ । ଯୋଜନାରେ ଏଥିପ୍ରତି ଦୃଷ୍ଟି ରହିବ ।

(୪) ସ୍ୱାଧୀନତା ସଂଗ୍ରାମରେ ସବୁ ଶ୍ରେଣୀର ଲୋକ ଓତପ୍ରୋତଃ ଜଡ଼ିତ ରହି ଗୋଟିଏ ବଳିଷ୍ଠ ଆବେଗିକ ବାୟୁ-ମଣ୍ଡଳ ସୃଷ୍ଟି କରାଯାଇଥିଲା । ଠିକ୍ ସେହିପରି ବିକାଶର ବନ୍ୟାରେ ସମଗ୍ର ଦେଶ ସମ ଭାଗରେ ଜଡ଼ିତ ରହି ବିକାଶର ସ୍ରୋତ ଅବିରତ ଭାବରେ ସମସ୍ତଙ୍କୁ ସ୍ପର୍ଶ କରିବା ଉଚିତ ।

(୫) ପରିବାର, ଗୋଷ୍ଠୀ, ଦେଶ ତଥା ବିଶ୍ୱର ସମସ୍ୟା ସମାଧାନରେ ଅହିଂସା, ସତ୍ୟ ଓ ପ୍ରେମର ସଫଳ ତଥା ସାବଲୀଳ ପ୍ରୟୋଗ ସମ୍ବନ୍ଧରେ ଗବେଷଣା ଓ ଉଦ୍ୟମ କରାଯିବ ।

(୬) ଯୁବ ଶକ୍ତିକୁ ସାମାଜିକ କଳଙ୍କ ଓ କୁସଂସ୍କାର ବିରୁଦ୍ଧରେ ନୂତନ ମୋଡ଼ ଦେବାକୁ ପଡ଼ିବ ।

(୭) ସମାଜ ସେବକ ଓ ସଂସ୍କାରକମାନଙ୍କୁ ଅଧିକରୁ ଅଧିକ ସ୍ୱୀକୃତି ଦିଆଯିବ । ଆମ୍ଭମାନଙ୍କ ମଧ୍ୟରେ ସାନ, ସାନ ଲୋକ ଲୁଚିଛନ୍ତି ଅଛନ୍ତି କିନ୍ତୁ ସେମାନଙ୍କ ତ୍ୟାଗ, ଆତ୍ମୋତ୍ସର୍ଗ ଓ ପରାର୍ଥପରତା ନିଜ ପରିସର ମଧ୍ୟରେ ପରିବ୍ୟାପ୍ତ । ସେମାନଙ୍କୁ ଚିହ୍ନି ଲୋକଲୋଚନକୁ ଆଣି ପାରିଲେ ସେମାନେ ଶ୍ମଶାନ ତୁଳସୀ ହୋଇ ରହନ୍ତେ ନାହିଁ, ଅଥଚ ପ୍ରତିବେଶୀ-ମାନଙ୍କୁ ପ୍ରେରଣା ଦିଅନ୍ତେ ।

(୮) ଆମ ସମ୍ବିଧାନର ଲକ୍ଷ୍ୟ, ଅର୍ଥାତ୍ ସମାଜବାଦ, ଧର୍ମନିରପେକ୍ଷତା ଓ ଗଣତନ୍ତ୍ର ଅନୁସାରେ ଆମ ପରିବାର, ପାଠଶାଳା, ଗୋଷ୍ଠୀ ଓ ଦେଶକୁ ନିର୍ମାଣ କରିବାର ଉଦ୍ୟମ ଅବ୍ୟାହତ ରହନ୍ତା ।

(୯) ମୂଲ୍ୟବୋଧର କ୍ରମ ଅବକ୍ଷୟ କାହାରିକୁ ଅଜଣା ନୁହେଁ, ବରଂ ଆମ ଭାଷଣ, ପ୍ରବଚନ ଓ କଥୋପକଥନ ବେଶ ରସାଣିତ କରୁଛି । କିନ୍ତୁ ଆମ ଶିକ୍ଷା, ସମାଜ ରଚନା ଯୋଜନା ଆଦି ସର୍ବବିଧ ପ୍ରକଳ୍ପରେ ସବିଶେଷ ଭାବରେ ସ୍ଥାନ ପାଇବା ଉଚିତ ।

(୧୦) ସ୍ୱାଧୀନତା ସଂଗ୍ରାମ ସମୟର ମର୍ମସ୍ପର୍ଶୀ ଓ ରୋମାଞ୍ଚକାରୀ ଲେଖା ସମସ୍ତଙ୍କ ଦୃଷ୍ଟିକୁ ଆସିବା ଉଚିତ । ଶିକ୍ଷାର ଆନୁଷ୍ଠାନିକ୍ ଓ ଅଣଆନୁଷ୍ଠାନିକ ଭୂମିକାରେ ଏସବୁ ଲେଖା ସାବଲୀଳ ହେବ ।

(୧୧) ଜାତୀୟ ପତାକା, ଜାତୀୟ ସଙ୍ଗୀତ ଓ ଜାତୀୟ ସଂକେତ ସମସ୍ତ ଭାରତୀୟଙ୍କୁ ମମତାର ଡୋରିରେ ବାନ୍ଧି ରଖିଛି । ଏହାର ପଛରେ ଅଛି ଯୁଗ-ଯୁଗର ଇତିହାସ, ପ୍ରାଚ୍ୟ ପରମ୍ପରା ଓ ଆତ୍ମତ୍ୟାଗର ମହନୀୟତା । ଏଥିପ୍ରତି ସମ୍ମାନ ଓ ଏହାର ସୁରକ୍ଷା ପାଇଁ କର୍ତ୍ତବ୍ୟନିଷ୍ଠାର ପ୍ରତିଜ୍ଞା ସର୍ବକାଳରେ ପ୍ରକାଶ ପାଇବ । ଏ ଦିଗରେ ଅସ୍ଥିରତା ଓ ସହନଶୀଳତାର ଅଭାବ ଅକ୍ଷମଣୀୟ ।

ପରିଶେଷରେ ମହନୀୟ, ପନ୍ଦରର, ପଦଧ୍ୱନି ଶୁଣୁ ଶୁଣୁ ଗାନ୍ଧିଙ୍କ ଉକ୍ତିକୁ ସ୍ମରଣ କରିବା; "ମୋର-ମୋର ଏଣା କାହିଁକି, ଆମ ସମସ୍ତଙ୍କ ସ୍ୱପ୍ନର ସ୍ୱରାଜରେ ଜାତି କିମ୍ବା ଧର୍ମଗତ ଭେଦଭାବ ରହିବ ନାହିଁ । ଏହା ଶିକ୍ଷିତ କିମ୍ବା ଧନୀ ବ୍ୟକ୍ତିମାନଙ୍କ ଏକଚାଟିଆ ଅଧିକାର ହୋଇ ରହିବ ନାହିଁ । ସ୍ୱରାଜ ସମସ୍ତଙ୍କର । ଏଥିରେ କୃଷକ, ଧନୀ, ନିର୍ଦ୍ଧନ, ଅନ୍ଧ ଓ କୋଟି କୋଟି ଭୋକିଲା ଲୋକଙ୍କ ସ୍ଥାନ ରହିଛି ।"

ଶହୀଦ ନଗର,
ଭୁବନେଶ୍ୱର



ପିଣ୍ଟକାଳିଆ ସେଣ୍ଟ ଜନ୍ସ ଇଂଲିଶ ସ୍କୁଲରେ
ଶିକ୍ଷାମନ୍ତ୍ରୀଙ୍କ ସମ୍ବୋଧନ ..



# ସ୍ୱାଧୀନତା ଆନ୍ଦୋଳନରେ ଭାରତୀୟ ନାରୀ

ଶ୍ରୀ ନୃସିଂହ ପ୍ରସାଦ ଦେବ

ଆମ ଦେଶର ସ୍ୱାଧୀନତା ସଂଗ୍ରାମରେ ନାରୀମାନେ ଯେଉଁ ଚରମ ତ୍ୟାଗ ସ୍ୱୀକାର କରିଛନ୍ତି, ବିଶ୍ୱ ଇତିହାସରେ ତହିର ପଟ୍ଟାନ୍ତର ନାହିଁ । ଏହି ଜାତୀୟ ଆନ୍ଦୋଳନ ଯେତେବେଳେ ସାରା ଦେଶରେ ପରି ବ୍ୟାପ୍ତ ହୋଇ ଏକ ଗଣ ଆନ୍ଦୋଳନ ରୂପ ନେଲା, ସେତେବେଳେ ତତ୍କାଳୀନ ନେତୃବର୍ଗ ନାରୀମାନଙ୍କୁ ଏହି ଆନ୍ଦୋଳନର ପରିସର ମଧ୍ୟକୁ ଆସିବା ପାଇଁ ଆହ୍ୱାନ କରାଇଥିଲେ । ଗାନ୍ଧୀଜୀଙ୍କର ଚିନ୍ତାଧାରା ଓ ଦୂରଦୃଷ୍ଟି ସେ ସମୟରେ ଥିଲା ସ୍ୱତନ୍ତ୍ର ଧରଣର । ଭାରତୀୟ ନାରୀମାନେ ଏହି ଜାତୀୟ ଆନ୍ଦୋଳନରେ ସକ୍ରିୟ ଅଂଶ ଗ୍ରହଣ କଲେ, ଆନ୍ଦୋଳନ ଅତ୍ୟନ୍ତ ଶକ୍ତିଶାଳୀ ହୋଇପାରିବ ବୋଲି ସେ ମତବ୍ୟକ୍ତ କରିଥିଲେ । ଏହା ପୂର୍ବରୁ ଊନବିଂଶ ଶତାବ୍ଦୀର ସମସ୍ତ ସଂସ୍କାରକମାନେ ସ୍ୱାଧୀନ ଶାସନ ସଂପର୍କରେ ଦାବୀ କରି ଆସୁଥିବା ଉତ୍ସେସଙ୍ଗେ ସମାଜରେ ନାରୀମାନଙ୍କର ସ୍ଥିତି ଓ ମର୍ଯ୍ୟଦା ପ୍ରତି ବିଶେଷ ଗୁରୁତ୍ୱ ଦେଉଥିଲେ; କିନ୍ତୁ ପରବର୍ତ୍ତୀ କାଳରେ ଏହା କେବଳ ନାରୀମାନଙ୍କର ବିକାଶ ମଧ୍ୟରେ ସୀମିତ ରହି ନଥିଲା । ସ୍ୱାଧୀନତା ସଂଗ୍ରାମରେ ନାରୀମାନେ ଯେପରି ସକ୍ରିୟ ଅଂଶ ଗ୍ରହଣ କରିବେ, ସେଥିପ୍ରତି ଗାନ୍ଧୀଜୀ ବିଶେଷ ଯତ୍ନଶୀଳ ହୋଇଥିଲେ । ଅସହଯୋଗ ଆନ୍ଦୋଳନ, ଆଇନ୍ ଅମାନ୍ୟ ଆନ୍ଦୋଳନ ଓ ଔପନିବେଶିକ ଶକ୍ତିର ବିଲୟ ପାଇଁ ଗାନ୍ଧୀଜୀ ଯେଉଁ ଆହ୍ୱାନ ଦେଇଥିଲେ, ତାହା ଉଭୟ ନାରୀ ଓ ପୁରୁଷଙ୍କ ପାଇଁ ପ୍ରଯୁଜ୍ୟ ଥିଲା । ଭାରତ ଇତିହାସରେ ପ୍ରଥମ ଥର ପାଇଁ ନାରୀମାନେ ପୁରୁଷଙ୍କ ସହ କାନ୍ଧକୁ କାନ୍ଧ ମିଳାଇ ସ୍ୱାଧୀନତା ପାଇଁ ସଂଗ୍ରାମ ଚଳାଇଥିଲେ ।

୧୯୧୭ ମସିହାରେ ଭାରତର ପ୍ରଥମ ନାରୀ ସଂଗଠନ ଶ୍ରୀମତୀ ଆନିବେସାନ୍ତଙ୍କ ସଭାନେତ୍ରୀତ୍ୱ ନେତୃତ୍ୱରେ ତଥା ଶ୍ରୀମତୀ ମାର୍ଗାରେଟ୍ କଜିନ୍ସଙ୍କ ଦ୍ୱାରା ଆରମ୍ଭ ହୋଇଥିଲା । ଏହି ସଂଗଠନ ଜନସାଧାରଣଙ୍କ ମଧ୍ୟରେ ସ୍ୱାଧୀନତା ପ୍ରାପ୍ତି ପାଇଁ ଗତିଶୀଳ ସ୍ରୋତର ଉଦ୍ରେକ କରାଇଥିଲା । ତେଣୁ ବ୍ରିଟିଶ୍‌ମାନଙ୍କ ଦ୍ୱାରା ଶ୍ରୀମତୀ ଆନିବେସାନ୍ତ କାରାଦଣ୍ଡ ଭୋଗିଥିଲେ । ଏହା ଫଳରେ ଭାରତୀୟ ନାରୀମାନେ ସ୍ୱାଧୀନତା ଆନ୍ଦୋଳନ ପାଇଁ ଅଧିକ ପ୍ରେରଣା ଲାଭ କରିଥିଲେ । ସେମାନଙ୍କ ମଧ୍ୟରେ କୌଣସି ସାଂପ୍ରଦାୟିକତାର ସ୍ୱର ନଥିଲା । ଏହି ସମୟର ମହାନ୍ ନାରୀ ନେତ୍ରୀମାନଙ୍କ ମଧ୍ୟରେ ସରୋଜିନୀ ନାଇଡୁ, ମାର୍ଗାରେଟ୍ କଜିନ୍‌ସ, ଆନିବେସାନ୍ତ, ବେଗମ୍ ହଜରତ୍ ମୋହାନ, କଥୟନୀ ଜାହାଙ୍ଗୀର ପେଟିଟ୍, ହରାବାଈ ଟାଟା, ହନାନ୍ ଆଞ୍ଜେଲୋ, ଶ୍ରୀମତୀ ସଦାଶିବ ଆୟେର ପ୍ରଭୃତି ଅନ୍ୟତମ ।

ଗାନ୍ଧୀଜୀଙ୍କ ଆନ୍ଦୋଳନର ପ୍ରଭାବ ବିଶ୍ୱ ଇତିହାସରେ ଏକ ଅଦ୍ୱିତୀ ଘଟଣା । ଏହି ଆନ୍ଦୋଳନ ଫଳରେ ନାରୀମାନେ ଘର କୋଣ ଗୋଡ଼କାଢ଼ି ଦାଣ୍ଡକୁ ବାହାରି ଆସିଥିଲେ ଏବଂ ପୁରୁଷମାନଙ୍କ ସହ ପାଦ ପାଦ ମିଳାଇ ସ୍ୱାଧୀନତା ପାଇଁ ଚାଲିଥିବା ଅହିଂସ ଆନ୍ଦୋଳନରେ ଯୋ ଦେଇଥିଲେ । ସେତେବେଳେ ସେମାନେ ସମାଜ ସେବାକୁ ଜୀବନ ବ୍ରତ ରୂପେ ଗ୍ରହଣ କରିଥିଲେ । ଗୁଳିଗୁଳାରେ ଆହତ ସତ୍ୟାଗ୍ରହୀ ସେବାଶୁଶ୍ରୂଷା କରିବା ସଙ୍ଗେ ସଙ୍ଗେ ଘୋଷେଇ କରିବା, ପାଣି ସଂଗ୍ର କରିବା, ଏପରିକି ସତ୍ୟାଗ୍ରହୀଙ୍କ ପାଇଁ ନିଜର ଅଳଙ୍କାରମାନ ମଧ୍ୟ ଦା କରିଥିଲେ । ଐତିହାସିକ ଦାଣ୍ଡିଯାତ୍ରା, ଲବଣ ସତ୍ୟାଗ୍ରହ, ବିଦେଶୀ ଜିନି ବର୍ଜନ, ଟ ନ ଅମାନ୍ୟ ଆନ୍ଦୋଳନ, ବିଦେଶୀ ମଦ ବିରୋଧ ଅଭିଯାନରେ ଅଂଶ ଗ୍ରହଣ କରି କାରାବରଣ କରିଥିଲେ । ମହାତ୍ମ ଗାନ୍ଧୀଙ୍କ ଅହିଂସ ଆନ୍ଦୋଳନ ଓ ଖଦୀ ବସ୍ତ୍ର ବ୍ୟବହାର ର ବାର୍ତ୍ତ ଦେଶବାସୀଙ୍କ ମଧ୍ୟରେ ପ୍ରସ୍ତୁତ କରି ହସି ହସି ବନ୍ଧୁକ ଆଗରେ ନିଜ ପ୍ରାଣପାତ କରିଥିଲେ । ତେଣୁ, ଗାନ୍ଧୀଜୀ ୧୯୨୧ ମସିହାରେ ତାଙ୍କ "ୟଙ୍ଗ ଇଣ୍ଡିଆ" ପତ୍ରିକାରେ ଲେଖିଥିଲେ, "I expect great things from you (women). I expect the women do their share in the struggle. . . . Our women can . . . without diff

ଏହି ସମୟରେ ନାରୀମାନଙ୍କର କାର୍ଯ୍ୟକଳାପରେ ସନ୍ତୋଷ ପ୍ରକାଶ କରି ୧୯୨୫ ମସିହାରେ ସେ ଲେଖିଥିଲେ, "To call women the weaker sex is libel, . . . If non-violence is the law of our being, the future is with women." . . . .

ସତ୍ୟାଗ୍ରହରେ ଯୋଗଦେବା ପାଇଁ ଗାନ୍ଧୀଜୀ ଯେଉଁ ଆହ୍ୱାନ ଦେଇଥିଲେ ସେଥିରେ ଯେ କେବଳ ଶିକ୍ଷିତା ନାରୀମାନେ ଯୋଗ ଦେଇଥିଲେ, ତାହା ନୁହେଁ ବରଂ ଗ୍ରାମାଞ୍ଚଳର ନାରୀମାନେ ମଧ୍ୟ ଯୋଗ ଦେଇଥିଲେ । ୧୯୩୦ ମସିହା ଲବଣ ସତ୍ୟାଗ୍ରହରେ ନାରୀମାନେ ଯେଉଁ ଗୁରୁତ୍ୱ ପୂର୍ଣ୍ଣ

ଭୂମିକା ଗ୍ରହଣ କରିଥିଲେ, ତାହା ଅତୀବ ପ୍ରଶଂସନୀୟ । ଅର୍ଥନୈତିକ ସ୍ୱାଧୀନତା ଆଣିବା ନିମନ୍ତେ ଖଦୀ ବୁଣିବା ଓ କୁଟୀର ଶିଳ୍ପର ବିକାଶ ଘଟାଇବା ଭଳି ଯେଉଁ କାର୍ଯ୍ୟଗୁଡ଼ିକ ଗାନ୍ଧୀଙ୍କର ଗଠନମୂଳକ କାର୍ଯ୍ୟକ୍ରମର ଅଂଶ ଥିଲା, ସେଥିରେ ଅନ୍ୟମାନଙ୍କ ଅପେକ୍ଷା ଗ୍ରାମାଞ୍ଚଳର ମହିଳାମାନେ ବିଶେଷ ଭୂମିକା ଗ୍ରହଣ କରିଥିଲେ ।

୧୯୩୦ ମସିହା ଆଇନ୍ ଅମାନ୍ୟ ଆନ୍ଦୋଳନର ଲବଣ ସତ୍ୟାଗ୍ରହରେ ଭାରତୀୟ ନାରୀମାନେ ସକ୍ରିୟ ଅଂଶ ଗ୍ରହଣ କରିଥିଲେ । ପ୍ରକୃତ ପକ୍ଷେ, ଅପ୍ରେଲ ୬ ତାରିଖ ଦିନ ଏହି ଆନ୍ଦୋଳନରେ ଯୋଗ ଦେବା ପାଇଁ ଅଳ୍ପ କେତେଜଣ ମହିଳାଙ୍କୁ ଠିକ୍ କରାଯାଇଥିଲା । କିନ୍ତୁ ଆଶ୍ଚର୍ଯ୍ୟର କଥା, ହଜାର ହଜାର ମହିଳା ଲୁଣମରା ଆଇନ ଭଙ୍ଗ କରିବା ପାଇଁ ସମୁଦ୍ର କୂଳକୁ ଧାଇଁଥିଲେ । ପ୍ରଥମ ଥର ପାଇଁ ସେମାନେ ପୁରୁଣା ମହିଳା ସମାଜର ଶୃଙ୍ଖଳା ଛିନ୍ନ କରି ଦେଇ ଏହି ଆନ୍ଦୋଳନକୁ ଏକ ମହାକାବ୍ୟର ରୂପ ଦେଇଥିଲେ ।

ମହାତ୍ମା ଗାନ୍ଧୀ ଗିରଫ୍ ହେବା ପରେ ଧରାସନ ବାଲୁକା ପ୍ରାନ୍ତରରେ ଜଣେ ନାରୀ ଲବଣ ସତ୍ୟାଗ୍ରହର ନେତୃତ୍ୱ ନେଇଥିଲେ । ସେଠାରେ ପୁଲିସ ସତ୍ୟାଗ୍ରହୀମାନଙ୍କୁ ଭୀଷଣ ପ୍ରହାର କରିଥିଲେ । ଉପରେ ପ୍ରବଳ ଖରା ଓ ତଳେ ତତଲା ବାଲି ସାଙ୍ଗକୁ ଭୀଷଣ ଶୋଷରେ ସେମାନେ ଘଣ୍ଟା ଘଣ୍ଟା ଧରି ବସି ରହିଥିଲେ । ପୁଲିସ ସେହି ଭିତରେ ପାଣି ଶଗଡ ବୋହି ନେଉଥିଲେ ମଧ୍ୟ ଶୋଷିଲା ସତ୍ୟାଗ୍ରହୀଙ୍କୁ ଟୋପାଏ ପାଣି ମଧ୍ୟ ଦିଆଯାଇ ନଥିଲା ବରଂ ସମସ୍ତଙ୍କୁ ଗିରଫ କରାଗଲା । କିନ୍ତୁ ତା'ପରଦିନ ସକାଳୁ ନୂଆ ସତ୍ୟାଗ୍ରହୀମାନେ ସେଠାରେ ସତ୍ୟାଗ୍ରହ ଚାଲୁ ରଖିଥିଲେ । ଏହିପରି ସପ୍ତାହ ସପ୍ତାହ ବ୍ୟାପୀ ସତ୍ୟାଗ୍ରହ ଚାଲିଲା । ଧରାସନ ଏକ ପବିତ୍ର ଯୁଦ୍ଧ ଭୂଇଁରେ ପରିଣତ ହେଲା ।

ଏହି ସମୟରେ ମହିଳାମାନେ ପ୍ରାୟ ପ୍ରତ୍ୟେକ କାର୍ଯ୍ୟକ୍ରମରେ ଯୋଗ ଦେଉଥିଲେ । ସେମାନେ ସକାଳୁ ଶୋଭାଯାତ୍ରାରେ ବାହାରି ଗୀତ ଗାଇ ଗାଇ ସମସ୍ତଙ୍କ ଭିତରେ ସଂଗ୍ରାମର ବାର୍ତ୍ତା ପ୍ରଚାର କରୁଥିଲେ । ଏପରିକି ସଂଗ୍ରାମ ପରିଷଦର ଦୈନନ୍ଦିନ କାର୍ଯ୍ୟ ନାରୀମାନଙ୍କ ନିର୍ଦ୍ଦେଶରେ ପରିଚାଳିତ ହେଉଥିଲା । ଏହି ସମୟରେ ଓଡ଼ିଶାରେ ଲବଣ ସତ୍ୟାଗ୍ରହ ପାଇଁ ଜନସାଧାରଣଙ୍କ ମନରେ ବେଶୀ ଉନ୍ମାଦନା, ଦେଶଜାଗରଣ ଆଣିବା ସକାଶେ ଶ୍ରୀ ବୈକୁଣ୍ଠନାଥ ମହାନ୍ତି ଲେଖିଥିଲେ ଲୁଣମରା ଗୀତ—

ଚାଲ ଭାଇ ଲୁଣ ମାରିବା
ଗାନ୍ଧୀଙ୍କ ଆଜ୍ଞା ପାଳନ କରିବା
ଆମ ଘର ପାଖରେ ଲୁଣ
ନଜାଣିଲୁ ତାହାର ଗୁଣ
ଲିଭରପୁଲର ଲୁଣ ଖାଇ ଖାଇ
କେତେ ଦିନ ଆଉ ଦେହ ଧରିବା ? ॥
ଲୁଣ ଆମ ଜୀବନ ସାର
ଲୁଣ ବିନା ସବୁ ଅସାର
ପଖାଳ ଭାତରେ ଲୁଣ ଟିକେ ହେଲେ
ଭୁଲି ଯାଉ ମାଛ ଆଳୁ ପରିବା ॥
ଉଠାଇବା ନିମିକି କୋଠି
ଡରିବାନି ବନ୍ଧୁକ, ଲାଠି
ଜେଲଖାନା ହେବ ଆମ ଶ୍ରୀମନ୍ଦିର
ଦେଶ ଲାଗି ହସି ହସି ମରିବା ॥

ଲବଣ ସତ୍ୟାଗ୍ରହ ପରେ ଜଙ୍ଗଲ ଆଇନ୍ ବିରୋଧୀ ଅଭିଯାନ ଆରମ୍ଭ ହେଲା । ବ୍ରିଟିଶ ସରକାର ଜଙ୍ଗଲଗୁଡ଼ିକୁ ହାତକୁ ନେବା ପରେ ଗାଁଗହଳରେ ଥିବା ଜଙ୍ଗଲଗୁଡ଼ିକ ଉପରୁ ଜନସାଧାରଣ ନିଜର ଅଧିକାର ହରାଇଲେ । ଶହ ଶହ ବର୍ଷ ଧରି ଯେଉଁ ଜଙ୍ଗଲଗୁଡ଼ିକୁ ସେମାନେ ଭୋଗ କରୁଥିଲେ, ତାହା ସେମାନଙ୍କ ହାତରୁ ଚାଲିଗଲେ । ଏହାର ପ୍ରତିବାଦ ସ୍ୱରୂପ ପୁରୁଷ ଓ ମହିଳାମାନେ କାତୁରୀ କୁରାଢ଼ୀ ଧରି ଜଙ୍ଗଲ ଭିତରେ ପଶି ଜବରଦସ୍ତ କାଠ କାଟିଲେ । ଏହା ଫଳରେ ସେମାନଙ୍କୁ ମାଡ ଦିଆଗଲା, ଗିରଫ୍ କରାଗଲା ଓ ବିଭିନ୍ନ ପ୍ରକାର ନିର୍ଯାତନା ଦିଆଗଲା ।

ଆଇନ୍ ଅମାନ୍ୟ ଆନ୍ଦୋଳନର ସବୁଠାରୁ ଗୁରୁତ୍ୱପୂର୍ଣ୍ଣ ବିଷୟ ହେଉଛି, ବିଦେଶୀ ବସ୍ତ୍ର ବର୍ଜ୍ଜନ । ମହିଳାମାନେ ନିଜେ ଅରଟରେ ସୂତା କାଟି ଖଦଡ ଲୁଗା ପିନ୍ଧିଲେ । ଘର ଘର ବୁଲି ସୂତା କାଟିବା ପାଇଁ ପ୍ରବର୍ତ୍ତାଇଲେ । ଯେଉଁ ଦୋକାନଗୁଡ଼ିକରେ ବିଦେଶୀ ଲୁଗାପଟା ବିକ୍ରି କରାଯାଉଥିଲା, ସେଠାରେ ମହିଳାମାନେ ଶୋଭାଯାତ୍ରା କରି ବିଦେଶୀ ବସ୍ତ୍ର ନକିଣିବା ପାଇଁ ଲୋକମାନଙ୍କ ମଧ୍ୟରେ ପ୍ରଚାର ଚଳାଇଲେ । ଏପରିକି, ବିଦେଶୀ ବସ୍ତ୍ରର ବ୍ୟବସାୟ ନକରିବାକୁ ଦୋକାନୀମାନଙ୍କୁ ପ୍ରବର୍ତ୍ତାଇଲେ । ଏମାନଙ୍କ ମଧ୍ୟରେ ଜୟଶ୍ରୀ ରାଣୀ, ହଂସା ମେହେଟା, ପେରିନ୍ କ୍ୟାପ୍ଟେନ୍, ଗୋସିବେନ୍ କ୍ୟାପ୍ଟେନ୍, ଲୀଳାବତୀ ମୁନ୍ସି, ମନିବେନ୍ ପ୍ରଭୃତି ନାରୀ ନେତ୍ରୀମାନେ ଅନ୍ୟତମ । ମହିଳାମାନଙ୍କ ପ୍ରଚାର ଏତେ ପ୍ରଭାବଶାଳୀ ହେଲା ଯେ ବିଦେଶୀ ବସ୍ତ୍ର କାରବାର ଘୋର ବାଧାପ୍ରାପ୍ତ ହେଲା । ବ୍ରିଟିଶ ସରକାର ପ୍ରଚାରକୁ ବେଆଇନ୍ ଘୋଷଣା କଲେ । ପ୍ରଚାର କର୍ମୀମାନଙ୍କୁ ଗିରଫ୍ କରାଗଲା । କିନ୍ତୁ ଯେତେ ସଂଖ୍ୟାରେ ମହିଳା ଗିରଫ୍ ହେଉଥାଆନ୍ତି, ତା'ଠାରୁ ଅଧିକ ସଂଖ୍ୟାରେ ମହିଳା ପ୍ରଚାର କାର୍ଯ୍ୟ ଚଳାଉଥାଆନ୍ତି । ଏଥିପାଇଁ ପ୍ରାୟ ୧୭ ହଜାରରୁ ଊର୍ଦ୍ଧ୍ୱ ମହିଳା ଜେଲଦଣ୍ଡ ଭୋଗିଥିଲେ । ପୁଲିସ୍ ଗାଡ଼ିରେ ମହିଳାମାନଙ୍କୁ ନିଆଯାଇ ବିଭିନ୍ନ ପ୍ରକାରରେ ଭୟଭୀତ କରାଯାଉଥିଲା, ଜଙ୍ଗଲ ଭିତରେ ଛାଡ଼ି ଦିଆଯାଉଥିଲା ଏବଂ ରାତି ଅଧରେ ଗିରଫ କରାଯାଉଥିଲା । କେତେକ ସ୍ଥାନରେ ମହିଳା ପ୍ରଚାର କର୍ମୀଙ୍କୁ ପୁଲିସ ମାଡ ଦେଉଥିଲେ, ସେମାନଙ୍କ ଉପରକୁ ସୋରିଷ-ଲଙ୍କା ଗୁଣ୍ଡ ଫୋପାଡୁ ଥିଲେ ଏବଂ ପାଇପ୍ ସାହାଯ୍ୟରେ ପାଣି ଛାଡ଼ି ଦେଉଥିଲେ । କିନ୍ତୁ ମହିଳାମାନେ ଦୃଢ ମନୋବଳ ନେଇ ଏହି ଅଭିଯାନ ଚାଲୁ ରଖିଥିଲେ । ଏହି ସମୟରେ ଓଡ଼ିଶାର ନାରୀ କବି କୁନ୍ତଳା କୁମାରୀ ସାବତ ବିଦେଶୀ ବସ୍ତ୍ର ବର୍ଜ୍ଜନ କରି ଅରଟରେ ସୂତା କାଟିବା ପାଇଁ ଭାରତର ନାରୀ ଜାତିକୁ ଆହ୍ୱାନ ଜଣାଇ ଲେଖିଥିଲେ—

ଅରଟ, ଅରଟ ଆମ ଜପାମାଳି
ଅରଟର ସୂତା ଜୀବନ ସଙ୍ଖାଳି ।
ବିଦେଶୀ ବର୍ଜ୍ଜନ ଦୃଢ ବ୍ରତ ପାଳି
ଦର୍ପୀଙ୍କ ଶାସନ ଯନ୍ତ୍ର ଦେବୁଁ ଟାଳି ।
ଗାଅ ହେ ଭଉଣୀ ଅରଟର ଗୀତ
ଅରଟରେ ଆମ ସାଧନା ନିହିତ ।
ସର୍ବବଳ ତହିଁ କରିବା ନିହିତ
ଆଣିବା ଫେରାଇ ସୁବର୍ଣ୍ଣ ଅତୀତ ।
ଅରଟ ଆମର ଜୀବନ ସମ୍ବଳ
ଅରଟ ଯେ ଏକା ଭାରତର ବଳ ।

ଏହାପରେ ବିଦେଶୀ ମଦ ଦୋକାନଗୁଡ଼ିକ ବିରୁଦ୍ଧରେ ମହିଳାମାନେ ଅଭିଯାନ ଚଳାଇଥିଲେ । ମଦ ଦୋକାନ ଖୋଲିବା ପାଇଁ ଲାଇସେନ୍ସ ନିଲାମ ହେଉଥିବା ସମୟରେ ମହିଳାମାନେ ପିକେଟିଂ କରୁଥିଲେ । ଯେଉଁମାନେ ନିଲାମ ଧରିବା ପାଇଁ ଆସୁଥିଲେ, ମହିଳାମାନେ ସେମାନଙ୍କୁ ମଦ ବେପାର ନକରିବାକୁ ଦୃଢ଼ତାର ସହିତ ବୁଝାଉଥିଲେ । ଏହା ଦ୍ୱାରା ମଦ ବିକ୍ରି ବାବଦରୁ ସରକାର ଯେଉଁ ରାଜସ୍ୱ ଲାଭ କରୁଥିଲେ, ସେଥିରେ କ୍ଷତି ଘଟୁଥିଲା । ଗାଁଗହଳରେ ପର୍ବପର୍ବାଣୀ ସମୟରେ ଖୋଲାଖୋଲି ଭାବରେ ମଦ ବିକ୍ରି କରାଯାଉଥିବାରୁ, ମହିଳାମାନେ ସେଠାରେ ଗାଁ ଲୋକଙ୍କୁ ମାଗଣାରେ କ୍ଷୀର ଓ ଫଳରସ ବାଣ୍ଟୁଥିଲେ । ଏପରିକି ତାଡ଼ି ପ୍ରସ୍ତୁତ କରାଯାଉଥିବା ହଜାର ହଜାର ସଂଖ୍ୟକ ଖଜୁରୀ ଗଛ ହାଣିବାକୁ ସେମାନେ ମଧ୍ୟ ଦୃଢ ପଦକ୍ଷେପ ନେଇଥିଲେ ।

୧୯୪୨ ମସିହାରେ ଦ୍ୱିତୀୟ ବିଶ୍ୱଯୁଦ୍ଧ ସମୟରେ ମହାତ୍ମା ଗାନ୍ଧୀ ବ୍ରିଟିଶମାନଙ୍କୁ ଭାରତ ଛାଡ ଆନ୍ଦୋଳନର ଡାକରା ଦେଇଥିଲେ । ଏ ପରିପ୍ରେକ୍ଷୀରେ ୧୯୪୨ ଅଗଷ୍ଟ ୮ ତାରିଖରେ ଜାତୀୟ କଂଗ୍ରେସ ଏକ ପ୍ରସ୍ତାବ ଗ୍ରହଣ କରିଥିଲେ । ଫଳରେ ସମସ୍ତ ବଡ଼ବଡ଼ ନେତାଙ୍କ ସମେତ ହଜାରହଜାର ପୁରୁଷ ଓ ମହିଳାଙ୍କୁ ଗିରଫ୍ କରାଗଲା । ନାରୀନେତ୍ରୀଙ୍କ ମଧ୍ୟରେ କସ୍ତୁରବା ଗାନ୍ଧୀ, ସରୋଜିନୀ ନାଇଡୁ ଓ ବିଜୟଲକ୍ଷ୍ମୀ ପଣ୍ଡିତ ଜେଲ ଭୋଗକଲେ । କସ୍ତୁରବା ଗାନ୍ଧୀ ଜେଲ୍‌ରେ ମୃତ୍ୟୁ ବରଣ କଲେ । ଏହି ସମୟରେ ନାରୀନେତ୍ରୀ ଶ୍ରୀମତୀ ଅରୁଣା ଆସଫ୍ ଅଲ୍ଲୀ ଓ ସୁଚେତା କୃପାଳିନୀ ପ୍ରଚ୍ଛନ୍ନରେ ସଂଗ୍ରାମ ଚଳାଉଥିଲେ ଏବଂ ଉଷା ମେହେଟ୍ଟା ରେଡ଼ିଓ ସ୍କୁଲ୍ ଚଳାଉଥିଲେ ।

ଭାରତୀୟ ନାରୀମାନଙ୍କ ରାଜନୈତିକ ଉତ୍‌ଥାନ ଦିଗରେ କମଳା ନେହେରୁ ଏକ ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରିଥିଲେ । ନିଜର ସ୍ୱାସ୍ଥ୍ୟ ଖରାପ ସତ୍ତ୍ୱେ ସେ ଆଲ୍‌ହାବାଦ କଂଗ୍ରେସ କମିଟି ସଭାପତି ରୂପେ ଏବଂ ପରେ କଂଗ୍ରେସ କାର୍ଯ୍ୟକାରୀ କମିଟିର ସଦସ୍ୟା ରୂପେ ଦାୟିତ୍ୱ ସଂପାଦନ କରିଥିଲେ । ଆଇନ ଅମାନ୍ୟ ଆନ୍ଦୋଳନର ସଫଳତା ପାଇଁ ବିଭିନ୍ନ ସ୍ଥାନକୁ ଯାଇ ଏହାର ସଂଗଠନ କାର୍ଯ୍ୟ ବୁଝୁଥିଲେ । ଶୋଭାଯାତ୍ରା କରି ପୋଲିସର ଲାଠି ଓ ବୁଲେଟ୍‌ର ସମ୍ମୁଖୀନ ହୋଇଥିଲେ । ଜଣେ କଂଗ୍ରେସ ସ୍ୱେଚ୍ଛାସେବୀ ରୂପେ ପୁରୁଷଙ୍କ ଭଳି ପାଇଜାମା, କୁର୍ତ୍ତା ଓ ଗାନ୍ଧୀ ଟୋପି ପିନ୍ଧି ସକଳ କ୍ରୀଡାରେ ଯୋଗ ଦେଉଥିଲେ । ୧୯୩୧ ଜାନୁଆରୀ ୧ ତାରିଖରେ ତାଙ୍କୁ ଗିରଫ୍ କରାଯାଇ ୨ ମାସ କାରଦଣ୍ଡ ଆଦେଶ ହେଲା । କିନ୍ତୁ ମୋତିଲାଲ ନେହେରୁ ମୃତ୍ୟୁ ଶଯ୍ୟାରେ ପଡ଼ିବାରୁ ତାଙ୍କୁ ୨୬ ଦିନ ପରେ ଛାଡ଼ି ଦିଆଯାଇଥିଲା।

ଅତି ଅଳ୍ପ ବୟସରୁ ଶ୍ରୀମତୀ ଇନ୍ଦିରା ଗାନ୍ଧୀ ସ୍ୱାଧୀନତା ସଂଗ୍ରାମ ପ୍ରତି ଆକୃଷ୍ଟ ହୋଇଥିଲେ । ଗାନ୍ଧୀଜୀଙ୍କ ବାଳ ଚରଖା ସଂଘରେ ଯୋଗଦେବାଠାରୁ ଆରମ୍ଭ କରି ଅସହଯୋଗ ଆନ୍ଦୋଳନ ସମୟରେ ବାନରସେନା ଗଠନ କରିବା; ଜାତୀୟ କଂଗ୍ରେସରେ ଯୋଗଦେବା, ଅଲ୍ଲାହାବାଦରେ ଜେଲ ଭୋଗିବା, ଗାନ୍ଧୀଜୀଙ୍କ ସହ ରିଲିଫ୍ କାର୍ଯ୍ୟରେ ଅଂଶ ଗ୍ରହଣ କରିବା ସମୟରେ ସେ ଅତ୍ୟନ୍ତ ଦୃଢ଼ମନା ହୋଇ ଦେଶ ପାଇଁ କଷ୍ଟ ସ୍ୱୀକାର କରିଛନ୍ତି ।

ମହାତ୍ମା ଗାନ୍ଧୀ ଲଣ୍ଡନରେ ଅନୁଷ୍ଠିତ ଦ୍ୱିତୀୟ ଗୋଲ ଟେବୁଲ ବୈଠକରେ ଯୋଗ ଦେଇ ଫେରିବା ପରେ ପରେ ୧୯୩୨ ମସିହାରେ ଯେଉଁ ଆଇନ ଅମାନ୍ୟ ଆନ୍ଦୋଳନ ହୋଇଥିଲା, ସେଥିରେ ସଂଗ୍ରାମର ପୁରୋଭାଗରେ ଥିଲେ ମହିଳାମାନେ । ଆନ୍ଦୋଳନର ପ୍ରଥମ ଚାରିମାସ ଭିତରେ ୮୦ ହଜାର ଲୋକ ଜେଲ ଭୋଗିଥିଲେ । ସେମାନଙ୍କ ମଧ୍ୟରେ ମହିଳାଙ୍କ ସଂଖ୍ୟାଥିଲା ହଜାର ହଜାର । ତେଣୁ, ମହିଳାମାନେ ଯେପରି ଆନ୍ଦୋଳନରେ ଅଂଶ ଗ୍ରହଣ ନ କରିବେ, ସେ ଉଦ୍ଦେଶ୍ୟରେ ବ୍ରିଟିଶ୍ ସରକାର ମହିଳା ରାଜନୈତିକ ବନ୍ଦୀମାନଙ୍କ ନିମନ୍ତେ ଜେଲ ଜୀବନ ଅତୀବ ଯନ୍ତ୍ରଣା ଦାୟକ କରିଥିଲେ । ସ୍ଲୋଗାନ୍ ଦେଲେ କିମ୍ବା ଏକତ୍ରିତ ହୋଇ ସଭାସମିତି କଲେ କୁମାରୀ ଝିଅମାନଙ୍କୁ ଦୁଇବର୍ଷ ସଶ୍ରମ କାରାଦଣ୍ଡ ଦେଉଥିଲେ । ସେ ସମୟରେ ପ୍ରୌଢ଼ାମାନେ ମଧ୍ୟ ସ୍ୱାଧୀନତା ସଂଗ୍ରାମରେ ନିଜକୁ ସାମିଲ କରିବାକୁ ପଛଘୁଞ୍ଚା ଦେଇ ନଥିଲେ । ଜବାହରଲାଲ ନେହେରୁଙ୍କ ମାଆ ସ୍ୱରୂପରାଣୀ ଓ ମହାତ୍ମା ଗାନ୍ଧୀଙ୍କ ପତ୍ନୀ କସ୍ତୁରବା ଗାନ୍ଧୀ ଏ ଦିଗରେ ଅଗ୍ରଗଣ୍ୟା ।

ସ୍ୱାଧୀନତା ଆନ୍ଦୋଳନ ସମୟରେ ଓଡ଼ିଶାରେ ମହାତ୍ମା ଗାନ୍ଧୀ, ଉତ୍କଳମଣି ଗୋପବନ୍ଧୁ, ମଧୁସୂଦନ ଦାସ ଓ ଗୋପବନ୍ଧୁ ଚୌଧୁରୀ ପ୍ରଭୃତିଙ୍କ ପ୍ରେରଣାରେ ବହୁ ନାରୀ ନିଜର ସୁଖ ସ୍ୱାଚ୍ଛନ୍ଦକୁ ଜଳାଞ୍ଜଳି ଦେଇ ଦେଶ ମାତୃକାକୁ ବିଦେଶୀ ଶୃଙ୍ଖଳାରୁ ମୁକ୍ତ କରିବା ପାଇଁ ଆଗେଇ ଆସିଥିଲେ। ଶ୍ରୀମତୀ ସରଳା ଦେବୀ, ଶ୍ରୀମତୀ ରମାଦେବୀ, ଶ୍ରୀମତୀ ଜାହ୍ନବୀ ଦେବୀ, ଶ୍ରୀମତୀ ମାଳତୀ ଚୌଧୁରୀ, ଶ୍ରୀମତୀ ଅନ୍ନପୂର୍ଣ୍ଣ ମହାରଣା ପ୍ରଭୃତି ଆଜି ଭାରତ ବର୍ଷରେ ସ୍ୱନାମଧନ୍ୟା ହୋଇ ପାରିଛନ୍ତି ଶ୍ରୀମତୀ ରମା ଦେବୀଙ୍କ ମୃତ୍ୟୁରେ ଗଭୀର ଶୋକ ପ୍ରକାଶ କରି ମୁଖ୍ୟମନ୍ତ୍ରୀ ଶ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକ ଲେଖିଥିଲେ–

"...ଗାନ୍ଧୀଜୀଙ୍କ ଆନ୍ଦୋଳନକୁ ଦୁଇ ଧାରାରେ ବିଭକ୍ତ କରାଯାଇପାରେ ଗଠନାତ୍ମକ ଓ ଆନ୍ଦୋଳନାତ୍ମକ । ରମାଦେବୀ ଉଭୟ କାର୍ଯ୍ୟରେ ଅଗ୍ରଣୀ ଭାବରେ କାର୍ଯ୍ୟ କରିଥିଲେ । ଲବଣ ସତ୍ୟାଗ୍ରହଠାରୁ ଅଗଷ୍ଟ ବିପ୍ଳବ ପର୍ଯ୍ୟନ୍ତ ସମସ୍ତ ଆନ୍ଦୋଳନରେ ସେ ସକ୍ରିୟ ନେତୃତ୍ୱ ନେଇଥିଲେ ଓ ଗାନ୍ଧୀଜୀଙ୍କର ସମସ୍ତ ଗଠନାତ୍ମକ କାର୍ଯ୍ୟକ୍ରମର ପୁରୋଭାଗରେ ଥିଲେ ।

...ସାରାଦେଶ ଶ୍ରେଷ୍ଠ ସେବା ପାଇଁ ତାଙ୍କୁ ସମ୍ମାନିତ କରିଛି । ମାତ୍ର ଏହି ସମ୍ମାନ ଅପେକ୍ଷା ଲକ୍ଷ ଲକ୍ଷ ଗରିବ ଲୋକଙ୍କର ହୃଦୟରେ ସେ ଯେଉଁ ସମ୍ମାନର ସ୍ଥାନ ଅଧିକାର କରିଛନ୍ତି, ତା'ର ତୁଳନା ନାହିଁ । ସେ ଥିଲେ ଓଡ଼ିଶାର କୋଟି କୋଟି ଲୋକଙ୍କର ମାତା ଏବଂ ଜନନୀ । ଏକ ସ୍ନେହ ଏବଂ ପ୍ରେରଣା ଦାୟିନୀ ଶକ୍ତି । ତ୍ୟାଗ, ତପସ୍ୟା, ସେବା ଓ ସାଧନାର ପ୍ରତିମୂର୍ତ୍ତି । ପ୍ରାୟ ଷାଠିଏ ବର୍ଷ ଧରି ଦେଶ ପାଇଁ ଓ ଓଡ଼ିଶା ପାଇଁ ତାଙ୍କର ଉତ୍ସର୍ଗୀକୃତ ଜୀବନ ଚିରକାଳ ଏକ ଆଦର୍ଶ ଓ ପ୍ରେରଣାର ଉତ୍ସ ହୋଇ ରହିବ ।"

୧୯୪୬ ମସିହାରେ ଭାରତର ଜନସାଧାରଣଙ୍କୁ ବ୍ରିଟିଶମାନେ ଯେତେବେଳେ କ୍ଷମତା ହସ୍ତାନ୍ତର କଲେ, ସେତେବେଳେ କେନ୍ଦ୍ରରେ ମଧ୍ୟମର୍ଗୀକାଳୀନ ସରକାର ଗଠନ କରାଯିବା ସଙ୍ଗେ ସଙ୍ଗେ ରାଜକୁମାରୀ ଅମୃତ କାଉର୍‌ଙ୍କୁ ନିଆଗଲା । ବିଭିନ୍ନ ବିଧାନ ସଭା ପରିଷଦଗୁଡ଼ିକରେ ଶ୍ରୀମତୀ ସରୋଜିନୀ ନାଇଡୁ, ହଂସା ମେହେଟ୍ଟା, ଦୁର୍ଗାବାଈ, ରେଣୁକା ରାୟ, ମାଳତୀ ଚୌଧୁରୀ ପ୍ରଭୃତି ଯୋଗଦେଲେ । ଦେଶ ବିଭାଜନ ସମୟରେ କ୍ଷତିଗ୍ରସ୍ତ ଲୋକମାନଙ୍କର ଥଇଥାନ ଲାଗି ଅଚକା ମାଥାଇ, ସୁଚେତା କୃପାଳିନୀ, ମୃଦୁଲତା ସାରାଭାଇ, ରାମେଶ୍ୱରୀ ନେହେରୁ, କମଳା ଦେବୀ ଚଟ୍ଟୋପାଧ୍ୟାୟ ପ୍ରମୁଖ ନାରୀ ନେତ୍ରୀମାନେ ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରିଥିଲେ ।

ରାଷ୍ଟ୍ରପିତା ମହାତ୍ମା ଗାନ୍ଧୀ ଦେଶରନାଡ଼ି ଟିପି ଠିକ୍ ଜାଣିପାରିଥିଲେ ଯେ ପୂର୍ବରୁ ନିୟମିତ ଭାବେ ଗ୍ରୁଲିଥିବା ନାରୀମାନଙ୍କ ସାମାଜିକ ସଂସ୍କାର ଆନ୍ଦୋଳନ ସହିତ ରାଜନୈତିକ ସ୍ୱାଧୀନତା ଆନ୍ଦୋଳନ ମିଶାଇ ଦେଲେ ସଂଗ୍ରାମ ଅଧିକ ଶକ୍ତିଶାଳୀ ଓ ଫଳପ୍ରଦ ହେବ । ତେଣୁ, ତାଙ୍କଠାରୁ ପ୍ରେରଣା ପାଇ ଭାରତୀୟ ନାରୀମାନେ ପୁନର୍ବାର ଜାଗି ଉଠିବା ସଙ୍ଗେ ସଙ୍ଗେ ଅଧିକ କର୍ମତତ୍ପର ହୋଇ ପଡ଼ିଥିଲେ । ପଣ୍ଡିତ ଜବାହରଲାଲ ନେହେରୁଙ୍କ ଭାଷାରେ– "ଆମ ଦେଶର ମହିଳାମାନଙ୍କ ମଧ୍ୟରେ ଯେଉଁ ନାଟକୀୟ ପରିବର୍ତ୍ତନ ଦେଖା ଦେଇଥିଲା, ତାହା ସେହି ଅଦ୍ଭୁତ ଚରିତ୍ର ମହାନ୍ ବିପ୍ଳବୀ ନେତା ମହାତ୍ମା ଗାନ୍ଧୀ ଆଣିଥିଲେ । ଗାନ୍ଧୀ ଯେତେବେଳେ ଡାକରା ଦେଇଥିଲେ, ଦେଶର ଅଗଣିତ ନରନାରୀ ଭାରତର ସ୍ୱାଧୀନତା ଆନ୍ଦୋଳନରେ ଅଂଶ ଗ୍ରହଣ କରିବା ପାଇଁ ବାହାରି ଆସିଥିଲେ । ଭାରତୀୟମାନେ ନିଜ ହାତରୁ ପୁରାତନ ବେଡ଼ିମାନ ଛିନ୍ନ କରି ଦେଇଥିଲେ ଏବଂ ଆଉଥରେ ଏହା ଯେପରି ତାଙ୍କ ହାତରେ ନ ଲାଗେ ସେଥିଲାଗି ପ୍ରତିଜ୍ଞାବଦ୍ଧ ହୋଇଥିଲେ । ପୂର୍ବାବସ୍ଥାକୁ ଫେରାଇ ନେବା ନିମନ୍ତେ ଇଂରେଜମାନଙ୍କ ପକ୍ଷରୁ ସକଳ ପ୍ରକାର ଉଦ୍ୟମ କରାଯାଇଥିଲା, ଏଥିରେ ସନ୍ଦେହ ନାହିଁ, କିନ୍ତୁ ସେମାନଙ୍କର ସେ ଉଦ୍ୟମ ବ୍ୟର୍ଥ ହୋଇ ଯାଇଥିଲା ।"

ଘର ନଂ–୨୧ ଟାଇପ୍–'ଭ'
ୟୁନିଟ୍–୮, ଭୁବନେଶ୍ୱର


ଓଡିଶା ସରକାରଙ୍କର ସଂସ୍ଥା
ଆପଣଙ୍କ ସେବାରେ
ଆଦିବାସୀଙ୍କ ଉତ୍ପାଦିତ
ଫଳ ସମ୍ଭାରରୁ
ଉପକୃଷି ନିର୍ଦ୍ଦେଶକ [ଫଳ ସଂରକ୍ଷଣ] ଓଡିଶା
ଭୁବନେଶ୍ୱର-୯ ଫୋନ-୫୦୬୯୩



# ଗାଁ ଅଞ୍ଚଳରେ ବୃକ୍ଷରୋପଣ

ଶ୍ରୀ ବିଜୟ କୁମାର ସ୍ୱାଇଁ

ଓଡ଼ିଶାର ଲୋକେ ଜଙ୍ଗଲ ଉପରେ ବିଶେଷ ଭାବରେ ନିର୍ଭର କରନ୍ତି । ନିତିଦିନିଆ ବ୍ୟବହାରରେ ଅତ୍ୟାବଶ୍ୟକ ଜାଳେଣୀ କାଠ, ଘାସ ଓ ଘର ତିଆରି ଉପକରଣ ଏବଂ ଖାଦ୍ୟ ଜଙ୍ଗଲରୁ ମିଳିଥାଏ । ସୁସ୍ଥ ବାତାବରଣ ପାଇଁ ଜଙ୍ଗଲର ସାହାଯ୍ୟ ଅନିବାର୍ଯ୍ୟ । ବିଗତ କେତେବର୍ଷ ଭିତରେ ଓଡ଼ିଶାର ପ୍ରାକୃତିକ ବନ ସଂପଦ ଉପଯୁକ୍ତ ରକ୍ଷଣାବେକ୍ଷଣ ଓ ବୃକ୍ଷରୋପଣ ଅଭାବରୁ ଦ୍ରୁତ ଗତିରେ କ୍ଷୟ ହେବାରେ ଲାଗିଛି । ଅନ୍ୟ ଦିଗରେ ଜନସଂଖ୍ୟା ବଢ଼ିବାରେ ଲାଗିଛି । ଫଳରେ ଜାଳେଣୀ କାଠର ଅଭାବ ବର୍ତ୍ତମାନ ବିଶେଷ ଭାବରେ ପରିଲକ୍ଷିତ ହେଉଛି ।

୧୯୮୧ ମସିହା ହିସାବ ଅଟକଳରୁ ଜଣାଯାଏ ଯେ ୨୦୦୦ ମସିହା ସୁଦ୍ଧା ଭାରତର କେବଳ ଜାଳକାଠ ଅଭାବ ୨୦୮ ନିୟୁତ ଘନ ମିଟର ହେବ । ବାର୍ଷିକ ଯଦି ୧.୫ ନିୟୁତ ହେକ୍ଟର ଜମିରେ ବୃକ୍ଷରୋପଣ କରାଯାଏ ତାହାହେଲେ ହୁଏତ ଏହି ଅଭାବ ମେଣ୍ଟି ପାରନ୍ତା କିନ୍ତୁ ଅର୍ଥାଭାବ ଓ ଓ ତାଲିମପ୍ରାପ୍ତ ଲୋକଙ୍କ ଯେପରି ଅଭାବ ତଦ୍ୱାରା ପ୍ରାଦେଶିକ ଜଙ୍ଗଲ ବିଭାଗମାନଙ୍କ ଦ୍ୱାରା ଏହା କେତେଦୂର ସଫଳଭାବେ କରାଯାଇ ପାରିବ ସେଥିରେ ମଧ୍ୟ ସନ୍ଦେହ ରହିଛି । ଏଣେ ବଜାରରେ କାଠର ଦାମ୍ ଯେପରି ଭାବେ ବୃଦ୍ଧି ପାଉଛି, ସାଧାରଣ ଗ୍ରାମବାସୀ ଏଥିରେ ଅତିଷ୍ଠ ହୋଇ ପଡ଼ିଲେଣି ।

ଯୁଗ ଯୁଗ ଧରି ଜାଳକାଠ ଚାହିଦା ମେଣ୍ଟାଇବା ପାଇଁ ଲୋକଙ୍କର ଜଙ୍ଗଲ ଉପରେ ନିର୍ଭରଶୀଳତା ଫଳରେ ଜଙ୍ଗଲର କ୍ଷୟ କ୍ରମେ ବ୍ୟାପକ ହୋଇଅଛି । ଫଳତଃ ଗାଁ ନିକଟସ୍ଥ ଜାଳକ୍ରମେ ଜଙ୍ଗଲ ଉଭେଇ ଗଲଣି । ଆଜି ଗାଁର ଚାଷୀ ମଜୁରିଆ ବା ଗାଁର ବଢ଼େଇ, ତନ୍ତୀ, କୁମ୍ଭାର ଓ କମାର ପ୍ରଭୃତି ଗ୍ରାମ୍ୟ ଶିଳ୍ପୀ ସେମାନଙ୍କ ଦରକାରୀ ଜାଳକାଠ ବା ଅନ୍ୟାନ୍ୟ କାଠ ଆଉ ଗାଁପାଖ ଜଙ୍ଗଲରୁ ପାଉନାହାନ୍ତି । ଏହା ସଂଗ୍ରହ କରିବାକୁ ସେମାନଙ୍କୁ ହୁଏତ ଗାଁ ଠାରୁ ଖୁବ୍ ଦୂରକୁ ଯିବାକୁ ପଡୁଛି । ଯାହା ଫଳରେ ସେମାନଙ୍କ ଲାଭରେ ବ୍ୟାଘାତ ସୃଷ୍ଟି ହେଉଛି ବା ସେମାନଙ୍କ ଉତ୍ପାଦନରେ ମଧ୍ୟ ଆଞ୍ଚ ଆସୁଛି । ଏଣୁ ଗାଁର ଗରିବ ଚାଷୀ, ମୂଲିଆ ଓ ଶିଳ୍ପୀ ଗାଁ ଧନ୍ଦା ଛାଡ଼ି ସହର ଅଭିମୁଖୀ ହେବାରେ ଲାଗିଛନ୍ତି ଏବଂ ଗାଁର ଅବସ୍ଥା ଦିନକୁ ଦିନ ଦୟନୀୟ ହେଉଅଛି ।

ଏହି ସମସ୍ୟାର ମୁକାବିଲା କରିବାପାଇଁ ସୁଇଡ଼େନ ସରକାରଙ୍କ ଆର୍ଥିକ ସହାୟତାରେ ଓଡ଼ିଶାରେ ସାମାଜିକ ବନ ପ୍ରକଳ୍ପ ୧୯୮୪-୮୫ ଆର୍ଥିକ ବର୍ଷରେ ସାତୋଟି ଜିଲ୍ଲାରେ ଏବଂ ୧୯୮୫-୮୬ରୁ ୯ଟି ଜିଲ୍ଲାରେ କାର୍ଯ୍ୟକାରୀ ହେଉଛି । ସାମାଜିକ ବନ ପରିକଳ୍ପନା ଓଡ଼ିଶା ପାଇଁ କିଛି ନୂଆ ନହେଲେ ମଧ୍ୟ ଏହି ପ୍ରକଳ୍ପର ବିଶେଷତ୍ୱ ହେଲା "ସରକାରୀ ସହାୟତା ଓ ସାଧାରଣ ଲୋକଙ୍କ ସହଯୋଗର ମାଧ୍ୟମରେ ଜଙ୍ଗଲ ସୃଷ୍ଟି କରାଯିବ ।" । ସରକାରୀ କଳ ଗ୍ରାମବାସୀଙ୍କର ପ୍ରତ୍ୟକ୍ଷ ସହଯୋଗରେ ବିଭିନ୍ନ କାର୍ଯ୍ୟ ଚଳାଇବେ । ଏହି ପ୍ରକଳ୍ପରେ ଜନସାଧାରଣଙ୍କୁ ଜଙ୍ଗଲର ସ୍ରଷ୍ଟା ଏବଂ ବ୍ୟବହାରକାରୀ ହିସାବରେ ପ୍ରାଧାନ୍ୟ ଦିଆଯାଇଅଛି । ପ୍ରକଳ୍ପ ତରଫରୁ ବନୀକରଣ କାର୍ଯ୍ୟକ୍ରମ କରାଗଲେ ମଧ୍ୟ ଗ୍ରାମବାସୀମାନେ ଏହାର ସୃଷ୍ଟି, ପରିଚାଳନା, ରକ୍ଷଣାବେକ୍ଷଣ ଏବଂ ଏଥିରୁ ଉପୁଜିବା ଉପକରଣର ସୁଷମ ବଣ୍ଟନରେ ଦାୟୀ ରହିବେ । ଦୁର୍ବଳ ଶ୍ରେଣୀର ଲୋକଙ୍କପାଇଁ କର୍ମସଂସ୍ଥାନ ଯୋଗାଇବା ସଙ୍ଗେ ସଙ୍ଗେ ଜମିହୀନ ଲୋକଙ୍କ ଜୀବିକା ନିର୍ବାହର ପନ୍ଥା ନିର୍ଦ୍ଧାରଣ ପାଇଁ ବ୍ୟବସ୍ଥା କରାଯାଇ ସାମାଜିକ ବନୀକରଣ ଜାତୀୟ ବିଂଶସୂତ୍ରୀ କାର୍ଯ୍ୟକ୍ରମର ଏକ ବିଶେଷ ଅଂଶରୂପେ ପ୍ରତିଷ୍ଠିତ ହୋଇଛି । ପ୍ରଧାନ ମନ୍ତ୍ରୀ ଶ୍ରୀଯୁକ୍ତ ରାଜୀବ ଗାନ୍ଧୀ

୧୯୮୫ ମସିହା ଜାନୁଆରୀ ୫ ତାରିଖରେ ଜାତି ଉଦ୍ଦେଶ୍ୟରେ ଭାଷଣ ଦେବା ଅବକାଶରେ କହିଥିଲେ ଯେ ପ୍ରତିବର୍ଷ ୫୦ ଲକ୍ଷ ହେକ୍ଟର ଜମିରେ ଜାଳେଣୀ ତଥା ଗୋଖାଦ୍ୟ ଗଛ ରୋପଣ କରିବା ଲକ୍ଷ୍ୟ ଧାର୍ଯ୍ୟ କରାଯାଇଛି ଏବଂ ଏହା ହାସଲ କରିବା ନିମନ୍ତେ ବନୀକରଣ କାର୍ଯ୍ୟପାଇଁ ଜନ ଜାଗରଣ ସୃଷ୍ଟି ନିତାନ୍ତ ଅପରିହାର୍ଯ୍ୟ । ଲୋକଙ୍କର ସୁବିଧା ମେଣ୍ଟାଇବା ପାଇଁ ଗାଁ ଏବଂ ଏହାର ନିକଟବର୍ତ୍ତୀ ଅଞ୍ଚଳରେ ଜଙ୍ଗଲ ସୃଷ୍ଟି କରିବା ଏହି ପ୍ରକଳ୍ପର ପ୍ରଧାନ ଉଦ୍ଦେଶ୍ୟ ।

ଗାଁ ଗହଳରେ ସାଧାରଣ ଲୋକଙ୍କର ଦୈନନ୍ଦିନ ବ୍ୟବହାର ପାଇଁ ସାଧାରଣତଃ ଜାଳକାଠ, ଗୋଖାଦ୍ୟ, ଫଳବୃକ୍ଷ, ଗୃହ ଓ କୃଷି ଉପକରଣ ଇତ୍ୟାଦି ତିଆରି ପାଇଁ କାଠ ଦରକାର ହୋଇଥାଏ । ଏଣୁ ଗାଁ ଗହଳରେ ବୃକ୍ଷ ରୋପଣ ସମୟବେଳେ ଏପରି ଗଛ ବାଛିବା ଦରକାର, ଯେଉଁଥିରୁ ଲୋକେ ଏକାଧାରରେ ଜାଳକାଠ, ଗୋଖାଦ୍ୟ, ଫଳ ଏବଂ ଛୋଟ କାଠ ପାଇପାରିବେ କିନ୍ତୁ କ୍ୱଚିତ୍ ଗଛରୁ ଉପରୋକ୍ତ ସବୁ ସାମଗ୍ରୀ ଏକା ସାଙ୍ଗରେ ମିଳିବା ସମ୍ଭବ । ଏଣୁ ଜାଳକାଠ, ଗୋ ଖାଦ୍ୟ, ଫଳ ଓ ଛୋଟ କାଠ ମିଳୁଥିବା ଗଛଗୁଡ଼ିକୁ ଚିହ୍ନଟ କରି ବୃକ୍ଷରୋପଣ ଅଞ୍ଚଳରେ ଏକାଠି ଲଗାଇବା ଫଳରେ ସମସ୍ତ ସାମଗ୍ରୀ ଏକା ସାଙ୍ଗରେ ମିଳିବା ସମ୍ଭବ ହୋଇ ପାରିଥାଏ ।

ଉଦାହରଣ ସ୍ୱରୂପ :–

ଜାଳକାଠ :–ସବୁଣା, ସୁନାଝରୀ, ନିଳଗିରି, ଝାଉଁ, କାକପୋଇ, ଶିରିଷ, ବାବୁଲ, ବିଲାତି କର୍ଯ୍ୟା ଆମ୍ବ, ପଣସ ଇତ୍ୟାଦି ।

ଗୋଖାଦ୍ୟ :–ବାବୁଲ, କାକପୋଇ, ସୁବିସିଡ଼ିଆ, ବିଲାତି-କର୍ଯ୍ୟା ଇତ୍ୟାଦି ।

ଫଳ :– ଆମ୍ବ, ପଣସ, ନିମ୍ବ, ବରକୋଳି, ଜାମୁ, ଚିନ୍ତୁଳି, ବିଲାତି କର୍ଯ୍ୟା, କାଜୁବାଦାମ ଇତ୍ୟାଦି ।

ଛୋଟକାଠ:–ଆମ୍ବ, ପଣସ, ନିମ୍ବ, ଜାମ, ଶିରିଷ, ଶିଶୁ, ବାବୁଲ ବୃକ୍ଷରୋପଣ ପାଇଁ ପ୍ରକଳ୍ପ ପକ୍ଷରୁ ୫ ଗୋଟି ପ୍ରଧାନ ଉପାଦାନ ରହିଅଛି ।

୧ । ଗ୍ରାମ ଜଙ୍ଗଲ :

ପ୍ରତ୍ୟେକ ଗ୍ରାମରେ ପଡିତ ଅନାବାଦୀ ଓ ଲଣ୍ଡା ପାହାଡ଼ ଜମିରେ ଗ୍ରାମବାସୀଙ୍କ ଅନୁମୋଦିତ ଓ ସହଯୋଗ କ୍ରମେ ଜଙ୍ଗଲ ସୃଷ୍ଟି କରାଯିବ । ଏହିସବୁ ଜମିରେ କି ପ୍ରକାର ଗଛ ଲଗାଇବା ଏବଂ ଉତ୍ପାଦନର ବଣ୍ଟନ କିପରି ହେବ ତାହା ମଧ୍ୟ ଗ୍ରାମବାସୀଙ୍କ ପରାମର୍ଶକ୍ରମେ ସ୍ଥିର କରାଯିବ । ଏହି କାର୍ଯ୍ୟକ୍ରମରେ ରାଜ୍ୟରେ ୨୧,୭୦୦ ହେକ୍ଟର ଜମିରେ ଗ୍ରାମ୍ୟ ଜଙ୍ଗଲ ସୃଷ୍ଟି କରାଯିବ ।

୨ । ପୁନଃ ବନୀକରଣ :

କଟୁଛି ଯାଇଥିବା 'ଖ' ଶ୍ରେଣୀ ରିଜର୍ଭ ଜଙ୍ଗଲ ବା ଅଟକ ଜଙ୍ଗଲ ଜମିରେ ଗ୍ରାମବାସୀମାନଙ୍କର ଅନୁମୋଦନ ଓ ସହଯୋଗ କ୍ରମେ ନୂତନ ଜଙ୍ଗଲ ସୃଷ୍ଟି କରାଯିବ । ଏହାଦ୍ୱାରା ରାଜ୍ୟର ୧୫,୦୦୦ ହେକ୍ଟର ଜଙ୍ଗଲର ପୁନଃ ବନୀକରଣ ସମ୍ଭବ ହେବ ।

୩ । ନଷ୍ଟ ହୋଇ ଯାଇଥିବା ଜଙ୍ଗଲର ପୁନରୁଦ୍ଧାର :

ନଷ୍ଟ ହୋଇଯାଇଥିବା ବୁଦୁବୁଦିଆ 'ଖ' ଶ୍ରେଣୀ ରିଜର୍ଭ ଜଙ୍ଗଲ ବା ଅଟକ ଜଙ୍ଗଲମାନଙ୍କୁ ବୈଧାନିକ ପ୍ରଣାଳୀରେ ପୁନରୁଦ୍ଧାର କରାଯାଇ ପୂର୍ଣ୍ଣାଙ୍ଗ ଜଙ୍ଗଲରେ ପରିଣତ କରାଯିବ । ଏହି କାର୍ଯ୍ୟକ୍ରମରେ ରାଜ୍ୟର ୨୦,୦୦୦ ହେକ୍ଟର ଜଙ୍ଗଲର ପୁନରୁଦ୍ଧାର କରାଯିବ ।

୪ । ଭୂମିହୀନ ଦୁର୍ବଳ ଶ୍ରେଣୀ ଲୋକଙ୍କ ପାଇଁ ଜଙ୍ଗଲ ଚାଷ :

ବ୍ଲକ ସ୍ତରରେ ସାହାଯ୍ୟ ପାଇବା ଯୋଗ୍ୟ ଇ: ଆର୍: ଡି: ପି: ସ୍କିମ୍ ଅନୁକରଣରେ ଭୂମି ଭିତ୍ତିକ ଯୋଜନାରେ ଜମି ଚିହ୍ନଟ କରାଯାଇଅଛି । ଏହିସବୁ ଚିହ୍ନିତ ଲୋକଙ୍କୁ ଚିହ୍ନଟ କରାଯାଇଥିବା ୫ ହେକ୍ଟର ଜମିରେ ସଘନ ଜଙ୍ଗଲ ଏବଂ କୃଷି ଭିତ୍ତିକ ଜଙ୍ଗଲ ଚାଷ କରିବା ପାଇଁ ସବୁପ୍ରକାର ସାହାଯ୍ୟ ଓ ପ୍ରୋତ୍ସାହନ ଦିଆଯିବ । ଉକ୍ତ ଲୋକଙ୍କୁ ଚିହ୍ନିତ ଜମି ଫଳଭୋଗ ସ୍ୱତ୍ୱ ମଧ୍ୟ ପ୍ରଦାନ କରାଯିବ । ଏହାଦ୍ୱାରା ରାଜ୍ୟର ୨୦୦୦ ପରିବାର ଉପକୃତ ହେବେ ।

୫ । ବଳକା ଜମି ଓ ଘରବାଡ଼ିରେ ଜଙ୍ଗଲ ଚାଷ :

ଏହି ଯୋଜନା ଅନୁଯାୟୀ ଭୂମିହୀନ ଚାଷୀ ଓ ଅନ୍ୟାନ୍ୟ ଅନୁଷ୍ଠାନମାନଙ୍କୁ ନିଜର ଘରବାଡ଼ି, ପଡ଼ିଆ ପଡ଼ିଥିବା ଜମି, ବିଲ, ହିଡ ଇତ୍ୟାଦିରେ ଗଛ ଲଗାଇବା ପାଇଁ ୫୦୦ ପର୍ଯ୍ୟନ୍ତ ଚାରାଗଛ ମାଗଣାରେ ଯୋଗାଇ ଦିଆଯିବ । ଏହି କାର୍ଯ୍ୟକ୍ରମ ଦ୍ୱାରା ରାଜ୍ୟରେ ୫ କୋଟି ୧୦ ଲକ୍ଷ ଚାରାଗଛ ବିତରଣ କରାଯିବ । ଏହାର ସଫଳତାପାଇଁ ଲୋକମାନଙ୍କୁ ପୁରସ୍କାର ଦିଆଯିବାର ବ୍ୟବସ୍ଥା ରହିଛି । ଏହିସବୁ ଚାରାଗଛ କେତେକ ସ୍ଥାନରେ ସ୍କୁଲ ଛାତ୍ରଛାତ୍ରୀମାନେ ବଢ଼ାଉଥିବା ନର୍ସରୀମାନଙ୍କଠୁ ଖରିଦ୍ କରାଯାଇ ଗ୍ରାମବାସୀମାନଙ୍କୁ ଯୋଗାଇ ଦେବାର ବ୍ୟବସ୍ଥା କରାଯାଇଛି । ପ୍ରକଳ୍ପର କର୍ମଚାରୀମାନେ ଗ୍ରାମବାସୀଙ୍କ ସହ ସୁସଂପର୍କ ପ୍ରତିଷ୍ଠାକରି ଆଲୋଚନା ମାଧ୍ୟମରେ ଜଙ୍ଗଲ ସଂରକ୍ଷଣ ଏବଂ ପରିବେଶ ସମ୍ବନ୍ଧୀୟ ଜ୍ଞାନ ବିନିମୟ କରିବେ । ଏଥି ସକାଶେ ପଞ୍ଚାୟତ ସ୍ତରରେ ଗ୍ରାମ ଜଙ୍ଗଲ କର୍ମଚାରୀମାନଙ୍କୁ ନିଯୁକ୍ତି ଦେବାର ବ୍ୟବସ୍ଥା କରାଯାଇଛି । ସ୍ଥଳ ବିଶେଷରେ ମହିଳା କର୍ମଚାରୀମାନଙ୍କୁ ନିଯୁକ୍ତି କରିବା ବ୍ୟବସ୍ଥା ମଧ୍ୟ ହେଉଅଛି ।

ସୁରକ୍ଷା :

ନୂତନଭାବେ ସୃଷ୍ଟି ହୋଇଥିବା ଏହିସବୁ ଜଙ୍ଗଲଗୁଡିକରୁ ଲବ୍ଧ ସାମଗ୍ରୀସବୁ ଗ୍ରାମବାସୀମାନଙ୍କ ମଧ୍ୟରେ ସୁଷମଭାବେ ବଣ୍ଟନ କରାଯିବ । ଏଥି ନିମିତ୍ତ ଯୌଥ ପରିଚ୍ଛଳନା ଦଳିଲ

ଏ ବ୍ୟବସ୍ଥାମାନ ରହିଅଛି । ଏଣୁ ଏହି ଜଙ୍ଗଲଗୁଡ଼ିକର ସଂରକ୍ଷଣ ଭାର ମଧ୍ୟ ଗ୍ରାମ ବନ କମିଟି ତଥା ଗ୍ରାମବାସୀଙ୍କର ହେଲେ ସୁଦ୍ଧା ସ୍ଥଳ ବିଶେଷରେ ଜଣ୍ଡା, ବାଡ଼, ସ୍କୁଲ ତଥା ଗାଈଯାନମାନଙ୍କୁ ବକ୍‌ସିସ ସୂତ୍ରରେ ଉକ୍ତ ଜଙ୍ଗଲର ସୁରକ୍ଷା କରାଯାଇଥାଏ ।

ଏହି ପରିପ୍ରେକ୍ଷୀରେ ଓଡ଼ିଶା ଗ୍ରାମ୍ୟ ଜଙ୍ଗଲ ଆଇନ୍ ୧୯୮୫ର କେତେକ ଧାରା ଉପରୋକ୍ତ ପ୍ରକାର ଜଙ୍ଗଲଗୁଡ଼ିକର ସୁରକ୍ଷା ବିଷୟରେ ଖୁବ୍ ପ୍ରାଞ୍ଜଳ ।

ଯଥା :—

ଧାରା ୫ :—ଯେ କୌଣସି ଲୋକ ଗ୍ରାମ ଜଙ୍ଗଲର ଗଛ କାଟିବା ବା ଜଙ୍ଗଲର କୌଣସି କ୍ଷତି କରିବାକୁ ଏହାଦ୍ୱାରା ବାରଣ କରାଯାଇ ଅଛି ।

ଧାରା ୬ :—ଯେଉଁ ଲୋକେ ଗ୍ରାମ ଜଙ୍ଗଲରୁ ଉପକୃତ ହେଉଥିବେ ସେମାନେ ଉକ୍ତ ଜଙ୍ଗଲର ସୁରକ୍ଷା ପାଇଁ ଦାୟୀ ରହିବେ । ଯଦି ଅନ୍ୟ କେହି ସେହି ଜଙ୍ଗଲର କ୍ଷତି ଘଟାଏ ତେବେ ସେମାନେ ସଙ୍ଗେ ସଙ୍ଗେ ନିକଟସ୍ଥ ଜଙ୍ଗଲ ବା ପୋଲିସ୍ ଅଧିକାରୀଙ୍କୁ ଉକ୍ତ ବିଷୟରେ ଖବର ଦେବେ ।

ଧାରା ୧୦ :—ଗ୍ରାମ ବନ କମିଟି ଗ୍ରାମ୍ୟ ଜଙ୍ଗଲରେ ଗୋଚରଣକୁ ନିୟନ୍ତ୍ରଣ କରିବେ ଏବଂ କୌଣସି ଗୋରୁ, ଛେଳି ପ୍ରଭୃତି ବେନିୟମ ଭାବେ ସେଠାରେ ପ୍ରବେଶ କଲେ ତାକୁ କାଞ୍ଜିଆ ହାଉସ୍‌ରେ ପକାଇ ପାରିବେ ।

ଧାରା ୧୧ :—ଯୌଥ ପରିଚାଳନା ଦଲିଲ ତିଆରି ବେଳେ ଗ୍ରାମ୍ୟ ଜଙ୍ଗଲର ସୁରକ୍ଷା କିପରି କରାଯିବ ତାର ବ୍ୟବସ୍ଥା ରହିବ ।

ଧାରା ୧୨ :—ଗ୍ରାମ୍ୟ ଜଙ୍ଗଲରୁ ଜଙ୍ଗଲଜାତ ଦ୍ରବ୍ୟର ବିକ୍ରୟଲବ୍ଧ ଟଙ୍କା ଗ୍ରାମ ପାଣ୍ଠିରେ ଜମା କଲବେଳେ ସେହି ଜଙ୍ଗଲର ସୁରକ୍ଷା ପାଇଁ ସରକାରଙ୍କ ତରଫରୁ ଯଦି କିଛି ଟଙ୍କା ଖର୍ଚ୍ଚ ହୋଇଥାଏ, ତାହା କାଟିଦେଇ ବଳକା ଟଙ୍କା ଜମା ହେବ ।

ଧାରା ୧୫ :—ଓଡ଼ିଶା ଜଙ୍ଗଲ ଆଇନ୍ ୧୯୭୨ର ଧାରା ୨୭ ଗ୍ରାମ ଜଙ୍ଗଲର ସୁରକ୍ଷାପାଇଁ ସବୁ ପ୍ରକାରେ ଲାଗୁ ହୋଇ ପାରିବ ।

# ରୋଗ ଏବଂ ମନଃସ୍ତାତ୍ତ୍ୱିକ ପ୍ରକ୍ରିୟା

ଶ୍ରୀ ଲକ୍ଷ୍ମୀନାରାୟଣ ସଜତରାୟ

ଅନନ୍ତ ବିଶ୍ୱ ବ୍ରହ୍ମାଣ୍ଡରେ ପୃଥିବୀର ଅସ୍ତିତ୍ୱ ଅତି ନଗଣ୍ୟ । ଏହି କ୍ଷୁଦ୍ର ପୃଥିବୀପୃଷ୍ଠରେ ମାନବ ଜାତିର ସୃଷ୍ଟି ବିଚିତ୍ର, ରହସ୍ୟପୂର୍ଣ୍ଣ ଓ ପ୍ରହେଳିକାମୟ । ଈଶ୍ୱରଙ୍କର ମହିମା ଏହି ଅନନ୍ତ ବିଶ୍ୱ-ବ୍ରହ୍ମାଣ୍ଡରେ ପରିବ୍ୟାପ୍ତ । ମାନବ ସୃଷ୍ଟିହିଁ ତାଙ୍କ ମହିମା ଓ ବିଭୂତିର ଏକ ଅଂଶ ବିଶେଷ । ମନୁଷ୍ୟ ଜାତିର ସୃଷ୍ଟି ସହିତ ରୋଗ ଓ ଶୋକ ଅଙ୍ଗାଙ୍ଗି ଭାବେ ଜଡ଼ିତ । କାଳ ମନୁଷ୍ୟର ରୋଗ ଶୋକ ତଥା ଜନ୍ମ ମୃତ୍ୟୁକୁ ନିୟନ୍ତ୍ରଣ କରେ । କାଳର ଗର୍ଭରେ ପୃଥିବୀ ତଥା ସମସ୍ତ ସୃଷ୍ଟି ଦିନେ ନା ଦିନେ ଲୀନ ହୋଇଯିବ । ତେବେ ମାନବ ଜାତିର ସୃଷ୍ଟି ପଛରେ କି ଗୁଢ଼ ତତ୍ତ୍ୱ ନିହିତ ଅଛି, ତାହା ବେଦ ବେଦାନ୍ତ ଋଷି ମହାଋଷିମାନେ କେହି ହେଲେ ସଠିକ ଭାବେ ନିରୂପଣ କରିପାରିନାହାନ୍ତି । ତେବେ ସମସ୍ତେ ଗୋଟିଏ ସିଦ୍ଧାନ୍ତରେ ଉପନୀତ ହୋଇଛନ୍ତି ମାନବମାନଙ୍କ ସୃଷ୍ଟି ପରମେଶ୍ୱରଙ୍କ ଲୀଳା ଖେଳା ମାତ୍ର । ତେବେ ମନରେ ସ୍ୱତଃ ପ୍ରଶ୍ନ ଉଠେ ମନୁଷ୍ୟ ଜୀବନରେ ଏତେ ଦୁଃଖକଷ୍ଟ, ଝଡ଼ଝଞ୍ଜା କାହିଁକି ଆସେ ? ମନୁଷ୍ୟ କ'ଣ କେହି ଦୁଃଖଶୋକକୁ ଏଡ଼ାଇ ଦେଇ ପାରିବନି? ପରମେଶ୍ୱର କ'ଣ ଚାହେଁ ରହୁଥାନ୍ତି ମନୁଷ୍ୟ ରୋଗ ଶୋକରେ ବୁଡିରହୁ । ବିଶେଷଭାବେ ପର୍ଯ୍ୟାଲୋଚନା କଲେ ମନୁଷ୍ୟର ଅର୍ଦ୍ଧେକରୁ ଅଧିକ ଦୁଃଖ, ରୋଗ ଦ୍ୱାରାହିଁ ଭୋଗ ହୋଇଥାଏ । ଅନ୍ଧାର ନଥିଲେ ଯେପରି ଆଲୋକର ମହତ୍ତ୍ୱ ନାହିଁ, ରୋଗ ନଥିଲେ ମନୁଷ୍ୟର ସେପରି ଉତ୍ତମ ସ୍ୱାସ୍ଥ୍ୟର ମହତ୍ତ୍ୱ ବା କାହିଁ! ସେଥିପାଇଁ ସମ୍ଭବତଃ ଈଶ୍ୱର ମନୁଷ୍ୟ ସୃଷ୍ଟି ସହିତ ତାଳ ମିଳାଇ ରୋଗ ମଧ୍ୟ ସୃଷ୍ଟି କରିଛନ୍ତି । ଏହା ଈଶ୍ୱରଙ୍କ ଅନ୍ୟ ଏକ ବିଶେଷ ମହିମା ଓ ବିଭୂତି କହିଲେ ଅତ୍ୟୁକ୍ତି ହେବ ନାହିଁ । ଏହାର ଯଥାର୍ଥତା ପ୍ରତିପାଦନ କରି ଭକ୍ତ ଅଚ୍ୟୁତାନନ୍ଦ ତାଙ୍କ ନିତ୍ୟରାସ ବର୍ଣ୍ଣନା ପ୍ରସଙ୍ଗରେ ପିଣ୍ଡ ବ୍ରହ୍ମାଣ୍ଡ ବିଷୟରେ ଅବତାରଣା କରି ଗାଇଛନ୍ତି:—

> ଶୂନ୍ୟରୁ ସବୁ ହୁଏ ଜାତ
> ଶେଷରେ ସର୍ବେ ଶୂନ୍ୟେ ହତ ।
> ଏ ରୂପେ ଅଖିଳ ବ୍ରହ୍ମାଣ୍ଡ
> ଶୂନ୍ୟରୁ ସୃଜୁ ଅଛି ପିଣ୍ଡ ।
> ସେ ପିଣ୍ଡ ପ୍ରକୃତି ବଶରେ
> ନିଜ ସ୍ୱଭାବ ପରିହରେ ।
> ମିଛ ମାୟରେ ବୁଲେ ନିତି ·
> ପୁଣି ଶୂନ୍ୟକୁ କରେ ଗତି ।

ଭକ୍ତ ଭୀମଭୋଇ ତାଙ୍କ ବ୍ରହ୍ମ ନିରୂପଣ ଗୀତାରେ ଗାଇଛନ୍ତି:—

> ମହିମା ଗର୍ଭରୁ ଜାତ ହେଲେ ପଞ୍ଚଭୂତ
> ପଞ୍ଚମ ଗତିରେ ଦେହ ହୋଇଲା ଗଠିତ
> ମହିମା ଗର୍ଭରୁ ଜାତ ହେଲେ କାଳଗ୍ରହ
> ବ୍ୟାଧି ରୂପରେ ପୀଡ଼ିତ ହୋଇଲା ସର୍ବ ଦେହ
> ମହିମା ଗର୍ଭରୁ ଜାତ ତପତ ଉଷ୍ମମ
> ସର୍ବ ଘଟେ ଆବୋରିଛି ସତ ରଜ ତମ ।

ଆବହମାନ କାଳରୁ ମନୁଷ୍ୟ ଚିରଶାନ୍ତି ଲାଭ ଆଶାରେ ଆପ୍ରାଣ ଉଦ୍ୟମ କରି ଆସିଛି । ଜୀବନର ଚରମ ଲକ୍ଷ୍ୟ ଚିରଶାନ୍ତି ଅର୍ଥାତ୍ ମୋକ୍ଷ ପ୍ରାପ୍ତି । ଆତ୍ମାର ପରମାତ୍ମାଙ୍କ ସହ ମିଳନହିଁ ଚିରଶାନ୍ତି ବୋଲି ଶାସ୍ତ୍ର ପୁରାଣ କହିଆସିଛନ୍ତି । ମାନବ ଜନ୍ମ ଦୁର୍ଲ୍ଲଭ ତାର ଏକମାତ୍ର କାରଣ ମନୁଷ୍ୟମାନେହିଁ କେବଳ ଈଶ୍ୱର ସତ୍ତା ଅନୁଭବ କରିପାରିବେ । ସ୍ୱଦେହରେ ଈଶ୍ୱର ପ୍ରାପ୍ତିରେ ଆନନ୍ଦ ସୀମା ଲଂଘନ କରେ । ମାନବ ଶରୀର ଧାରଣ କରି ଈଶ୍ୱର ପ୍ରାପ୍ତି ନହୋଇ ପାରିଲେ ମନୁଷ୍ୟ ଜୀବନ ବ୍ୟର୍ଥତାରେ ପରିଣତ ହୁଏ । ତେଣୁ ଭକ୍ତ ଭୀମଭୋଇ ତାଙ୍କ ଭଜନରେ ସ୍ୱଦେହରେ ବ୍ରହ୍ମର ଉପଲବ୍ଧି ବିଷୟରେ ଗାଇଛନ୍ତି:—

> ସ୍ୱଦେହରେ ନାହିଁ କଲେ ଠାବ
> ଅଦେହରେ ଆଉକି ପାଇବ
> ବ୍ରହ୍ମକୁ ନ ଚିହ୍ନି
> ବାହ୍ୟରେ ଭ୍ରମୁଥାନ୍ତି ପ୍ରାଣୀ
> ଚିତ୍ରପଟକୁ ନେତ୍ରେ ଦେଖି
> ମନ ଆନନ୍ଦେ ହୋଇ ସୁଖି

ଏ ଘଟେ ଜଗନ୍ନାଥ ଅଛି
ମିଛରେ ପ୍ରତିମା ପୂଜୁଛି ।

ଏଣୁ ବ୍ରହ୍ମ ସତ୍ତା ଅନୁଭବ କରିବା ପାଇଁ ଉତ୍ତମ ସ୍ୱାସ୍ଥ୍ୟ ମନୁଷ୍ୟର ଅପରିହାର୍ଯ୍ୟ । ଶରୀର ଓ ମନର ସମଭାବେ ପୁଷ୍ଟିସାଧନ ଓ ପରସ୍ପରର ସର୍ବଶ୍ରେଷ୍ଠ ସମନ୍ୱୟହିଁ ଉତ୍ତମ ସ୍ୱାସ୍ଥ୍ୟରୂପେ ପରିଗଣିତ । ଅତଏବ ଶରୀର ଓ ମନ ଉଭୟର ଗଭୀର ଅନୁଧ୍ୟାନ କଲେ ରୋଗ ସୃଷ୍ଟିର ସମସ୍ତ ମୂଳ ଉପାଦାନ ଆମର ଦୃଷ୍ଟିଗୋଚର ହୋଇପାରେ । ରୋଗର ମୂଳଭିତ୍ତି କ'ଣ ଯଦି ଆମେ ଜାଣି-ପାରିବା, ତେବେ ଏହାର ନିରାକରଣ ଏବଂ ତତ୍ ସଙ୍ଗେ ନିବାରଣର ପଥ ମଧ୍ୟ ସୁଗମ ହୋଇପାରିବ ।

ଏଠାରେ ଈଶା ଉପନିଷଦର ବ୍ୟାଖ୍ୟା କରି ସ୍ୱାମୀ ରଙ୍ଗନାଥ ନନ୍ଦ ତାଙ୍କ " THE MESSAGE OF UPANISADES " ରେ ଶରୀର ଓ ମନର ଉତ୍କୃଷ୍ଟ ପୁଷ୍ଟିସାଧନ ବିଷୟରେ ବର୍ଣ୍ଣନା କରିଛନ୍ତି–

In this world one should desire to live a hundred years but only by performing actions. Man must use his body, as an instrument, to work and, through work, to create beauty, wealth, and welfare outside, and moral & spritual deve-lopment within. It can help us to attain the highest spiritual experience. In the UPANISADS we find the human body described as the most valuable instrument that man can have. The best of music can be produced from his instru-ment, provided it is tuned correctly, disciplined and trained properly.

ପଞ୍ଚ ମହାଭୂତରେ ଗଠିତ ମନୁଷ୍ୟର ଶରୀର ଯେହେତୁ ସ୍ଥୂଳ ଶରୀର, ସୂକ୍ଷ୍ମ ଶରୀର ଓ କାରଣ ଶରୀର ତ୍ରୟରେ ଗଠିତ ସେହେତୁ ସ୍ଥୂଳ ଶରୀର ପୁଷ୍ଟି ସହିତ ସୂକ୍ଷ୍ମ ଶରୀର ଓ କାରଣ ଶରୀରର ପୁଷ୍ଟି ଏକାନ୍ତ ବାଞ୍ଛନୀୟ ।

ସ୍ଥୂଳ ଶରୀର ଅନେକ କୋଷରେ ଗଠିତ । ଏହି ସ୍ଥୂଳ ଶରୀରକୁ ସଂପୂର୍ଣ୍ଣଭାବରେ କାର୍ଯ୍ୟକ୍ଷମ କରିବାକୁ ହେଲେ ଶକ୍ତିର ଆବଶ୍ୟକତା ଅପରିହାର୍ଯ୍ୟ । ମନୁଷ୍ୟ ଶରୀରକୁ ଶକ୍ତି କେଉଁଠାରୁ ଆସେ ଏବଂ ଶକ୍ତିର ଅଭାବରେ ମନୁଷ୍ୟ ଶରୀର ହୃଷ୍ଟପୁଷ୍ଟ ହୋଇଥିଲେ ବି ଦୁର୍ବଳତା ଅନୁଭବ କାହିଁକି କରେ ? ମନୁଷ୍ୟ ଜୀବନରେ ଏହି ଶରୀର ତ୍ରୟର ପୂର୍ଣ୍ଣତାପ୍ରାପ୍ତିହିଁ ମନୁଷ୍ୟକୁ ଉତ୍ତମ ସ୍ୱାସ୍ଥ୍ୟର ଅଧିକାରୀ କରିବା ସଙ୍ଗେ ସଙ୍ଗେ ରୋଗ ମୁକ୍ତ କରିଥାଏ ।

ଅପୂରନ୍ତ ଶକ୍ତିର ଅଧିକାରୀ ହୋଇବି ମନୁଷ୍ୟ କାହିଁକି ଶକ୍ତିହୀନ ହୋଇପଡ଼େ ଏବଂ ଏହି ଶକ୍ତିକୁ ଉଜ୍ଜୀବିତ ଓ ପ୍ରଜ୍ୱଳିତ କରିବାରେ ପ୍ରଧାନ ଅନ୍ତରାୟ କ'ଣ ? ଜଗତରେ ସମସ୍ତ ପ୍ରକାର ଶକ୍ତି ଯାହା ଆମର ଦୃଷ୍ଟିଗୋଚର ହୁଏ, ସେ ସମସ୍ତ ଶକ୍ତି ବ୍ରହ୍ମଶକ୍ତିରୁ କ୍ଷରିତ ହୋଇଛି । ତେଣୁ ବିଶ୍ୱବ୍ରହ୍ମାଣ୍ଡର ସମସ୍ତ ଶକ୍ତି ତଥା ମନୁଷ୍ୟର ସମସ୍ତ ଚିନ୍ତାଧାରା ବ୍ରହ୍ମଶକ୍ତିର ନିୟନ୍ତ୍ରଣାଧୀନ । ଏହି ମୂଳତତ୍ତ୍ୱକୁ ଭିତ୍ତିକରି ରୋଗର ଉତ୍ପତ୍ତି ତଥା ମନୁଷ୍ୟର ମୃତ୍ୟୁ ବିଷୟରେ ଗବେଷଣା କରାଯାଇପାରେ । ମ... ଶରୀର ପଞ୍ଚକୋଷରେ ଗଠିତ ।

(କ) ଅନ୍ନମୟ କୋଷ–( Physical )

(ଖ) ପ୍ରାଣମୟ କୋଷ–( Vital air or energ...

(ଗ) ମନୋମୟ କୋଷ–( Mental plain )

(ଘ) ବିଜ୍ଞାନମୟ କୋଷ–( Intelligence ) ବୁ...

(ଙ) ଆନନ୍ଦମୟ କୋଷ–( Bliss )

ବର୍ତ୍ତମାନ ଦେଖାଯାଉ ଉପରୋକ୍ତ ପଞ୍ଚକୋଷ ମଧ୍ୟ... କେଉଁ କୋଷ କେଉଁଠାରୁ ଶକ୍ତି ଆହରଣ କରେ ଏବଂ କେ... କୋଷ କେଉଁ କୋଷକୁ ଶକ୍ତି ସଂଗ୍ରହଣ କରିପାରେ । ବାହ୍ୟ... ଶକ୍ତିର ପ୍ରଭାବରେ ଉପରୋକ୍ତ ପଞ୍ଚକୋଷ ପ୍ରଭାବିତ ହୁ... କି ନାହିଁ । ଆମେ ସମସ୍ତେ ଜାଣିଛେ . ମନୁଷ୍ୟ ଶରୀର ଧାର... କରିବାକୁ ହେଲେ ଉତ୍ତମ ଓ ପୁଷ୍ଟିକର ଖାଦ୍ୟର ଆବଶ୍ୟକ... ରହିଛି । ଉତ୍ତମ ଓ ପୁଷ୍ଟିକର ଖାଦ୍ୟରେ ପ୍ରାଣଶକ୍ତି ନିହିତ... ଖାଦ୍ୟରେ ଏହି ପ୍ରାଣଶକ୍ତି ଈଶ୍ୱରଙ୍କ ଶକ୍ତିର ଏକ ଅଂଶବିଶେଷ... ପ୍ରାଣ ଶକ୍ତିର ଅଭାବରେ ମନୁଷ୍ୟ ଦୁର୍ବଳ ହୋଇପଡ଼େ... କିନ୍ତୁ ଉତ୍ତମ ପୁଷ୍ଟିକର ଖାଦ୍ୟ ମନୁଷ୍ୟ ଗ୍ରହଣ କଲେ ସେ ଉତ୍ତ... ସ୍ୱାସ୍ଥ୍ୟର ଅଧିକାରୀ ହୋଇପାରିବ ଏପରି ଧାରଣା କରିବ... ଠିକ୍ ନୁହେଁ । କାରଣ ଖାଦ୍ୟରୁ ପ୍ରାଣଶକ୍ତି ଗ୍ରହଣ କରିବାପାଇଁ ସ୍ଥୂଳ ଶରୀରର ଗ୍ରାହ୍ୟ ଓ ନିୟନ୍ତ୍ରଣ ଶକ୍ତି ରହିବାର ଅଛି । ଏହି ନିୟନ୍ତ୍ରଣ ଶକ୍ତିକୁ ( VITAL ENERGY ) କୁହାଯାଏ । ଏହି ( VITAL ENERGY ) ପ୍ରାଣମୟ କୋଷର ଅନ୍ତର୍ଗତ ଓ ପ୍ରାଣମୟ କୋଷ ଦୁର୍ବଳ ହେଲେ ମନୋମୟ କୋଷ ଉପରେ ସମ୍ୟକ୍ ଭାବରେ ପ୍ରଭାବ ବିସ୍ତାର କରିଥାଏ ଏବଂ ଅପର ପକ୍ଷରେ ମନୋମୟ କୋଷ ବିକ୍ଷେପିତ ଓ ଆନ୍ଦୋଳିତ ହେଲେ ସ୍ଥୂଳଶରୀର ଉପରେ କୁ-ପ୍ରଭାବ ପକାଇଥାଏ । ମନ ଓ ଶରୀର ମଧ୍ୟରେ ଯୋଗସୂତ୍ର ରକ୍ଷାକାରୀ ହେଉଛି ( ETHER ) । ମନରେ ଝଡ଼ର ତରଙ୍ଗ ସୃଷ୍ଟିହେଲେ ଏହି ଉତ୍ତାଳ ତରଙ୍ଗ (ETHER ମଧ୍ୟଦେଇ ଶରୀର ରକ୍ତ ସ୍ରୋତଉପରେ ସଦୃଶ ତରଙ୍ଗ ସୃଷ୍ଟି କରେ । ରକ୍ତରେ ଏହି ତରଙ୍ଗ ଜନିତ ସ୍ରୋତ ହୃଦୟ କମଳରେ ସ୍ଥିତ ଆତ୍ମଶକ୍ତିରୁ ଋଣାତ୍ମକ Negative ଶକ୍ତି ଆହରଣ କରି ମସ୍ତିଷ୍କକୁ ପୁନଶ୍ଚ ପ୍ରବାହିତ ହୋଇଥାଏ । ମସ୍ତିଷ୍କ ଆତ୍ମଶକ୍ତିରୁ ଆନୀତ ଧନାତ୍ମକ Positive ଶକ୍ତି କଣିକାରେ ପ୍ରବୁଦ୍ଧହୋଇ ରକ୍ତର ଋଣାତ୍ମକ ଶକ୍ତିସହ ମିଳିତ ହେବାରେ ଆଲୋକ ଓ ଉତ୍ତାପ ସୃଷ୍ଟି ହୋଇଥାଏ । ମନୁଷ୍ୟ ଶରୀରରେ ଯେତେଥର ଏକମିନିଟ୍‌ରେ ନିଶ୍ୱାସପ୍ରଶ୍ୱାସ ପ୍ରବାହିତ ହୁଏ, ସେତେଥର ଧନାତ୍ମକ ଓ ଋଣାତ୍ମକ ଶକ୍ତିର ମିଳନରେ ମନୁଷ୍ୟ ଶରୀରରେ ଆଲୋକ ଓ ଉତ୍ତାପ ସୃଷ୍ଟି କରିଥାଏ ଏବଂ ମନୁଷ୍ୟକୁ ସମସ୍ତ ଶାରୀରିକ ଓ ମାନସିକ କାର୍ଯ୍ୟ କରିବାରେ ସାହାଯ୍ୟ କରିଥାଏ । ଏଠାରେ ମନୁଷ୍ୟ ଶରୀରରେ ରକ୍ତ ବ୍ୟାଟେରୀ ସେଲ୍‌ର ଏସିଡ୍ ଭଳି କାମକରେ । ତେବେ ଯଦି ମନୁଷ୍ୟ ତା'ର ଶୀରରରେ ଜାତ ଉତ୍ତାପ ଓ ଆଲୋକ ଶକ୍ତିକୁ କୌଣସି କାର୍ଯ୍ୟ କରିବାକୁ ନିୟୋଜିତ ନକରେ ତେବେ ଏହି ଶକ୍ତି ମନୁଷ୍ୟର ସୂକ୍ଷ୍ମ ଶରୀରରେ ସଞ୍ଚିତ ହୋଇ ରହିପାରେ । ଦରକାରବେଳେ ମନୁଷ୍ୟ ସେ ସଞ୍ଚିତ ଶକ୍ତିକୁ ବ୍ୟବହାର କରି...

ଯାଏ । ମନୁଷ୍ୟ ତାର ସୂକ୍ଷ୍ମଶରୀରରେ ଯେତେ ଶକ୍ତି ସଞ୍ଚିତ କରିପାରିବ ତାର ଆଭାମଣ୍ଡଳ ( AURA )ସେତେ ଶକ୍ତିବାନ୍ ଓ ଆଲୋକିତ ହୋଇପାରିବ ଏବଂ ଏହାର ଆଭାମଣ୍ଡଳ ପ୍ରଜ୍ଜ୍ୱଳିତ ଓ ବିସ୍ଫାରିତ ହୋଇ ମନୁଷ୍ୟର ମୁଖମଣ୍ଡଳକୁ ଜ୍ୟୋତିର୍ମୟ କରି ତୋଳେ ।

ମନୁଷ୍ୟ କ୍ରୋଧର ବଶବର୍ତ୍ତୀ ହେଲେ ଖୁବ୍ ଶୀଘ୍ର ରକ୍ତ ଗରମ ହୋଇଯାଏ ଏବଂ ମୁଖମଣ୍ଡଳ ଆରକ୍ତ ହୁଏ । ଖାଲିଯେ ମୁଖମଣ୍ଡଳ ଆରକ୍ତ ହୁଏ ବା ରକ୍ତ ଗରମ ହୁଏ, ତାହାନୁହେଁ, ଏହାର କୁପ୍ରଭାବ ଶରୀର ଉପରେ କ୍ରମଶଃ ପ୍ରଭାବ ବିସ୍ତାର କରେ । ଭାରାକ୍ରାନ୍ତ ମନର ସମସ୍ତ ଭାର ମନମୟ କୋଷ ବେଶୀ ସମୟ ଧାରଣ କରି ରହି ପାରେ ନାହିଁ । ସୁସ୍ଥ ଅବସ୍ଥାରେ ମନୁଷ୍ୟର ମନୋମୟ କୋଷର ସମସ୍ତ ଭାର ସ୍ଥୂଳ ଶରୀର ଉପରେ ଓହ୍ଲାଇ ଦେଇଥାଏ । ସ୍ଥୂଳ ଶରୀର ବା କେତେ ସମୟ ଏହି ଭାରକୁ ଧାରଣ କରି ପାରିବ ? ତେଣୁ ସ୍ଥୂଳ ଶରୀରର ଗଠନ, ଆକୃତି ପ୍ରକୃତି ମନର ଏହି ଭାରକୁ ନେଇ ଆପେ ଆପେ ଗଢି ହୋଇଯାଏ ଓ ରୋଗ ସୃଷ୍ଟିରେ ଯଥେଷ୍ଟ ସାହାଯ୍ୟ କରିଥାଏ । ମଣିଷ ଚରିତ୍ରରୁ ଭଲମନ୍ଦ ସମସ୍ତ ଗୁଣ ଦେଖିବାକୁ ମିଳିଥାଏ । ଏଠାରେ ଗୋଟିଏ ଅସଦ୍‌ଗୁଣ ବିଷୟରେ ପର୍ଯ୍ୟାଲୋଚନା କରାଯାଉ । ଧରନ୍ତୁ, ହିଂସା କରିବା ଗୋଟିଏ ଅସଦ୍ ଗୁଣ । ଆମେ ବାଘକୁ ହିଂସ୍ରକ ବୋଲି କହୁଁ । କାରଣ ସେ ନିରୀହ ପଶୁ-ମାନଙ୍କୁ ମାରି ତାର ମାଂସ ସଂଗ୍ରହ କରେ । ଏହି ହିଂସା ଗୁଣ ବ୍ୟାଘ୍ରର ରୂପକୁ ଭୟଙ୍କର କରି ତୋଳିଛି । ଏହା ପ୍ରକୃତିର ନିୟମ । ହିଂସ୍ରକ ପ୍ରାଣୀମାନଙ୍କର ଚକ୍ଷୁରେ ଅପଲକ ପଡ଼ିଲେ ଉତ୍ତାପ ଦେଖାଯାଏ । ଗାଈ ଗୋଟିଏ ଶାନ୍ତ ଓ ନିରୀହ ପ୍ରାଣୀ ଏବଂ ତୃଣ ଭୋଜି । ଗାଈଠାରେ ହିଂସାଚରଣ ଦେଖିବାକୁ ମିଳେ ନାହିଁ । ଯେହେତୁ ଗାଈ ତୃଣ ଭୋଜି ଓ ଅହିଂସା ପରାୟଣ ତେଣୁ ଗାଈର ରୂପରେ ଶାନ୍ତ ବାତାବରଣ ଥାଏ । ଗାଈର ଏହି ଶାନ୍ତ ରୂପ କମନୀୟ ଓ ହୃଦୟଗ୍ରାହକ । ସେଥିପାଇଁ ଗାଈକୁ କୌଣସି ପଶୁପକ୍ଷୀ ଭୟ କରନ୍ତି ନାହିଁ । ଗାଈର କ୍ଷୀର ଅମୃତ ସଙ୍ଗେ ସମାନ ଓ ଗୋବର ମଧ୍ୟ ପବିତ୍ର ଏବଂ ସମସ୍ତ ପୂଜା କର୍ମରେ ଲଗିଥାଏ । ଅହିଂସା ପରାୟଣ ଗାଈର ଦୁଧ ସେଥିପାଇଁ ଶିଶୁମାନଙ୍କ ପାଇଁ ଅତ୍ୟନ୍ତ ପୁଷ୍ଟିକାରକ ମେଧାଶକ୍ତି ବୃଦ୍ଧିକାରକ ଓ ଏହା ସାତ୍ତ୍ୱିକ ଗୁଣକୁ ବୃଦ୍ଧି କରିଥାଏ । ସେହିପରି ମନୁଷ୍ୟ ଯଦି ହିଂସ୍ରକ ହୁଏ, ହିଂସାର ସ୍ରୋତ ଶରୀରର ରକ୍ତ ସ୍ରୋତକୁ ହିଂସା-ଗୁଣରେ ତରଙ୍ଗାୟିତକରି କୁମ୍ଭାର ମାଟିହାଣ୍ଡି ଗଢିଲା ଭଳି ଶରୀରକୁ ଗଠନ କରିଥାଏ । ମୁହୁଁମୁହୁ ହିଂସା ଆଚରଣରେ ମନୁଷ୍ୟର ମୁଖମଣ୍ଡଳରେ ପରିବର୍ତ୍ତନ ସର୍ବପ୍ରଥମ ଆଣେ । ଆଖି ଲାଲ ରଙ୍ଗ ଧାରଣ କରେ, କ୍ରମଶଃ ବିସ୍ଫାରିତ ହୁଏ । କପାଳ ଭ୍ରୂକୁଞ୍ଚନ ହୋଇଥାଏ । ମୁହଁର ଚମକର କୋମଳତା ଲୁପ୍ତହୋଇଯାଏ । ନିଶ ଓ କେଶ ଟାଣ ହୋଇଯାଏ । ମୁଖ-ମଣ୍ଡଳରୁ କମନୀୟତା ଗଳିଯାଏ । ଆମେ ସେପରି ଲୋକ ଦେଖୁ ଦେଖୁ କହିଥାଉ ସେ ଗୋଟିଏ ଗୁଣ୍ଡା ଓ ବଦମାସ୍ ଶ୍ରେଣୀର ଲୋକ ହୋଇଥିବ । ( Face is the mirror of one's Character ) । ସେହିପରି ଅହିଂସା ପରାୟଣ ବ୍ୟକ୍ତିର ମୁଖମଣ୍ଡଳ କମନୀୟତା, କୋମଳତା ଓ ଆଭା ହୃଦୟଗ୍ରାହ୍ୟ ହୋଇଥାଏ । ତେଣୁ ଆମେ ସାଧୁମାନଙ୍କର ମୁଖ ମଣ୍ଡଳରୁ ହିଁ ସେମାନଙ୍କୁ ସହଜରେ ଚିହ୍ନି ପାରିଥାଉଁ । ଏହିପରି ମନୁଷ୍ୟର ପ୍ରତ୍ୟେକ ଅସଦ ଗୁଣ ମନୁଷ୍ୟର ମନକୁ ତରଙ୍ଗାୟିତ କରି ଅସ୍ଥିରତା ସୃଷ୍ଟି କରିଥାନ୍ତି । କାମନା ବାସନାର ପରିସମାପ୍ତି ନ ଘଟିଲେ ଆତ୍ମା ଅସ୍ଥିର ହୁଏ । ଅସ୍ଥିର ଆତ୍ମାକୁ ଆମେ ମନ କହିଥାଉଁ । ସ୍ଥିର ଆତ୍ମାର ନିଶ୍ଚୟ ମନରହିବା ସ୍ୱାଭାବିକ । ସାଧାରଣ ମନୁଷ୍ୟର ମନ ଅସ୍ଥିରତା ମଧ୍ୟରେ କାଳ କାଟିଥାଏ ଏବଂ ମାୟାରେ ଆବଦ୍ଧ ହୋଇପଡ଼େ । ମାୟାର ଆବଦ୍ଧ ଆତ୍ମା ପୃଥିବୀର କ୍ଷଣଭଙ୍ଗୁର ଭୌତିକ ସୁଖପ୍ରାପ୍ତି ଆଶାରେ ଯାବତୀୟ ନାରକୀୟ କର୍ମରେ ଲିପ୍ତରହେ । ଏହି ପ୍ରକାର କୁକର୍ମର ଫଳ ମନୁଷ୍ୟକୁ ରୋଗ ଶୋକରେ ଜର୍ଜ୍ଜରିତ କରେ । ତେବେ ଏହାର କ'ଣ ମୁକ୍ତି ନାହିଁ ? ଭଗବାନ ବୁଦ୍ଧ ସଂକ୍ଷେପରେ କହିଲେ "କାମନାର ବିନାଶରେ ଦୁଃଖର ବିନାଶ" । ଅତଏବ ମନୁଷ୍ୟର ଚରିତ୍ର ଉପରେ ରୋଗର ଉତ୍ପତ୍ତି । ନିରାକରଣ ଓ ନିବାରଣ ଯଥେଷ୍ଟ ପରିମାଣରେ ନିର୍ଭର କରେ । ସତ୍ ଚରିତ୍ରର ବଳ ଅସୀମ ।

ଯେହେତୁ ବିଶ୍ୱବ୍ରହ୍ମାଣ୍ଡର ସମସ୍ତ ଦୃଶ୍ୟମାନ ବସ୍ତୁ ( matter ) ଓ ସମସ୍ତ ପ୍ରକାର ଦୃଶ୍ୟମାନ ଶକ୍ତି ପରମେଶ୍ୱର-ଙ୍କର ଇଚ୍ଛା ଶକ୍ତିରୁ ଜାତ ( ଏହି ଇଚ୍ଛା ଶକ୍ତିର ଅନ୍ୟ ନାମ ମହିମା), ସେହେତୁ ସତ୍ ଚରିତ୍ର ବଳ ପ୍ରଭାବରେ ମନୁଷ୍ୟ ଶରୀରରେ ରୋଗ ପ୍ରତିରୋଧକ ଶକ୍ତି ଆପେ ଆପେ ଜାତ ହୋଇଥାଏ । ଏହି ପ୍ରତିରୋଧ ଶକ୍ତିକୁ ଇଂରାଜୀରେ **Resistance** ବା **Anti-body** ଡ଼ାକ୍ତରମାନେ କହିଥାନ୍ତି । ହୋମିଓପାଥି ଔଷଧର ଉଦ୍ଭାବକ ମହାତ୍ମା ହ୍ୟାନିମ୍ୟାନ୍ ତାଙ୍କର **Organon of Medicine** ରେ ଏହି **Resistance** କୁ **vital force** ବୋଲି ବର୍ଣ୍ଣନା କରିଛନ୍ତି । ଏହି ଶକ୍ତିର ବ୍ୟତିକ୍ରମରେ ମନୁଷ୍ୟ ଶରୀର ରୋଗାକ୍ରାନ୍ତ ହୋଇଥାଏ ।

### 10TH TEXT OF ORGANON

The material organism, without the vital force, is capable of no sensation, no function, no self preservation, it derives all sensation and performs all the functions of life solely by means of the immaterial being (the vital principle) which animates the material organism in health and in disease,

### 11TH TEXT OF ORGANON

When a person falls ill, it is only this spiritual, self acting (automatic) vital force, everywhere present in his organism, that is primarily deranged by the dynamic influence upon it of a morbific agent inimical to life, it is only the vital principle, deranged to such an abnormal state, that can furnish the organism with its disagreeable sensation and incline it to the irregular processes which we call disease, for as a power invisible in itself, and only cognizable by its effects on the organism, its morbid derangement

only makes itself known by the manifestation of disease in the sensation and functions of those parts of the organism exposed to the senses of the observer and physician, that is, by morbid symptoms, and in no other way can it make itself known.

ଯାହାର ଆତ୍ମା ଯେତେଦୂର ପବିତ୍ର ସେ ବ୍ୟକ୍ତି ସେତେ ପରିମାଣରେ ରୋଗମୁକ୍ତ ଓ ସେହି ବ୍ୟକ୍ତିର ରୋଗ ପ୍ରତିରୋଧକ ଶକ୍ତି ଅସୀମ । ଏପରିକି ଏହି ଶକ୍ତିର ବଳ ଏତେ ବେଶୀ ଯେ ଭୟଙ୍କର ବିଷକୁ ମଧ୍ୟ ମନୁଷ୍ୟ ଅନାୟାସରେ ଜୀର୍ଣ୍ଣ କରିଦେଇପାରେ । ଏହା ହାସ୍ୟାସ୍ପଦ ମନେ ହୋଇପାରେ କିନ୍ତୁ ଏହା ପରମେଶ୍ୱରଙ୍କର ଏକ ମହାନ୍ ମହିମା ।

ଉପରୋକ୍ତ ପର୍ଯ୍ୟାଲୋଚନାରୁ ଆମେ ଏତିକି ଜାଣିପାରିଲେ ଯେ ରୋଗ ସୃଷ୍ଟି ହିଁ ବିକାର ମନର ଶରୀର ଉପରେ କୁ-ପ୍ରଭାବ । ଆମ ଶରୀର ରକ୍ତ ଲବଣାକ୍ତ । ଏହି ଲବଣ ସମୁଦ୍ରରେ ଝଡ଼ର ସୃଷ୍ଟି ଶରୀର ପ୍ରତି ଘୋର କ୍ଷତିକାରକ । ବାୟୁର ପ୍ରକୋପରେ ସମୁଦ୍ରର ଲହରୀ ଉତ୍ଥାପନ ପତନ ହେଲପରି ମନର ପ୍ରକୋପରେ ଶରୀରର ରକ୍ତ ସମୁଦ୍ରରେ ମଧ୍ୟ ଅନୁରୂପ ତରଙ୍ଗ ସୃଷ୍ଟି ହୁଏ । କ୍ଷୁଦ୍ର ଜଳ ତରଙ୍ଗ ଯେପରି କୂଳ ଲଂଘି ସ୍ଥଳ ଭାଗର କ୍ଷତି କରିପାରେନା ସେହିପରି ମନରେ ଜାତ କ୍ଷୁଦ୍ର କ୍ଷୁଦ୍ର ତରଙ୍ଗ ଶରୀର ଉପରେ ପ୍ରଭାବ ପକାଇ ବିଶେଷ କ୍ଷତି କରିପାରେନା; କିନ୍ତୁ କ୍ରମଶଃ ଶରୀର ଉପରେ ତାର ପ୍ରଭାବ ବିସ୍ତାର କରି ଶରୀର ଆକୃତି ନିର୍ଦ୍ଧାରଣ କରିଥାଏ । ତେଣୁ ଶରୀର ସାଧାରଣ ରକ୍ତର ଚାପ ପ୍ରାୟତଃ ସ୍ଥିର ମନର ପ୍ରଭାବ ଉପରେ ନିର୍ଭର କରେ । ମନର ଅସହିଷ୍ଣୁତାର ଉଭାଳ ଲହରୀ ଶରୀର ରକ୍ତ ଚାପ ବୃଦ୍ଧି କରିବାରେ ଯଥେଷ୍ଟ ସହାୟକ ହୁଏ । ଯେହେତୁ ରକ୍ତସ୍ରୋତ ମନର ନିୟନ୍ତ୍ରଣାଧୀନ, ତେଣୁ ଏହି ପ୍ରକାର ରକ୍ତଚାପର କାରଣ କୌଣସି ଭୌତିକ ପଦାର୍ଥରେ ତିଆରି ଯନ୍ତ୍ର ନିରୂପଣ କରିବାରେ ସମର୍ଥ କିପରି ? ଏହି କାରଣରୁ ଭୌତିକ ପଦାର୍ଥରେ ତିଆରି ଔଷଧ ସ୍ଥୂଳ ଶରୀର ଉପରେ ସଂପୂର୍ଣ୍ଣ ପ୍ରଭାବ ବିସ୍ତାର କରିବାରେ ସମର୍ଥ ହୋଇପାରେ ନାହିଁ । ସେଥିପାଇଁ ସ୍ଥୂଳଶରୀରର ସମସ୍ତ ଲକ୍ଷଣ ଦେଲେ ବି ସୂକ୍ଷ୍ମ ଶରୀର ଶକ୍ତି ଉଜ୍ଜୀବିତ ନହେବା ପର୍ଯ୍ୟନ୍ତ ମନୁଷ୍ୟ ସଂପୂର୍ଣ୍ଣ ରୋଗମୁକ୍ତ ହେବା ଅସମ୍ଭବ । ଏଣୁ ଆମକୁ ଔଷଧର ଗୁଣାବଳୀକୁ ସୂକ୍ଷ୍ମାତମ କରି ସୂକ୍ଷ୍ମ ଶରୀର ପର୍ଯ୍ୟନ୍ତ ପହଞ୍ଚାଇବାକୁ ପଡ଼ିବ । ମହାତ୍ମା ହ୍ୟାନିମ୍ୟାନ୍ ଯଥାର୍ଥରେ ତାଙ୍କ Organon Medicine ର ଷୋଡ଼ଶ ସୂତ୍ରରେ ଅବତାରଣା କରିଛନ୍ତି –

## 16TH TEXT OF ORGANON

Our vital force, as a spirit like dynamics, cannot be attacked and affected by injurious influances on the healthy organism caused by the external inimical forces that disturb the harmonious play of life, otherwise than in a spirit like (dynamic) way, and in like manner, all such morbid derangements (diseases), cannot be removed from it by the physician in any other way than by the spirit like (dynamic virtual) alternative powers of the serviceable medicines acting upon our spirit vital force, which perceives them through the medium of the sentient faculty of the nerves everywhere present in the organism, so that it is only by other dynamic action on the vital force that remedies are able to re-established and actually re-establish health and vital harmony after the changes in the health of the patient cognizable by our senses (the totality of the symptoms) have revealed the disease to the carefully observing and investigating physician as fully as was requisite in order to enable him to care it.

ଏହି କାରଣରୁ ଆମ ସମସ୍ତଙ୍କୁ ମନୋମୟ ବିଜ୍ଞାନ ସମ୍ବନ୍ଧରେ ବିଶେଷ ଭାବରେ ପରିଚିତ ହେବା କର୍ତ୍ତବ୍ୟ । ଗୋଟିଏ ଛୋଟ ଉଦାହରଣ ଦେଲେ ଏପ୍ରକାର ଭ୍ରମ ହୁଏତ କେତେକାଂଶରେ ଦୂର ହୋଇପାରିବ । ଅନେକ କ୍ଷେତ୍ରରେ ଦେଖାଦେଇଛି ଯେ କ୍ଷୀଣ ଶରୀର ଧାରଣକାରୀ ମଣିଷ (ଚର୍ବିହୀନ ଶରୀର) ଉଚ୍ଚ ରକ୍ତଚାପରେ ପୀଡ଼ିତ । ଏଥିରୁ ନିର୍ଦ୍ଧିତଭାବରେ ଜଣାଯାଉଛି ଯେ ମନୁଷ୍ୟର ଅନ୍ତର୍ନିହିତ ଶକ୍ତିର ତାରତମ୍ୟରେ ହିଁ ମନୁଷ୍ୟ ଶରୀରରେ ରୋଗ ସୃଷ୍ଟି କରିଥାଏ । ଗୋଟିଏ ବାକ୍ୟରେ ଆମେ ଗୀତାର ମର୍ମରେ କହିପାରିବା ନିର୍ଲିପ୍ତ ଆତ୍ମାକୁ ରୋଗ ଶୋକ ଭୌତିକ ଦୁଃଖ କିଛି ହିଁ ପ୍ରଭାବିତ କରିପାରେନା । ଏହି ମନୁଷ୍ୟକୁ ଗୀତାରେ ଭଗବାନ ଶ୍ରୀକୃଷ୍ଣ ସ୍ଥିତପ୍ରଜ୍ଞ ବୋଲି ବର୍ଣ୍ଣନା କରିଛନ୍ତି । ସତ୍ ଓ ଅସତ୍ ଗୁଣର ତାରତମ୍ୟରେ ବିଭିନ୍ନ ରୋଗର ସୃଷ୍ଟି । ପ୍ରତ୍ୟେକ ମନୁଷ୍ୟର ଚରିତ୍ର ସତ୍ ଓ ଅସତ୍ ଗୁଣାବଳୀର ସମିଶ୍ରଣ ଅସତ୍ ଗୁଣ ମନୁଷ୍ୟକୁ ଅସତ୍ ପଥରେ ଟାଣିନେଇ ଧ୍ୱଂସାଭିମୁଖୀ କରାଇଥାନ୍ତି । ନିର୍ମଳ ଆକାଶରେ ମେଘର ଆବିର୍ଭାବରେ ଯେପରି ସୂର୍ଯ୍ୟ କିରଣ ପୃଥିବୀ ପୃଷ୍ଠରେ ପଡ଼ି ହୋଇପାରେନା, ସେହିପରି ଅସତ୍ ଗୁଣର ଆବିର୍ଭାବରେ ମନୁଷ୍ୟ ପରମାତ୍ମାଙ୍କର ନିର୍ମଳ ତେଜକୁ ମନୁଷ୍ୟର ଆତ୍ମା ପ୍ରାପ୍ତି ହୋଇ ପାରେ ନାହିଁ । ଏହି କାରଣରୁ ମନୁଷ୍ୟ ସଞ୍ଚିତ ଶକ୍ତି ଧୀରେ ଧୀରେ କ୍ଷୟ ହୋଇଥାଏ ଏବଂ ଏହାର ପୂରଣ ହୋଇ ନପାରିଲେ ମନୁଷ୍ୟ ମୃତ୍ୟୁ ଆଡ଼କୁ ଅଗ୍ରସର ହୁଏ । ମୋଟ ଉପରେ କହିବାକୁ ଗଲେ ମନୁଷ୍ୟ ଶରୀରରେ ନିମ୍ନଲିଖିତ ଶକ୍ତି ଅଛନ୍ତି କାର୍ଯ୍ୟ କରୁଅଛି ।

(କ) ଭୌତିକ ଶକ୍ତି

(ଖ) ପ୍ରାଣ ଶକ୍ତି (Vital Force)

(ଗ) ଆତ୍ମ ଶକ୍ତି

(ଘ) ଆଦି ଦୈବିକ ଶକ୍ତି

ଉପରୋକ୍ତ ସବୁ ଶକ୍ତିର ଏକମାତ୍ର ନିୟନ୍ତ୍ରଣକାରୀ ହେଉଛି ପରମାତ୍ମାଙ୍କ ଶକ୍ତି । ତେଣୁ ଈଶ୍ୱରଙ୍କର ସଦିଚ୍ଛା ଓ ଆଶୀର୍ବାଦ ବିନା କୌଣସି ରୋଗ ଭଲ ହେବା ସମ୍ଭବ ନୁହେଁ । ଅପର ପକ୍ଷରେ ଈଶ୍ୱରଙ୍କ ଆଶ୍ରିତ ହେଲେ ମନୁଷ୍ୟକୁ ରୋଗ ଶୋକ ଦୁଃଖ ବାଧେ ନାହିଁ । ଭୀମ ଭୋଇ ତାଙ୍କ ବ୍ରହ୍ମ ନିରୂପଣ ଗୀତାରେ ଏହି କଥାହିଁ ପ୍ରତିପାଦନ କରିଛନ୍ତି:–

ମହିମା ପ୍ରସନ୍ନ ହେଲେ କି କରିବେ କାଳ
ସିଂହ ପ୍ରାୟ ଘୁରୁଥିବା ଏମହୀ ମଣ୍ଡଳ ।
ମହିମା ପ୍ରସନ୍ନ ହେଲେ କି କରିବ ଯମ
ପାଦ ତଳେ ପଡ଼ି ଯମ କରିଯିବ କ୍ଷମ ।
ମହିମା ପ୍ରସନ୍ନ ହେଲେ କି କରିବ ରୋଗ
ଏ ତିନି ବ୍ରହ୍ମାଣ୍ଡେ ନିଷେଧ କରିବ ସେ ଭୋଗ ।
ମହିମା ପ୍ରସନ୍ନ ହେଲେ କି କରିବ ଗ୍ରହ
ଜଗତ୍ ଅଙ୍ଗେ ଗଢ଼ିଲେ ପାରିବ ସେ ଦ୍ରୋହ
ମହିମା ପ୍ରସନ୍ନ ହେଲେ କି କରିବ ବାଣ
ଯେ ପେଷିବ ଲେଉଟାଇ ନେବ ତାର ପ୍ରାଣ ।

ସାଧାରଣ ମାନବ ମାୟାରେ ଆଚ୍ଛନ୍ନ ରହି ପରମେଶ୍ୱରଙ୍କ ଠାରେ ନିଷ୍ପାପରଭାବରେ ଶରଣାପନ୍ନ ହୋଇପାରେ ନାହିଁ । ତେଣୁ ତାକୁ ଅନେକ ରୋଗ ଓ ଶୋକ ଭୋଗ କରିବାକୁ ପଡ଼ିଥାଏ । ତେବେ ମନୁଷ୍ୟ ଧୀରେ ଧୀରେ ସଦ୍‌ଗୁଣର ଅଧିକାରୀ ହେବା ପାଇଁ ସର୍ବଦା ଚେଷ୍ଟିତ ରହିଲେ ସେହି ସଦ୍‌ଗୁଣ ଓ ସତ୍ କର୍ମର ବଳ ତାର ଅନ୍ନମୟ କୋଷରେ ପ୍ରଭାବ ବିସ୍ତାର କରି ରୋଗ ପ୍ରତିଶେଧକ ଶକ୍ତି ଜାତ କରିଥାଏ । ଏହି ରୋଗ ପ୍ରତିରୋଧକ ଶକ୍ତି ଭୌତିକ ପଦାର୍ଥରେ ଗଠିତ ମନୁଷ୍ୟର ସ୍ଥୂଳ ଶରୀରରେ ଅବସ୍ଥାପନ ନ କରି ସୂକ୍ଷ୍ମ ଶରୀରରେ ବିଦ୍ୟମାନ ଥାଏ । ଏକ ସାଧାରଣ ଉଦାହରଣ ଦେଲେ ଏ ପ୍ରକାର ସତ୍ୟତା ଆମେ କିୟଦାଂଶରେ ବୁଝି ପାରିବା । ମନୁଷ୍ୟର ସୁପ୍ତାବସ୍ଥାରେ ତାର (Astral body) ସୂକ୍ଷ୍ମ ଶରୀର ମନୋମୟ କୋଷକୁ ସଂଚରିତ କରିଥାଏ । ଏହାଦ୍ୱାରା ମନୁଷ୍ୟର ବିଭିନ୍ନ ପ୍ରକାର ସ୍ୱପ୍ନରେ ମଧ୍ୟ ମନୁଷ୍ୟ ସୂକ୍ଷ୍ମ ଶରୀର ଦୁଃଖ ଶୋକ, ସୁଖ, ଇନ୍ଦ୍ରିୟାନୁଭୂତି ଏ ସମସ୍ତ ଲାଭ କରିଥାଏ । ଅତଏବ ସୂକ୍ଷ୍ମ ଶରୀରରେ ସମସ୍ତ ଅନୁଭୂତି ମନୁଷ୍ୟର ରହିଅଛି । ଏହି ସୂକ୍ଷ୍ମ ଶରୀରର ସ୍ଥୂଳ ଶରୀରକୁ କାର୍ଯ୍ୟକାରିତା ଶକ୍ତି ଯୋଗାଇବା ସଙ୍ଗେ ସଙ୍ଗେ ସମସ୍ତ ପ୍ରକାର ନିୟନ୍ତ୍ରଣ କରିଥାଏ । ତେଣୁ ସୂକ୍ଷ୍ମ ଶରୀରରେ ଶକ୍ତି ସଞ୍ଚୟ ମନୁଷ୍ୟକୁ ରୋଗମୁକ୍ତ କରିବା ସଙ୍ଗେ ସଙ୍ଗେ ଆୟୁବୃଦ୍ଧି କରିବାରେ ବିଶେଷ ସହାୟକ ହୁଏ । ସୂକ୍ଷ୍ମ ଶରୀର ଶକ୍ତି ଭୌତିକ ଶକ୍ତିର ଯଥେଷ୍ଟ ଉର୍ଦ୍ଧ୍ୱରେ ଥିବାରୁ ଏହାର ବୃଦ୍ଧି ଓ ପରିପୁଷ୍ଟିସାଧନ ସହଜ ଲବ୍ଧ ନୁହେଁ । ନିମ୍ନଲିଖିତ କେତୋଟି ନିର୍ଦ୍ଦିଷ୍ଟ ପନ୍ଥା ଅବଲମ୍ବନରେ ଏହି ଶକ୍ତିର ବୃଦ୍ଧି ଧୀରେ ଧୀରେ ଘଟିଥାଏ—

(କ) ଉତ୍ତମ ଓ ପୁଷ୍ଟିକର ଖାଦ୍ୟ ଗ୍ରହଣ (ସାତ୍ତ୍ୱିକ ଖାଦ୍ୟ)
(ଖ) ଔଷଧ ସେବନ
(ଗ) ପ୍ରାଣାୟମ ଓ ଯୋଗାସନ
(ଘ) ସଦ୍‌ଗୁଣ ଓ ସଚ୍ଚରିତ୍ର ଅବଲମ୍ବନ
(ଙ) ଦୃଢ଼ ଭକ୍ତି ତଥା ଈଶ୍ୱର ବିଶ୍ୱାସ ଓ ଈଶ୍ୱରଙ୍କ ଶରଣାପନ୍ନ
(ଚ) ନିଷ୍କାମ କର୍ମ ଅଭ୍ୟାସ ଅର୍ଥାତ୍ ସଦାସର୍ବଦା ସତ୍ କର୍ମରେ ଲିପ୍ତ ।
(ଛ) ଅହଂଭାବ ସଂପୂର୍ଣ୍ଣଭାବେ ପରିତ୍ୟାଗ ଓ ସଦା ସର୍ବଦା ହରିନାମ କୀର୍ତ୍ତନ ।

ଉପରୋକ୍ତ ୬ ଗୋଟି ପନ୍ଥା ମଧ୍ୟରୁ ଚତୁର୍ଥ ଓ ଶେଷ ପନ୍ଥା କଳିଯୁଗରେ ମନୁଷ୍ୟମାନଙ୍କ ପାଇଁ ସର୍ବଶ୍ରେଷ୍ଠ । ଏହି ପନ୍ଥା ଅବଲମ୍ବନରେ ଶରୀରର ରକ୍ତସ୍ରୋତରେ ଭକ୍ତି ଓ ପ୍ରେମରସ ସୃଷ୍ଟିହୋଇ ମନୁଷ୍ୟକୁ ଅହେତୁକ ଆନନ୍ଦ ଦେବା ସଙ୍ଗେ ସଙ୍ଗେ ହୃଦୟ କମଳରେ ସ୍ଥିତ ଆତ୍ମଶକ୍ତିରୁ ଶକ୍ତି କ୍ଷରିତ ହୋଇ ପ୍ରାଣମୟ ଶକ୍ତିକୁ ପ୍ରଭୂତ ଭାବେ ବୃଦ୍ଧି କରେ । ଏହି ପ୍ରାଣମୟ ଶକ୍ତିକୁ Vita Energy ବା ରୋଗ ପ୍ରତିରୋଧ ଶକ୍ତି କୁହାଯାଏ । ଉପରୋକ୍ତ ପର୍ଯ୍ୟାଲୋଚନାରୁ ନିର୍ଦ୍ଦିଷ୍ଟଭାବେ କୁହାଯାଇପାରେ ଯେ ମାନବ ଜାତିର ଶତକଡ଼ା ଷାଠିଏ ଭାଗରୁ ଅଧିକ ରୋଗ ମନୋମୟ କୋଷରୁ ହିଁ ସୃଷ୍ଟି । ରୋଗର ଜୀବାଣୁମାନେ ରୋଗ ସୃଷ୍ଟି କରି-ନଥାନ୍ତି । ଏହା ଆମର ଏକ ଭ୍ରମ ମାତ୍ର । ତେଣୁ ରୋଗ ନିବାରଣ ଓ ନିରାକରଣ କରିବାକୁ ହେଲେ ଜୀବାଣୁ ବିରୁଦ୍ଧରେ ସଂଗ୍ରାମ ନକରି ରୋଗ ପ୍ରତିରୋଧ ଶକ୍ତି ବୃଦ୍ଧି ଦିଗରେ ସମସ୍ତେ ଧ୍ୟାନଦେବା କର୍ତ୍ତବ୍ୟ ।

ଉପରୋକ୍ତ ମନ୍ତବ୍ୟ ଆଧୁନିକ ଚିକିତ୍ସକମାନେ ହସରେ ଉଡ଼ାଇ-ଦେବେ । ସେମାନଙ୍କ ମତରେ ଜୀବାଣୁମାନେହିଁ ସମସ୍ତ ରୋଗର ସୃଷ୍ଟିକାରୀ । ଜୀବାଣୁ ବିନାଶରେ ମନୁଷ୍ୟ ରୋଗମୁକ୍ତ ହୋଇପାରେ ତେଣୁ ସମସ୍ତ ପ୍ରକାର ଔଷଧ ଜୀବାଣୁ ନାଶପାଇଁ ହିଁ ଉଦ୍ଦିଷ୍ଟ । ଶକ୍ତିଶାଳୀ ଅଣୁବୀକ୍ଷଣ ଯନ୍ତ୍ର ସାହାଯ୍ୟରେ ଚିକିତ୍ସକମାନେ ଜୀବାଣୁର ଅସ୍ତିତ୍ୱ ଆବିଷ୍କାର କରିଥାନ୍ତି । ତେବେ ଜୀବାଣୁମାନେ ମନୁଷ୍ୟ ଶରୀରକୁ କିପରି ଆସନ୍ତି ଓ ସେମାନଙ୍କର ସୃଷ୍ଟିରେ କି ପ୍ରକାର ଉଦ୍ଦେଶ୍ୟ ନିହିତ ଅଛି । ଏହାର ବିଶେଷ ପର୍ଯ୍ୟାଲୋଚନା ଓ ଅନୁସନ୍ଧାନ ଆବଶ୍ୟକ । ତେବେ ସଂକ୍ଷେପରେ ଏତିକି କୁହାଯାଇପାରେ ଯେ ମନୁଷ୍ୟ ଶରୀରରେ ଜୀବାଣୁ ସୃଷ୍ଟିହିଁ ଈଶ୍ୱରଙ୍କର ମନୁଷ୍ୟକୁ ମହାନ୍ ଆଶୀର୍ବାଦ । ଗୋଟିଏ ଛୋଟ ଉଦାହରଣ ଏଠାରେ ଦିଆଯାଇପାରେ । ଧରନ୍ତୁ ଗୋଟିଏ ପାଚିଲା ଆମ୍ବର ଅଳ୍ପ ଅଂଶ ପଚିଯାଇଛି । ଏହି ପଚା ଅଂଶରେ ପୋକ ଯଦି ସୃଷ୍ଟି ହୁଏ ତେବେ ଏହି ପୋକମାନେ ଆମ୍ବର ପଚା ଅଂଶ ଖାଇ ବଞ୍ଚନ୍ତି । ଯେହେତୁ ଏମାନେ ପଚା ଅଂଶତକ ଖାଇ ଯାଆନ୍ତି, ସେହେତୁ ଆମ୍ବର ବାକି ଭଲ ଅଂଶ ଆଉ ପଚିଯାଏ ନାହିଁ । ଆମ୍ବ ବାହାରକୁ ଭଲ ଦେଖାଯାଏ କିନ୍ତୁ ଭିତରେ ପୋକ ବଞ୍ଚିକରି ରହିଥାନ୍ତି । ତେଣୁ ଆମ୍ବରେ ପୋକ-ମାନଙ୍କ ସୃଷ୍ଟି ଆମ୍ବକୁ କ୍ଷତି କରିବା ପରିବର୍ତ୍ତେ ଉପକାର କଲେ । ସେହିପରି ଯକ୍ଷ୍ମା ପୀଡ଼ିତ ରୋଗୀର ଛାତିରେ ମଇଳା ଅଂଶରେ ଜୀବାଣୁ ସୃଷ୍ଟିହୋଇ ଛାତିରେ ପଚାଅଂଶ ଖାଇଯାନ୍ତି ଏବଂ ଛାତିକୁ ଶୀଘ୍ର ନଷ୍ଟ କରିବାକୁ ଦିଅନ୍ତି ନାହିଁ । ନଚେତ ରୋଗୀ ଖୁବ ଅଳ୍ପ-ଦିନରେ ମୃତ୍ୟୁ ବରଣ କରିବା ସୁନିଶ୍ଚିତ । ତେଣୁ ଯକ୍ଷ୍ମା ରୋଗୀର ଶରୀରରେ ଜୀବାଣୁ ସୃଷ୍ଟି ରୋଗୀକୁ ଅଧିକଦିନ ବଞ୍ଚିବାକୁ ସାହାଯ୍ୟ କରିଥାଏ । ଏହା ଈଶ୍ୱରଙ୍କର ଆଶୀର୍ବାଦ ନୁହେଁ କି ? ବର୍ତ୍ତମାନର ଏଲୋପାଥିକ ଚିକିତ୍ସାମତେ Antibiotic ଔଷଧ ସେବନ ପରାମର୍ଶ ଡାକ୍ତରମାନେ ଦେଇଥାନ୍ତି । ଏହି Antibiotic ଔଷଧ ସେବନରେ ଯକ୍ଷ୍ମା ଜୀବାଣୁ ନଷ୍ଟ ହେବା ସଙ୍ଗେ ସଙ୍ଗେ ଯକ୍ଷ୍ମାରୋଗୀର ଶରୀରରୁ ଜାତ ବିଷାକ୍ତ ଜିନିଷରେ ସଂସର୍ଶରେ ଆସି ଭିନ୍ନ ପ୍ରକାର ଉପାଦାନ ସୃଷ୍ଟି କରିଥାଏ । ଫଳରେ ଯକ୍ଷ୍ମାରୋଗୀ ଆପାତତଃ ଯକ୍ଷ୍ମାରୋଗରୁ ମୁକ୍ତ ହେଲେ ବି ଶରୀରର ମୂଳବିଷ ଶରୀରରେ ଗଭୀରତମ ପ୍ରଦେଶକୁ ସଂଚରଣ କରିଥାଏ ଯାହାଫଳରେ କି ଯକ୍ଷ୍ମାରୋଗ ପରିବର୍ତ୍ତେ ଅନ୍ୟ ପ୍ରକାର ରୋଗର ଶୀକାର ହୋଇଥାଏ । ପୁନଶ୍ଚ ଆମେ ସମସ୍ତେ ଜାଣିଛେ ଯେ ଡାକ୍ତରମାନେ

Antibiotic ଔଷଧ ସେବନ ସଙ୍ଗେ ସଙ୍ଗେ କିଛି ଭିଟାମିନ୍ (Vitamin) ଔଷଧ ଓ ପୁଷ୍ଟିକର ଖାଦ୍ୟ ଖାଇବାକୁ ରୋଗୀକୁ ପରାମର୍ଶ ଦେଇଥାନ୍ତି । ଏହାଦ୍ୱାରା ରୋଗୀ କିଛି ପରିମାଣରେ ଖାଦ୍ୟରୁ ପ୍ରାଣଶକ୍ତି ଆହରଣ କରି ଶରୀରରେ ରୋଗ ପ୍ରତିରୋଧ ଶକ୍ତିର ବୃଦ୍ଧି କରାଇଥାଏ । ଏହାଫଳରେ କିଛି ବର୍ଷପାଇଁ ରୋଗୀ ଯକ୍ଷ୍ମାରୋଗରୁ ମୁକ୍ତ ହେବା ଆମେ ଲକ୍ଷ୍ୟ କରିଥାଉଁ ।

ଯକ୍ଷ୍ମା ରୋଗୀର ଜୀବନ ଇତିହାସ ପର୍ଯ୍ୟାଲୋଚନା କଲେ ପ୍ରାୟତଃ ଦେଖିବାକୁ ମିଳେ ଯେ ରୋଗୀ ଯକ୍ଷ୍ମା ରୋଗରୁ ମୁକ୍ତ ହେଲେବି କିଛିଦିନ ବା କିଛି ବର୍ଷପରେ ଅନ୍ୟରୋଗ ଯଥା- ପେଟରେ ଘା' ସୃଷ୍ଟି, ଭୟଙ୍କର ଚର୍ମରୋଗ, ମସ୍ତିଷ୍କରେ ଟ୍ୟୁମର, କର୍କଟରୋଗ ଇତ୍ୟାଦ ରୋଗ କରିଥାଏ । ଉପରୋକ୍ତ ସମସ୍ତ ବିଷୟକୁ ଦୃଷ୍ଟିରେ ରଖି ଆମେ ନିମ୍ନଲିଖିତ ସିଦ୍ଧାନ୍ତରେ ଉପନୀତ ହୋଇଥାଉଁ ।

(କ) ଶତକଡ଼ା ଷାଠିଏ ଭାଗ ରୋଗ ବିକାର ମନ ଓ ପାପ-କର୍ମର ଶରୀର ଉପରେ କୁଫଳ ।

(ଖ) ଶତକଡ଼ା ୨୦ ଭାଗ ରୋଗର ସୃଷ୍ଟି ବଂଶ ପରଂପରା ରୋଗରୁ ହୋଇଥାଏ ।

(ଗ) ଶତକଡ଼ା ୧୦ ଭାଗ ରୋଗ ଉତ୍ତମ ଓ ପୁଷ୍ଟିକର ଖାଦ୍ୟ ଓ ଉତ୍ତମ ଜଳବାୟୁର ଅଭାବରେ ଜାତ ହୋଇଥାଏ ।

(ଘ) ଅବଶିଷ୍ଟ ଶତକଡ଼ା ୧୦ ଭାଗ ରୋଗ ଅଖାଦ୍ୟ ଗ୍ରହଣ, ଭୁଲ୍ ଔଷଧ ଓ ବିଷାକ୍ତ ଦ୍ରବ୍ୟ ସେବନ ଇତ୍ୟାଦି କାରଣରୁ ଘଟିଥାଏ ।

(ଙ) ରୋଗର ସ୍ଥିତି ମୋଟ ଉପରେ ରୋଗୀର ପାରିପାର୍ଶ୍ୱିକ ଅବସ୍ଥା, ଆର୍ଥିକ ସ୍ୱଚ୍ଛଳତା, ଦକ୍ଷ ଡ଼ାକ୍ତର ନିୟୋଗ ଓ ସର୍ବୋପରି ରୋଗୀର ସଂଯମ ଆଚରଣ ଓ ଚରିତ୍ର ସଂଶୋଧନ ଉପରେ ନିର୍ଭର କରିଥାଏ ।

(ଚ) ରୋଗର ନିରାକରଣ ଅତ୍ୟନ୍ତ ଜଟିଳ ଓ ଏହା ସହଜଲବ୍ଧ ନୁହେଁ । ତେଣୁ ପ୍ରତ୍ୟେକ ମନୁଷ୍ୟ ରୋଗ ସୃଷ୍ଟିର ବିଜ୍ଞାନ ସମ୍ୟକ୍ ଭାବେ ଜାଣି ସେହି ଅନୁସାରେ ରୋଗମୁକ୍ତ ହେବାପାଇଁ ଚେଷ୍ଟିତ ରହିବା ଆବଶ୍ୟକ ।

(ଛ) ରୋଗର ଚିକିତ୍ସା କରିବା ପରିବର୍ତ୍ତେ ରୋଗୀର ଚିକିତ୍ସା ଏକାନ୍ତ ବାଞ୍ଛନୀୟ ।

(ଜ) ରୋଗର ନିବାରଣ ତଥା ଉତ୍ତମ ସ୍ୱାସ୍ଥ୍ୟ ପାଇଁ ଉତ୍ତମ ଚରିତ୍ର ଅପରିହାର୍ଯ୍ୟ । ମନୁଷ୍ୟ ଧୀରେ ଧୀରେ ଉତ୍ତମ ଚରିତ୍ର ଗଠନ କରିପାରେ ।

(ଝ) ଈଶ୍ୱର ବିଶ୍ୱାସୀ ଓ ଈଶ୍ୱରଙ୍କର ଶରଣାପନ୍ନ ହୋଇ ମନୁଷ୍ୟ ଅନେକ ରୋଗ ଶୋକରୁ ମୁକ୍ତି ଲାଭ କରିଥାଏ ।

(ଞ) ଯେହେତୁ ଅଧିକାଂଶ ରୋଗ ବିକାର ମନ ଘନିଷ୍ଠଭାବେ ସଂଶ୍ଳିଷ୍ଟ ଏହିପ୍ରକାର ସମସ୍ତ ରୋଗର ଚିକିତ୍ସା ସାଧାରଣ ଚିକିତ୍ସା ପ୍ରଣାଳୀଠାରୁ ଭିନ୍ନପ୍ରକାର ହେବା ବିଧେୟ । ତେଣୁ ସୂକ୍ଷ୍ମ ଔଷଧର ସଦୃଶ ମାନସିକ ଧର୍ମକୁ ମନୁଷ୍ୟ ଶରୀରରେ କାର୍ଯ୍ୟକାରୀ କରାଇପାରିଲେ ରୋଗୀ ସୁସ୍ଥ ଲାଭ ନିଶ୍ଚିତଭାବେ କରିପାରିବ ।

(ଟ) ପ୍ରତ୍ୟେକ ପ୍ରକାର ଔଷଧ ଓ ପ୍ରତ୍ୟେକ ପ୍ରକାର ଖାଦ୍ୟରେ ମୂଳତଃ ଦୁଇପ୍ରକାର ଧର୍ମ ଦେଖିବାକୁ ମିଳିଥାଏ । ମାନସିକ ଓ ଶାରୀରିକ ପୁରାତନ ରୋଗର ନିରାକରଣ ଔଷଧର ମାନସିକ ଧର୍ମକୁ ନିୟୋଜିତ କରାଯିବା ଉଚିତ୍ ଓ ନୂତନ ରୋଗର ନିରାକରଣ ଔଷଧର ଶାରୀରିକ ଧର୍ମକୁ ନିୟୋଜିତ କରାଯିବା ଉଚିତ୍ ।

(ଠ) ମନୁଷ୍ୟ ଜନ୍ମ ସହିତ ରୋଗ ଅଙ୍ଗାଙ୍ଗି ଭାବେ ଜଡ଼ିତ । କାରଣ ମନୁଷ୍ୟର ପ୍ରାରବ୍ଧ କର୍ମର କୁଫଳ ରୋଗ ଓ ଶୋକ ଆକାରରେ ଦେଖାଦେଇଥାଏ । ତେଣୁ ରୋଗର ନିରାକରଣ ପାପକ୍ଷୟ ନହେଲା ପର୍ଯ୍ୟନ୍ତ ମନୁଷ୍ୟକୁ ଭୋଗକରିବାକୁ ପଡ଼ିଥାଏ । ଏହାର ଅନ୍ୟଥା ହୁଏନାହିଁ । ଏଣୁ ଅନେକ ସମୟରେ ରୋଗର ନିରାକରଣ ଅନେକ ଚେଷ୍ଟା ସତ୍ତ୍ୱେ ସମ୍ଭବ ହୋଇପାରେନା । ଏହି କାରଣରୁ ପୂର୍ବଜନ୍ମର ପାପକ୍ଷୟପାଇଁ ମନୁଷ୍ୟ ଏ ଜନ୍ମରେ ସମସ୍ତପ୍ରକାର ସୁ-କର୍ମସହ ଈଶ୍ୱରଙ୍କ ଦୟାଭିକ୍ଷା କରିବା ଉଚିତ୍ ।

(ଡ) ପରମାତ୍ମାଙ୍କ ଇଚ୍ଛାଶକ୍ତିରୁ ବିଶ୍ୱବ୍ରହ୍ମାଣ୍ଡର ସୃଷ୍ଟି । ତେଣୁ ଈଶ୍ୱରଙ୍କର ଇଚ୍ଛାଶକ୍ତି ବିଶ୍ୱବ୍ରହ୍ମାଣ୍ଡରେ ପରିବ୍ୟାପ୍ତ । ତେଣୁ ଔଷଧରେ ପରମାତ୍ମାଙ୍କ ଇଚ୍ଛାଶକ୍ତି ବି ନିହିତ । ତେଣୁ ନିର୍ଦ୍ଦିଷ୍ଟ ଔଷଧ ନିର୍ଦ୍ଦିଷ୍ଟରୋଗ ଭଲ କରିବାରେ ଅନେକ ସମୟରେ ବ୍ୟର୍ଥ ହୋଇଥାଏ । ତେଣୁ ଔଷଧ କାମ କରିବାପାଇଁ ମନୁଷ୍ୟ ବିଷ୍ଣୁଙ୍କୁ ସ୍ମରଣକରି ଔଷଧ ଗ୍ରହଣ କରିବା ଉଚିତ୍ ।

ଔଷଧେ ଚିନ୍ତୟତ୍ ବିଷ୍ଣୁଂ
ଭୋଜନେଚ ଜନାର୍ଦ୍ଦନଂ
ଶୟନେ ପଦ୍ମନାଭଂ ଚ
ବିବାହେ ଚ ପ୍ରଜାପତିଂ

(କ୍ରମଶଃ)

(ଦ୍ୱିତୀୟ ଭାଗରେ ରୋଗର ନିରାକରଣ ଉପରେ ବିଶେଷଭାବେ ଆଲୋକପାତ କରାଯିବ ।)

ଜିଲ୍ଲାପାଳ ସମ୍ମିଳନୀ



